ଅପନିନ୍ଦା ଉପାଖ୍ୟାନ

ଲେଖକ :
**ପ୍ରୀତୀଶ ଆଚାର୍ଯ୍ୟ**
ଇତିହାସ ପ୍ରାଧ୍ୟାପକ,
କ୍ଷେତ୍ରୀୟ ଶିକ୍ଷା ସଂସ୍ଥାନ, ଭୁବନେଶ୍ୱର—୨୨

ପ୍ରକାଶକ :
**ଆର୍ଯ୍ୟ ପ୍ରକାଶନ**
ବାଦାମବାଡ଼ି, କଟକ—୧୨

ISBN-81-7412-225
ମୁଦ୍ରଣ :
ଜଗନ୍ନାଥ ଲାମିନେଟର
ବାଦାମବାଡ଼ି, କଟକ—୧୨

ପ୍ରଥମ ପ୍ରକାଶନ : **୨୦୦୪**

ପ୍ରଚ୍ଛଦପଟ : ସ୍ୱାହା ମିଶ୍ର

ମୂଲ୍ୟ : ଟ୭୦.୦୦

**Apaninda Upakhyana**

Author : **Pritish Acharya**
*Reader in History,*
*Regional Institute of Education,Bhubaneswar-22*

Publisher :
**Arya Prakashan**
*Badambadi, Cuttack-12*

ISBN-81-7412-225
Printer :
**Jagannath Laminator**
*Badambadi, Cuttack-12*

First Publication : 2004

Price Rs.70/-

*Digitized by srujanika@gmail.com*

# ମୁଖବଂଧ

ଭିନ୍ନ ଭିନ୍ନ ଅବସରରେ ବରାଦରେ କେତୋଟି ନିବଂଧ ଲେଖିଥିଲି। ସାଂଗରେ ବିନା ବରାଦରେ ମଧ ଆଉ କେତୋଟି ନିବଂଧ ଲେଖିଗଲି। ସବୁଗୁଡ଼ିକ ଅରୁଣାଚଳ ପ୍ରଦେଶ ରହଣି ସମୟର– ୧୯୮୮ରୁ ୧୯୯୭ ମଧ୍ୟରେ। ବରାଦିଆ ଲେଖା ପ୍ରକାଶ ପାଇଯାଏ। ତାର ତର୍କ, ବିଷୟବସ୍ତୁ, ଉପସଂହାର ସବୁକିଛି ପୂର୍ବ ନିର୍ଦ୍ଧାରିତ। ବିନା ବରାଦିଆ ଲେଖା ପ୍ରକାଶିତ ହେବାରେ ଡେରି ହୁଏ; କେବେ କେବେ ଅ-ପ୍ରକାଶିତ ରହିଯାଏ। ଓଡ଼ିଆରେ ପାଣ୍ଡୁଲିପି ତିଆରି କରିବା ପୂରା ହସ୍ତଶିଳ୍ପ ଭଳି କଷ୍ଟକର, ସମୟ ସାପେକ୍ଷ। ପତ୍ର ପତ୍ରିକାର ସଂପାଦକମାନେ ତାକୁ ଯଦି ପ୍ରକାଶ କରନ୍ତି, ଲେଖକ ପାଖକୁ ତେବେ ପତ୍ରଟିଏ ପଠାନ୍ତି ନାହିଁ। ଲେଖାର ଭାଗ୍ୟ ଜଣା ପଡ଼େ ନାହିଁ। ଲେଖା ପ୍ରକାଶ ଉପଯୋଗୀ ନ ହେଲେ, ସଂପାଦକ ଜଣାନ୍ତି ନାହିଁ; ପ୍ରତିଲିପି ଫେରସ୍ତ କରନ୍ତି ନାହିଁ। ନୂଆ ପ୍ରତିଲିପିଟିଏ ପ୍ରସ୍ତୁତ କରି ଲେଖି ପୁଣି କେଉଁ ପତ୍ରିକାକୁ ପଠାଇବା ବେଳକୁ ମନ ମରି ସାରିଥାଏ। ପୁଣି ଡର, ଏଥର ବି ପୂର୍ବଭଳି ଦୁର୍ଦ୍ଦଶା ନ ହେବ ବୋଲି କିଏ କହିବ?

ମଝିରେ 'ସର୍ବୋଦୟ' ତଥା 'ନବପତ୍ର' ବିକଳ୍ପ ବିଚାର ସହ ଜଣାଶୁଣା ହେଲା। ଉକ୍ତ ପତ୍ରିକାରେ ମୋର ନିବଂଧଗୁଡ଼ିକ ପ୍ରକାଶିତ ହେଲା; ପତ୍ରିକାର ପ୍ରକାଶିତ ସଂଖ୍ୟା ପାଇଲି; ମୁଦ୍ରଣ ଜନିତ ତ୍ରୁଟି ପ୍ରାୟ ନାହିଁ; କେବେ କେବେ ନିବଂଧକୁ ନେଇ ସଂପାଦକୀୟ ମନ୍ତବ୍ୟ ବି ମିଳିଲା। ପୂର୍ବଠାରୁ ପୂରା ବିପରୀତ ସ୍ଥିତି! ଲେଖିବା ପାଇଁ ଏହା ମତେ ଖୁବ୍ ସାହାଯ୍ୟ କଲା। ଓଡ଼ିଆ ପତ୍ରପତ୍ରିକାର ଯେଉଁ ମୁଖ୍ୟ ଧାରା, ଲେଖା ପାଇ ପ୍ରାପ୍ତି ସ୍ୱୀକାର ନ କରିବା, ଅ-ମନୋନିତ ଲେଖା ଫେରସ୍ତ ନ ଦେବା, ଲେଖା ପ୍ରକାଶିତ ହେଲେ ପତ୍ରିକାର ପ୍ରକାଶିତ ସଂଖ୍ୟାର ପ୍ରତି ଲେଖକ ପାଖକୁ ନ ପଠାଇବା, ଲେଖା ପ୍ରକାଶ କରି ଲେଖକଙ୍କୁ ଦୟା ଦେଖାଇବା, ତହିଁରେ 'ସର୍ବୋଦୟ' 'ନବପତ୍ର', 'ବିକଳ୍ପ ବିଚାର' ଆଦି ପତ୍ରିକା ହେଲେ ନିପାତନସିଦ୍ଧ। ମନେହୁଏ, ଉପର ଲିଖିତ କେତୋଟି ଗୁଣର ଅଭାବ ଯୋଗୁଁ ସେମାନେ 'ଆଜି'ର ଓଡ଼ିଆ ସାହିତ୍ୟ ଜଗତରେ ଅଚଳ, ଅଧାଚଳ ଅବସ୍ଥାରେ ରହି ଯାଇଛନ୍ତି; ମୁଖ୍ୟଧାରା ହେବାର ସୌଭାଗ୍ୟ ତାଂକର ନାହିଁ!

Digitized by srujanika@gmail.com

ଥରେ ଜଣେ ସାହିତ୍ୟିକ ବଂଧୁ ମତ ଦେଲେ, ନିବଂଧଗୁଡ଼ିକ ସଂକଳିତ ହେବାକଥା। ସାହସ ହେଲା ନାହିଁ, କାହାକୁ କହିବାକୁ। ହୁଏତ ବଂଧୁ ଜଣକ ଏମିତି କହି ଥାଇ ପାରନ୍ତି। ମନରେ ଡର, କେଉଁ ପ୍ରକାଶକ ବା ଏଥିରେ ରାଜି ହେବେ! ତଥାପି ମନରେ ମନ୍ତବ୍ୟଟି ଜମାଟ ବାଂଧିଗଲା; ନିବଂଧମାନଂକୁ ଗୁଚ୍ଛା କରି ରଖିଲି ଗୋଟାଏ ଫାଇଲରେ।

ପୂର୍ବରୁ ଗଳ୍ପ ସଂକଳନ ପ୍ରକାଶନ ଅବସରରେ ମୋର ଅନୁଭବ ହେଲା ଯେ, ପ୍ରକାଶ୍ୟ ଓ ପ୍ରକାଶନର ଦୁନିଆଁ ମଝିରେ ଏକ ନାହିଁ ନ ଥିବା ଗଡ଼ଖାଇ। ସଂବଲପୁରୀ ଶାଢ଼ି ବୁଣୁଥିବା ବରଗଡ଼ ଅଂଚଳର ଭୁଲିଆ ବୁଣାକାରୀ ଓ ଦୂରଦର୍ଶନ ତାରକାଂକୁ ସଂବଲପୁରୀ ଶାଢ଼ି ପିଂଧାଉଥିବା ବେଶଭୂଷା ବିଶେଷଜ୍ଞ ମଧ୍ୟରେ ଯେମିତି ଅମାପ ଗହୀରର ଫାଟ, ଠିକ ସେମିତି! କାହାକୁ ଦୋଷ ଦେବା ମୋର ଉଦ୍ଦେଶ୍ୟ ନୁହେଁ, ଏହା ମୋ ନଜରର ବାସ୍ତବିକତା ମାତ୍ର। ଏ ଭଳି ସ୍ଥିତିରେ ମୋର ଜଣେ ପୁରୁଣା ସାଂଗ ପରାମର୍ଶ ଦେଲେ, ଆର୍ଯ୍ୟ ପ୍ରକାଶନ ସହ କଥାଭାଷା କରିବାକୁ। କୁଆଡ଼େ ସେମାନେ ଅନ୍ୟମାନଙ୍କ ଠାରୁ ଭିନ୍ନ। ଏଣିକି ସମୟ କହିବ, ଆର୍ଯ୍ୟ ପ୍ରକାଶନ କେତେ ଭିନ୍ନ ଅନ୍ୟମାନଙ୍କ ଠାରୁ। ବଂଧୁ ଅଭୟ ସିଂ ପାଣ୍ଡୁଲିପିର ବ୍ୟାକରଣଗତ ଅଶୁଦ୍ଧି ସୁଧାରିଲେ, କାଟପିଟ କରି ଅନେକ ବାକ୍ୟକୁ ଠିକ୍ କଲେ, ପୁଣି କେତେ ଯାଗାରେ ନୂଆଁ ବାକ୍ୟ ଯୋଡ଼ିଲେ। ତାଙ୍କ ସହଯୋଗ ଭୁଲିବାର ନୁହେଁ। ବଂଧୁ ବସନ୍ତ ପଣ୍ଡା ଓ ଅଭିରାମ ବିଶ୍ୱାଳ ପାଣ୍ଡୁଲିପି ପଢ଼ି ମନ୍ତବ୍ୟ ଦେଲେ। ତାଙ୍କ ଠାରେ ମୁଁ କୃତଜ୍ଞ।

ହିଂଦୀ ଲେଖକ ଶ୍ରୀଲାଲ ଶୁକ୍ଳ ଲେଖନ୍ତି, ପାଣ୍ଡୁଲିପିର ପ୍ରକୃତ ସ୍ୱରୂପ ଓ ସାମର୍ଥ୍ୟକୁ ନେଇ ଯଦି ଲେଖକ ସଂଦିହାନ ବାକ୍‌ଚାତୁରୀ ବଳରେ ଦୋଷ ଘୋଡ଼େଇବା ପାଇଁ କୁଆଡ଼େ ମୁଖବଂଧକୁ ବ୍ୟବହାର କରେ। ନୋହିଲେ ପାଣ୍ଡୁଲିପି ଯାକ ନିଜ ବକ୍ତବ୍ୟ ଦେଲା ପରେ ପୁଣି ମୁଖବଂଧ ଗୋଟାକର ଆବଶ୍ୟକତା କେଉଁଠି? ତେଣୁ ଯେଉଁ ପାଣ୍ଡୁଲିପିର ଯେତେ ଲଂବା ମୁଖବଂଧ, ସଂପୃକ୍ତ ଲେଖକ ସେତେ ଅଧିକ ଆତ୍ମବିଶ୍ୱାସ-ଶୂନ୍ୟ! ମୁଁ ଶୁକ୍ଳଙ୍କ ସହିତ ଏକମତ। ତଥାପି ସୁଯୋଗ ମିଳିଲେ ଛାଡ଼ିବାର ନୁହଁ ରୀତିରେ ମୁଖବଂଧଟିକୁ ଲେଖିଗଲି।

■■

Digitized by srujanika@gmail.com

# — ସୂଚୀପତ୍ର —



—୦୦—

Digitized by srujanika@gmail.com

# ଲେଖକ ପରିଚୟ

ପ୍ରୀତୀଶ ଆଚାର୍ଯ୍ୟଂକ ଜନ୍ମ ୧୯୬୩ ମସିହାରେ ବରଗଡ଼ ଜିଲାର ଗର୍ଭଣା ଗ୍ରାମରେ। ପ୍ରାରଂଭିକ ଶିକ୍ଷା ଗାଁ, ସୋହେଲା ଉଚ୍ଚବିଦ୍ୟାଳୟ; ଉପାଧି ଶିକ୍ଷା ଜି.ଏମ. କଲେଜ ସଂବଲପୁର। ଉପାଧିଉର ଶିକ୍ଷା ଓ ଗବେଷଣା ନୂଆଦିଲ୍ଲୀସ୍ଥିତ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ଇତିହାସ ଶିକ୍ଷା କେନ୍ଦ୍ରରେ। ୧୯୮୮ରୁ ୧୯୯୭ ପର୍ଯ୍ୟନ୍ତ ଇଟାନଗରସ୍ଥିତ ଅରୁଣାଚଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା; ସଂପ୍ରତି ଏନ.ସି.ଇ.ଆର.ଟିର ମାନବିକ ବିଜ୍ଞାନ ଓ ସାମାଜିକ ଶିକ୍ଷା ବିଭାଗରେ ପ୍ରାଧାପକ ପଦରେ ଭୁବନେଶ୍ୱରରେ ଅବସ୍ଥାପିତ। ତିନୋଟି ଗଳ୍ପ ସଂକଳନ, ପୌଷ ପାହିଲେ ଯାଇ (୧୯୮୬); ଆତ୍ମଲିପି (୧୯୮୯) ଓ ପାତ୍ରୀ ଅନ୍ୱେଷଣ (୨୦୦୧) ପ୍ରକାଶିତ; ୧୯୮୬ରେ ଗଳ୍ପ ଲେଖନ ପାଇଁ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ବସନ୍ତ ମିଳନ ପୁରସ୍କାର ଲାଭ। କେତେ ଗୋଟି ଗଳ୍ପ ହିଂଦୀରେ ଅନୂଦିତ ଓ ହିଂଦୁସ୍ଥାନ, ଜନସତ୍ତା, ସମକାଲୀନ ଭାରତୀୟ ସାହିତ୍ୟ ଆଦି ପତ୍ରିକାରେ ପ୍ରକାଶିତ।

ପାଣ୍ଡୁଲିପି ''ଅପନିଂଦା ଉପାଖ୍ୟାନ'' ଇତିହାସ, ସାହିତ୍ୟ, ରାଜନୀତି, ଭାଷା, କଳା, ବିକାଶ ଓ ପର୍ଯ୍ୟଟନ ବିଷୟକ ଏକ ନିବଂଧଗୁଚ୍ଛ। ନିବଂଧଗୁଡ଼ିକ ବିଭିନ୍ନ ଓଡ଼ିଆ ପତ୍ର ପତ୍ରିକାରେ ପ୍ରକାଶିତ ଓ ବୁଦ୍ଧିଜୀବି ମହଲରେ ଚର୍ଚ୍ଚିତ।

-o-

Digitized by srujanika@gmail.com

# ଅପନିନ୍ଦା ଉପାଖ୍ୟାନ

ଊନବିଂଶ ଶତାବ୍ଦୀର ଶେଷ ପାହାଚରେ ଗଦ୍ୟ ସାହିତ୍ୟର ଆରମ୍ଭ ହେଉ ନ ହେଉଣୁ ଜଣେ ଲେଖକ ଲେଖିଥିଲେ, ଗାଁରେ ଗରୁଡ଼ ଖଂବଟିଏ ନ ହେଲେ କିଛି କଥା ନାହିଁ, ମାତ୍ର ଅପନିଂଦୁକଟିଏ ନ ହେଲେ ଗାଁଟା ପୂରା ଅଚଳ। ଗାଁରେ କାହିଁକି, ପରା ପାଟକରେ ସୁଦ୍ଧା ଅପନିଂଦୁକର ଭୂମିକା ଏତେ ମହତ୍ତ୍ୱପୂର୍ଣ୍ଣ ଯେ ଲେଖକ ଜମି ପାଇଁ ହିଡ଼ଠାରୁ ମଧ୍ୟ ଅପନିଂଦୁକର ଅଧିକ ଆବଶ୍ୟକତା ଥିବା କଥା କହି ଯାଇଛନ୍ତି। ତା ବିହୁନେ ଗାଁ ଟା ଯେ କେତେ ଶୂନ୍ୟତା ଭିତରେ ଉବୁଟୁବୁ ହେବ ତାହା ଅନୁମାନ ସୁଦ୍ଧା କରିବା ମୁସ୍କିଲ, କାରଣ କେହି ସଜ୍ଜନ, କଳି କାଳ ଶେଷ ହେବାକୁ ବସିଲାଣି, ହେଲେ ସେଭଳି ଅପନିଂଦୁକ ବିହୀନ ଗାଁରେ ଜନ୍ମ ନେଇଥିବାର ଦୁର୍ଭାଗ୍ୟ ଲାଭ କରି ନାହାନ୍ତି।

ଆଜି ଯୁଗ ବଦଳିଛି। ଊନବିଂଶ ଶତାବ୍ଦୀର କେତେ କଥା ବିଂଶ ଶତାବ୍ଦୀରେ ନାହିଁ, ଯେମିତି ଆଜିର ଅନେକ କିଛି ଊନବିଂଶ ଶତାବ୍ଦୀରେ ନ ଥିଲା। ମାତ୍ର ଅପନିଂଦା ଓ ଅପନିଂଦୁକର ସ୍ଥିତି ତଥା ମାହାତ୍ମ୍ୟରେ ପରିବର୍ତ୍ତନ ଘଟିନାହିଁ। ଅବଶ୍ୟ ଆଜି ପ୍ରଥମୋକ୍ତ ଲେଖକ ଜଣଙ୍କ ବଂଚିଥିଲେ, ଲେଖିଥାନ୍ତେ, "ଗାଁରେ ଟେଲିଭିଜନଟିଏ ନ ହେଲେ ଚଳିବ କିନ୍ତୁ ଅପନିଂଦୁକ ଅଭାବରେ ଗାଁ ଅଚଳ।" ତାକୁ ଜମି ପାଇଁ ହିଡ଼ ସହ ତୁଳନା ନ କରି ଯୁବକ ସଂଘ ପାଇ ଭିଡ଼ିଓ ହଲ ଅଥବା ଜବାନ ପୁଅ ପାଇଁ ଜିନ ପେଣ୍ଟ ସହ ତୁଳନା କରିବାକୁ ଲେଖକ ଅଧିକ ପସଂଦ କରିଥାନ୍ତେ।

ଊନବିଂଶ ଶତାବ୍ଦୀରେ ଅପନିଂଦାର ମୁଖ୍ୟ ଆଶ୍ରୟସ୍ଥଳ ପୋଖରୀ ତୁଠ, କାଳ-ରାଂଧୁଣୀ ଗାଧୁଆ ବେଳ ଏବଂ ମୁଖ୍ୟପାତ୍ର ପୁଅ ବାହା ସାରିଥିବା ଅଥଚ ଏ ଯାଏଁ ବାଡ଼ି ଧରି ଚାଲିବାର ଆବଶ୍ୟକତା ଅନୁଭବ କରି ନଥିବା ସ୍ତ୍ରୀ ସମୂହ ବୋଲି ଆମେ ଜ୍ଞାତ ହୋଇଥାଉ। ମାତ୍ର ଆଧୁନିକ ଯୁଗର ଗତିଶୀଳତା ଓ ଚିନ୍ତାରାଜ୍ୟର ବ୍ୟାପକତାକୁ ଦୃଷ୍ଟିରେ ରଖି ଏଣିକି ଅପନିନ୍ଦାର କ୍ଷେତ୍ର ବିସ୍ତୃତ ହୋଇଥିବା ସଂପର୍କରେ କିଏ ବା ଅବଗତ ନୁହେ ? କଲେଜ, ରାଜନୀତି, ପୋଖରୀ ତୁଠ, ବାହାଭୋଜି, ଡ୍ରଇଂରୁମ, ପ୍ରବଚନ କ୍ଷେତ୍ର, ଏପରି କି ଶ୍ରାଦ୍ଧକ୍ରିୟା– ଏଭଳି କୌଣସି ସ୍ଥାନ ନାହିଁ ଯେଉଁଠି ଅପନିଂଦା ତାର ଡେଣା ମେଲି ନାହିଁ ଏବଂ ତାକୁ ନିଟୋଳ, ନିରୁତା ଓ ସବଳ ଭାବେ ଗଢ଼ି ତୋଳିବାକୁ ଦୁଇ ଚାରିଜଣ ଚରିତ୍ର ସୃଷ୍ଟି ହୋଇ ନାହାନ୍ତି !

Digitized by srujanika@gmail.com

ଅପନିନ୍ଦାର ଏପରି ବହୁଳ ବ୍ୟାପକତା ଏବଂ ଆଶୁ ସମୃଦ୍ଧି ଦେଖି ଅନେକ ଏଣିକି ଆଉ କଥାବାର୍ତ୍ତା ଆଳରେ ଅପନିନ୍ଦା କରୁ ନାହାନ୍ତି, ବରଂ ଅପନିନ୍ଦା ନାଁରେ କଥାବାର୍ତ୍ତା କରୁଛନ୍ତି। ସେମାନଙ୍କର ବିଶ୍ୱାସ ଯେ କେତେ ବର୍ଷ ପୂର୍ବରୁ ସଂତ୍ରାସବାଦ, ସାଂପ୍ରଦାୟିକ ଦଂଗାକୁ ଲଜ୍ଜାକର ମନେକରିଥିବା ଲୋକ ଆଜି ଯେମିତି ହଟହଟା ହେଉଛନ୍ତି, ନିକଟ ଭବିଷ୍ୟତରେ ଅପନିନ୍ଦାକୁ ନିନ୍ଦନୀୟ ମନେକରି ଚୋରାରେ ଅପନିନ୍ଦା କରିଥିବା ଲୋକେ ମଧ୍ୟ ରାସ୍ତାରେ ଆଉ ବାଟ ଚାଲି ପାରିବେ ନାହିଁ। ନା ଅପନିନ୍ଦା ମୁହଁରେ ସେତେବେଳେ କୌଣସି କଳା ପରଦା ଥିବ, ନାଁ ଅପନିନ୍ଦୁକ ନାମରେ କଳଂକ! ଅପନିନ୍ଦାର କାଳରାତ୍ରିରେ ତେଣିକି ସୂର୍ଯ୍ୟୋଦୟ ହୋଇଥିବ। ତାକୁ କଥାବାର୍ତ୍ତାର ଆଖ୍ୟା ଦେବା ଅପରାଧରେ ଯଦି କେହି ଧରାପଡ଼ିଥିବେ, ତାଂକୁ ଶୁଭ ସକାଳର ଅଶୁଭ ପେଚା କହି କବି କବିତା ଲେଖୁଥିବେ ଅବା ନେତା ଭାଷଣ ଦେଉଥିବେ।

ତେଣିକି ଦଶବର୍ଷର ବିରତି ପରେ ସୁଦ୍ଧା ଦୁଇଜଣ ଅନ୍ତରଂଗ ବଂଧୁଙ୍କର ଭେଟ ହେଲେ, 'ଆଉ ସବୁ ଭଲ'? ସ୍ଥାନରେ ଜଣେ ଅନ୍ୟକୁ ପ୍ରଥମ ପ୍ରଶ୍ନ ପଚାରିବ କ'ଣ ଟିକିଏ ଅପନିନ୍ଦା କରିବା? ଅଫିସରେ ଟିକିଏ ଡେରିରେ ପହଂଚିଲେ ବଡ଼ବାବୁଂକ ଆଗରେ ଉତ୍ତର ହେବ, ଟିକିଏ ଅପନିନ୍ଦା କରୁ କରୁ ସମୟ ଜାଣି ହେଲା ନାହିଁ। ବଡ଼ ବାବୁଂକ ନାନା ପ୍ରଶ୍ନ ଓ ପ୍ରତି ପ୍ରଶ୍ନ ପରେ ସୁଦ୍ଧା ଯଦି କିରାଣୀ ପ୍ରମାଣ କରିବାରେ ସଫଳ ହୁଅନ୍ତି ଯେ ସେ ଅପନିନ୍ଦା ହିଁ କରୁଥିଲେ, ତାଂକୁ ଓଭରଟାଇମ୍ ମିଳିବ। ଅନ୍ୟଥା ଦରମା କଟିବ। କଲେଜ କମନରୁମରେ ଅବସର ନେବାକୁ ଦୁଇମାସ ବାକୀ ଥିବା ବୁଢ଼ା ଅଧ୍ୟାପକ ଜଣକ ଅନୁପସ୍ଥିତ ଅଧ୍ୟାପକଗଣଙ୍କ ନାମ ଉଚ୍ଚାରଣ କରି କହିବେ, ଆଜି ଏମାନଂକ ନାମରେ ଅପନିନ୍ଦା କରିବାକୁ ମୁଁ ସମସ୍ତଂକୁ ସାଦରେ ନିମନ୍ତ୍ରଣ ଜଣାଉଛି। ରାମାୟଣ ଯୁଗର ସୀତାଂକ ନାମରେ ଅପନିନ୍ଦା ରଚିଥିବା ଧୋବଣୀ ତେଣିକି ଇଷ୍ଟଦେବୀ ରୂପେ ଘରେ ଘରେ ପୂଜା ପାଉଥିବ।

ଖୋଲା ବଜାରରେ ଅପନିନ୍ଦା ବଣ୍ଟନ ଆରଂଭ ହେବା ପରେ ଲୋକେ ଅତି ଆଗ୍ରହରେ ସ୍ୱ ସ୍ୱ ନାମ ଆଗରେ ତେଣିକି ଅପନିନ୍ଦୁକ ଓ ଅପନିନ୍ଦୁକୀ ଲେଖୁଥିବେ। ନିଜ ନାମ ପୂର୍ବରୁ ଶ୍ରୀ ଓ ଶ୍ରୀମତୀ ଲେଖି ଇହଲୀଳା ସଂବରଣ କରିଥିବା ପୂର୍ବଜମାନଂକୁ ସମୟ ଓ ସୁବିଧା ଦେଖି ସେମାନେ 'ଆହା... ଚୁ..ଚୁ' ମଧ୍ୟ କରିବାରେ ହେଳା ବା କୁଣ୍ଠା କରୁ ନ ଥିବେ।

ଅପନିନ୍ଦାର ଏଭଳି ବ୍ୟାପ୍ତି ପରେ ଏ ଇହ ସଂସାରରେ ଅଧେରୁ ଅର୍ଦ୍ଧାଧିକ ଲୋକ ଅପନିନ୍ଦୁକ ବୋଲି ଜନଗଣନା ସୂଚିରେ ଉଲ୍ଲେଖ ରହିବ। ସେମାନଙ୍କୁ ବାଦଦେଲେ ଆଉ ଯେଉଁ କେତେଜଣ ଅକିଂଚନ ପ୍ରାଣୀ ବଳକା ରହିବେ, ସେମାନେ ସ୍ୱ-ନିଂଦୁକ ଏବଂ

Digitized by srujanika@gmail.com

ପର-ପ୍ରଶଂସକ ନାମରେ ସର୍ବତ୍ର କୁଖ୍ୟାତ ଥିବେ। ଏଭଳି ପ୍ରାଣୀଂକ ସମ୍ବନ୍ଧରେ ବିଶେଷ ତଥ୍ୟ ସଂଗ୍ରହ କାଠିକର ପାଠ ହୋଇ ପଡ଼ିବ କାରଣ ଅଭୟାରଣ୍ୟର ଲୁପ୍ତ ପ୍ରାୟ ହିଂସ୍ର ପଶୁ ଭଳି ଏମାନଂକ ସଂଖ୍ୟା ଥିବ ଅତି ନଗଣ୍ୟ। ଶକ୍ତିଶାଳୀ ଅଣୁବୀକ୍ଷଣ ଯନ୍ତ୍ରରେ ବି ଏମାନେ କୀଟ ପତଂଗ ଭଳି ଦିଶୁଥିବେ। ପର ପ୍ରଶଂସା ଏବଂ ଆତ୍ମ ନିଂଦା କରିବା ଅପରାଧରେ ଏଭଳି ଜନଂକୁ ସର୍ବତ୍ର ଘୃଣା ଏବଂ ଲଜ୍ୟାର ଶୀକାର ହେବାକୁ ପଡ଼ିବ। ତ୍ରେତୟା ଯୁଗରେ ସତ୍ୟବାଦୀ ହରିଶ୍ଚଂଦ୍ର ଅଥବା ସତୀ ସାବିତ୍ରୀ ନ ଥିବା ଯେମିତି ଏକ ଐତିହାସିକ ତଥ୍ୟ ରୂପେ ପ୍ରମାଣିତ, ଏଭଳି ପର ପ୍ରଶଂସକ କୌଣସି ଯୁଗରେ କେହି ନ ଥିବା କଥା ଜଣାକେତେ ନାସ୍ତିକ ଗବେଷକ ସେତେବେଳକୁ ପ୍ରମାଣ ମଧ କରି ସାରିଥିବେ।

କଥାରେ ଅଛି ଭାତ ସାଂଗେ ଡାଲି ଆଉ ମାଡ଼ ସାଂଗେ ଗାଳି। ଠିକ ସେହିଭଳି ଅପନିଂଦାର ଜୀବନଦିଆ ସାଂଗ ହେଲା ଆତ୍ମ-ପ୍ରଶଂସା। ଅପନିନ୍ଦା ଓ ଆତ୍ମପ୍ରଶଂସା- ପିଲାଂକ ରଚନା ବହିରେ ବହୁ ପ୍ରଚଳିତ ଉପମା– ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ଭଳି। ବିନା ଆତ୍ମପ୍ରଶଂସାରେ ଅପନିଂଦା ହେଉଛି ଦୁରବସ୍ଥା ବିନା ମସଲାରେ ଚାଟର ସ୍ୱାଦ ପରି।

ଏମିତି ତ ଅପନିଂଦା କରିବା ମାତ୍ରକେ ଅପନିନ୍ଦୁକ ଜାଣତରେ କିଂବା ଅଜାଣତରେ ହେଉ ଜଗତ ସାରା ବୁଲି ବୁଲି ଆତ୍ମପ୍ରଶଂସା ମଧ କରିବାକୁ ବାଧ। ରମେଶ ବାବୁ ହଷ୍ଟେଲରେ ଟୁଥପେଷ୍ଟ କିଣୁ ନ ଥିଲାର ଅର୍ଥ ଅପନିଂଦୁକ ନିଜେ କିଣୁଥିଲେ ଓ ରମେଶ ବାବୁଂକୁ ଦୟା ପରବଶ ହୋଇ ଦାନ ମଧ କରୁଥିଲେ। ଠିକ ସେହିପରି ଚମନଲାଲ ମାସକୁ ତିନିଶହ ଟଂକାରେ ଘର ଚଳାଏର ଅନ୍ୟ ଅର୍ଥ ଅପନିଂଦୁକ ମାସକୁ ତିନିହଜାର ଟଂକା ଖର୍ଚ୍ଚ କରନ୍ତି, ଅଥବା ଭବାନି ବାବୁ ଭାରି ତେଲୁଆର ଅର୍ଥ ଅପନିଂଦୁକ ନିଜେ ତେଲର ଧାର ଧାରନ୍ତି ନାହିଁ; ଘିଅ ତାଙ୍କର ସର୍ବସ୍ୱ।

କେତେକ ଅପନିଂଦୁକ ଭାବନ୍ତି ଶ୍ରୋତାର ବୁଝିବା ଶକ୍ତି ନାହିଁ। ତେଣୁ ଆତ୍ମ ପ୍ରଶଂସାକୁ ସ୍ପଷ୍ଟ କରିବାକୁ ଯାଇ ନିଜେ ମାସକୁ କେତେ ଖର୍ଚ୍ଚ କରନ୍ତି ତାର ଟିକି ନିଖି ହିସାବ ଦିଅନ୍ତି କିଂବା କହନ୍ତି- ଆମଦ୍ୱାରା ସବୁପଛେ ହେବ ତେଲ ମରା ତ ହୋଇ ପାରିବ ନାହିଁ। ଏହିଭଳି ଅନେକ ଯୁକ୍ତି ନିଜ ସପକ୍ଷରେ ଏବଂ ନିଜ ସମକ୍ଷରେ।

ପରନିଂଦା ଓ ଆତ୍ମପ୍ରଶଂସା ମଧରେ ବିଶେଷ ପାର୍ଥକ୍ୟ ନ ଥିବା ସ୍ଥଳେ ସାମାନ୍ୟ ପାର୍ଥକ୍ୟ ଯେ ନାହିଁ, ଏହା ମହାନ ମହାନ ଚିନ୍ତକମାନେ ସୁଦ୍ଧା ଅସ୍ୱୀକାର କରି ନାହାନ୍ତି। ପାର୍ଥକ୍ୟର ପରିମାଣ ସୂତା ଖିଅରୁ ବି ଅବଶ୍ୟ କମ। ସ୍ୱଳ୍ପ ଆତ୍ମ ପ୍ରଶଂସାରେ ବକ୍ତା ମଜ୍ଜି ରହିଥିବା ଅବସ୍ଥାରେ ଶ୍ରୋତାର ମାନସିକ ଓ ଶାରୀରିକ ସ୍ଥିତି ଓ ଜିଜ୍ଞାସା ଆଦି ସୂକ୍ଷ୍ମ ସମସ୍ୟା ପ୍ରତି ସେ କ୍ୱଚିତ ଧ୍ୟାନ ଦେଉଥିବା କଥା ସର୍ବଦୌବିଦିତ।

Digitized by srujanika@gmail.com

ସେତେବେଳେ ତାଙ୍କର ସମୟ ଜ୍ଞାନ ରହେ ନାହିଁ। ଆତ୍ମପ୍ରଶଂସାର ଅଥଳ ଗର୍ଭରେ ଶ୍ରୋତାକୁ ବୁଡ଼େଇ ରଖିବା ପାଇଁ ବଦ୍ଧପରିକର ସେ। ଏହି ମହାନ ଲକ୍ଷ୍ୟ ସାଧନ ନିମିତ୍ତ ସାମାନ୍ୟ କିଛି ଅର୍ଥ ଖର୍ଚ୍ଚ କରିବାକୁ ସୁଦ୍ଧା ସେ କୁଣ୍ଠିତ କି ପଶ୍ଚାତ୍‌ପଦ ହୁଅନ୍ତି ନାହିଁ।

ମାତ୍ର ଅପନିନ୍ଦା ବେଳେ ସାଧାରଣତଃ ଏତେଟା ତନ୍ମୟ ଭାବ ଅପନିନ୍ଦୁକଠାରେ ଲକ୍ଷ୍ୟ କରାଯାଏ ନାହିଁ। ଏହି ଅବସରରେ ନିନ୍ଦୁକ ସର୍ବଥା ଶ୍ରୋତାଠାରୁ ପ୍ରତିଦାନରେ କିଛି ଶୁଣିବାକୁ ଚାହେଁ। ଶ୍ରୋତା ଯଦି ଶେଷପର୍ଯ୍ୟନ୍ତ ଶ୍ରୋତା ହୋଇ ରହେ, ତାହା ଅପନିନ୍ଦାର ନିନ୍ଦା। ତେଣୁ ଶ୍ରୋତାକୁ କହିବା ପାଇଁ ପ୍ରୋତ୍ସାହନ ଦେବା ଆଳରେ ଅପନିନ୍ଦୁକ କଥା ମଝିରେ ବାରଂବାର, "ନା କ'ଣ କହୁଛନ୍ତି ?" ବୋଲି ପଚାରେ। ଏ ସବୁ ସତ୍ତ୍ୱେ ଶ୍ରୋତା ଯଦି ମୌନ ରହେ, ତା ମୌନତାରୁ ସମ୍ମତିର ଲକ୍ଷଣ ନୁହେଁ, ବରଂ ମହାବିପତ୍ତିର ପୂର୍ବାଭାସ ସ୍ପଷ୍ଟ ପ୍ରତୀତ ହୁଏ। ତେଣିକି ଅପନିନ୍ଦୁକ ସତର୍କ ହୋଇ ପଡ଼େ। କଥା ବନ୍ଦ କରେ; ଚା କପ୍‌କୁ ମୁହଁରେ କିଛିବେଳ ଚାପି ରଖେ; ଅଥବା ପାନ ପିକ ଥୁକିବା ପାଇଁ ବାହାରକୁ ଯାଏ। ଏହି ଅବସରରେ ଶ୍ରୋତା ଯଦି ଅପନିନ୍ଦୁକର ସ୍ଥାନ ଗ୍ରହଣ ନ କଲା, ନିନ୍ଦୁକ ନିଜ ରଣ କୌଶଳ ମୁତାବିକ ସାମାନ୍ୟ ପଛଘୁଂଚା ଦେଇ କହେ, ଏମିତି ତ କୌଣସି ମଣିଷର ଭୂଲ ନାହିଁ ବୋଲି କହି ହେବ ନାହିଁ। ପାଖରୁ ଦେଖିଲେ, ଦେଖା ଯାଏ ସେଇଟା ହିଁ ବିପଦ। ନୋହିଲେ ଆମେ କୋଉ ଭଲ ଯେ। ଭାବେ ପ୍ରତିରକ୍ଷା କବଚ ସ୍ୱରୂପ ଏତକ ଯଦି ନ କହେ, ଶ୍ରୋତା ଯେ ଅବିଳମ୍ବେ ତାର ପୋଲପଟି ଖୋଲିଦେବ ଏଥିରେ ବିନ୍ଦୁମାତ୍ର ସଂଦେହ ନାହିଁ।

ରକ୍ଷା କବଚ ଯେ ପ୍ରତ୍ୟେକ ଅବସରରେ ଠିକ ଏହିଭଳି ହେବ ଏହାର କିଛି ସଠିକତା ନାହି। ସ୍ଥାନ ଓ ଶ୍ରେଣୀ ବିଶେଷରେ ଏଥିରେ ପରିବର୍ତ୍ତନ ହେବା ଅସ୍ୱାଭାବିକ ନୁହେ। ଉଦାହରଣ ସ୍ୱରୂପ ମୋର ମାଉସୀକୁ ନିଆଯାଇ ପାରେ। ନିଜ ବୋହୂର ଯାହା କିଛି ଗୁଣ ପେଡ଼ିରେ ସାଇତି ଦୁର୍ଗୁଣ ସବୁକୁ ରାଷ୍ଟ୍ର କରି ସାରିବା ପରେ ଦେଖିଲା ଯେ ମା ତାର (ମାଉସୀର) ସ୍ଥାନ ନେବାର କୌଣସି ପୂର୍ବସୂଚନା ଦେଉ ନାହିଁ। ତେଣୁ ବ୍ୟାକୁଳ ହୋଇ ପଚାରିଲା "ନାନୀ ମୁଁ ତ ମୋ ବୋହୂ କଥା କହିଲି। ଏଣିକି ତୁ ତୋ ବୋହୂ କଥା କିଛି କହ।" ମା'ର ଉତ୍ତର, "କ'ଣ ଆଉ କହିବି ? ଚାଲିଛି ଏମିତି।" (ମା'ର ସଠିକ ଉତ୍ତରଟି କେବଳ ମାଉସୀକୁ ଶୁଣା। ମାତ୍ର ଏଇୟା ଉତ୍ତର ଦେଲା ବୋଲି ମା ମତେ କହିଲା)। ତହୁଁ ମାଉସୀ ବିଗିଡ଼ି ଯାଇ କହିଲା, "ହଁ କାହିଁ କହିବୁ ? ମୋର ସିନା ବୁଦ୍ଧି ନାହିଁ ବୋଲି ସବୁ ବକି ଗଲି।"

Digitized by srujanika@gmail.com

ମାଉସୀ ହେଲା ମଫସଲ ମାର୍କା ଅପନିନ୍ଦୁକ। ମା'ର ନୀରବତାକୁ ବାଚାଳତାରେ ପରିଣତ କରିବା ନିମିତ୍ତ ଯେଉଁ ଧୈର୍ଯ୍ୟର ଆବଶ୍ୟକତା ରହିଛି ତାର ତା'ଠାରେ ଘୋର ଅଭାବ। ସାଂଗେ ସାଂଗେ ଏଣୁ ତେଣୁ କିଛି ବକି ନ ଗଲେ ତାର ଚରା ପଚିବ ନାହିଁ।

ମଫସଲି ଅପନିନ୍ଦୁକର ଏ ହେଲା ବିଶେଷ ବିଶେଷତ୍ୱ। ଶ୍ରୋତା ଯଦି ଚୁପ ରହିଲା ତୁରନ୍ତ ରାମବାଣ ଛାଡ଼ିଦେବେ। ତାଂକ ଡର, ଶ୍ରୋତା ଯାଇ ତାଂକ ନାଁରେ ଅପନିନ୍ଦା କରିବ ଏବଂ ସେ ପୁଣି ତାଂକ ଲକ୍ଷ୍ୟ ସ୍ଥଳରେ। ଫଳରେ ସବୁ ଶବ୍ଦଭେଦି ଅପନିଂଦା ତାଂକ ବିରୋଧରେ ବୁମେରାଂ ଗଠନ କରିବେ। ଅନନ୍ୟୋପାୟ ହୋଇ ଶ୍ରୋତା ଲକ୍ଷ୍ୟ ସ୍ଥଳରେ ପହଂଚିବା ଆଗରୁ ନିଜେ ଯାଇ କାର୍ଯ୍ୟ ଆରଂଭ କରିଦେବେ। ମାଉସୀ ନିଜ ବୋହୂକୁ କହିବ "ମୋ ନାନୀ ତା ବୋହୂ ନାଁରେ ଏମିତିକଥା ସବୁ ଗପୁଛି। ଛି.. ଛି..। ଆଉ କେମିତି ବୋହୂ ପାଇଲେ ବା ଖୁସି ହୁଅନ୍ତା ଯେ? ମତେ କହୁଛି ତୋର ଭାଗ୍ୟ ଲୋ, ଲକ୍ଷ୍ମୀ ପରିକା ବୋହୂ ପାଇଛୁ। ମନେ ମନେ କହିଲି, "ତୋରି ତୁଣ୍ଡ ସୁତୁଣ୍ଡ ହେଉ।" ଏମିତି ବର୍ମ ସବୁ ଯଦି ମାଉସୀ ପିଂଧି ବସେ, କେଉଁ ଶବ୍ଦଭେଦି ବାଣ ଅବା ତାକୁ ଘାଏଲ କରିବ ଯେ?

ଆଜି ଧନୀ ଚାହେଁ ନାହିଁ ଅନ୍ୟମାନେ ଧନୀ ହୁଅନ୍ତୁ। ଲେଖକ ଚାହେଁ ନାହିଁ, ଅନ୍ୟମାନେ ମଧ ତାଭଳି ଏକାଡ଼େମୀ ପୁରସ୍କାରର ସ୍ୱପ୍ନ ଦେଖନ୍ତୁ। ଏଭଳି କି ଗରିବ ଭିକ ମାଗିଲା ବେଳେ ରଡ଼ି ରଡ଼ି ଗାଏ, 'ଗରିବ କରିବ ନାହିଁ କାହାକୁ ହେ ଭଗବାନ।' ମାତ୍ର କେବଳ ଅପନିଂଦୁକ ଏପରି ଏକ ସାମାଜିକ ପ୍ରାଣୀ ଯିଏ ଚାହେଁ, ତାର ସଂଖ୍ୟା ବୃଦ୍ଧି ହେଉ। ତେଣୁ ମାଉସୀ ଚାହେଁ ମା'ବି ଅପନିଂଦା କରୁ। ଅପନିଂଦାର ଏମିତି କୁସ୍ତି କସରତ ଚାଲିଥିବା ବେଳେ ଶ୍ରୋତାର ଅନାଗ୍ରହ କେତେ ଅସହ୍ୟ ତାହା ସହଜରେ ଅନୁମେୟ। ତେଣୁ ଯେନ ତେନ ପ୍ରକାରେଣ ଶ୍ରୋତାକୁ ତା ଗୋଷ୍ଠୀରେ ସାମିଲ କରିବା ତାର ମୁଖ୍ୟ ଉଦ୍ଦେଶ୍ୟ। ଏହି ସତ୍ୟଟି ନିମ୍ନୋକ୍ତ ଉଦାହରଣରୁ ସ୍ପଷ୍ଟ ହେବ।

ଉଦାହରଣ ନିମିତ୍ତ ପିଲାଙ୍କ ଅଂକ ବହିର ଅଧିକାଂଶ ପ୍ରଶ୍ନରେ ଉଦାହରଣ ହେବାପରେ ସେଟ୍‌ସେଠା ହୋଇ ଯାଇଥିବା ଏବଂ ଏଣିକି ସାହିତ୍ୟରେ ପଶିବା ପାଇଁ ବିକଳ ହେଉଥିବା ରାମ, ଦାମ ଓ ଶ୍ୟାମ ନାମକ ତିନିଗୋଟି ନାମକୁ ନିଆଯାଉ।

ରାମ– ବୁଝିଲ, ତାକୁ କି କାମ ଜଣା? ତେଲ ମାଲିସ କରି କରି ତ ତା ଦିନ ଗଲା। ନା କ'ଣ କହୁଛ?

ଦାମ କହିବ, ହଁ। ଦାମର ଏତକ କହିବା ହେଲା ନୈତିକ କର୍ତ୍ତବ୍ୟ। ନିଜ ଅସମ୍ମତି ସତ୍ତ୍ୱେ ଏତକ ନ କହିବ ଯଦି, ଭଦ୍ରତା ବା ରକ୍ଷା ହେବ କେମିତି?

Digitized by srujanika@gmail.com

ହେଲେ କି ରକ୍ଷା ? ପ୍ରଦତ୍ତ ଉଦାହରଣର ଶ୍ୟାମ ପାଖରେ ରାମ ଯାଇ ଫେରାଦ ହେବ– କ'ଣ ମ, ତୁମକୁ ତ କାମ କିଛି ଜଣା ନାହିଁ। ତେଲ ମାରି ତୁମର ଦିନ ଗଲା। ଦାମ ପୁଣି ତୁମ ନାଁରେ ଏମିତି ସବୁ କହିପାରିବ ବୋଲି ମୁଁ ଭାବି ନଥିଲି।

ଏତିକି ଶୁଣି ଶ୍ୟାମ ରାଗରେ ନିଆଁବାଣ। ପର ମୁହୂର୍ତ୍ତରେ ଅନେକ ଅକଥ୍ୟ ଭାଷାରେ ଦାମ ଉପରେ ଗାଳି ବର୍ଷଣ। ଯଦି ଅଫିସ୍‌ର ଲେଡ଼ି ଟାଇପିଷ୍ଟର ବିଭିନ୍ନ ଅଂଗପ୍ରତ୍ୟଂଗକୁ ଖରାଦିନିଆ ପନିପରିବା ସହ ତୁଳନା କରି କବିତା ଲେଖିବା ଯାଏଁ ଉଭୟଂକ ଭିତରେ ବଂଧୁତା ବଢ଼ିଛି, ତେବେ ଅକଥ୍ୟକୁ କଥ୍ୟରେ ପରିଣତ କରିବାରେ କୌଣସି ସମସ୍ୟା ରହିବ ନାହିଁ। କଥାଟି ଏଭଳି ରୂପନେବ ଯେ, ରାମ, ଦାମ ଓ ଶ୍ୟାମ ମଧ୍ୟରେ କିରିଆପରା, ନକ୍ଷିଧରା– ସବୁ ଚାଲିବ। ଆଜିର ହନୁମାନ ପ୍ରଶ୍ନ– କଥାଟି କିଏ କହିଥିଲା ? ସାମନା ସାମନି ବସି ହିସାବ ନିକାଶ ହେଲା ପରେ ସେହି ଅଶୁଭ ମୁହୂର୍ତ୍ତରେ ମୁହଁରେ ଉଚ୍ଚାରିତ ହୋଇଥିବା 'ହଁ' ଏବେ ପ୍ରତିପାଦିତ କରିବ ଯେ ଶହେରୁ ଶହେ ପ୍ରତିଶତ ଦୋଷୀ ଦାମ। ପରଦିନ କି ଆଉ ଦାମ ଛାଡ଼େ। ପ୍ରତିଶୋଧ ଅଗ୍ନିରେ ଦରସିଝା କଇଥା ବାଇଗଣ ପରି କେବଳ ଜିଭ ଗଳୁ ହେବ; ନିବଂଧ ଭାଷାରେ ଆମ୍ଭେ କହିବୁ– ରାମ ଓ ଶ୍ୟାମ ନାଁରେ ସେ ଅପନିଂଦାର ବ୍ୟୁହ ରଚିବ। ଏହି ସୂତ୍ରରେ ଅପନିଂଦୁକ ଉଭୟ ଜାଣତ ଓ ଅଜାଣତରେ ରକ୍ତବୀର୍ଯ୍ୟ ପରି ନିଜ ବଂଶ ବୃଦ୍ଧି କରେ।

ଅପନିଂଦାର ଏକ ବିଶେଷ ଲକ୍ଷ୍ୟ ହେଲା ତାର ତାତ୍କାଳିକ ଉପଯୋଗୀତା। ଯଦିଓ ଦୁଇଜଣ ବଂଧୁ ମଧ୍ୟରେ ବଂଧୁତ୍ୱ ବୃଦ୍ଧି କରିବା ଏବଂ ତୃତୀୟ ବଂଧୁ ସହ ଉଭୟଂକର ବଂଧୁତ୍ୱ ହ୍ରାସକରିବା ଏହାର ମୌଳିକ ଉଦ୍ଦେଶ୍ୟ, ପ୍ରାୟ କ୍ଷେତ୍ର ବିଶେଷରେ ଦେଖାଯାଏ ଯେ, ସାକ୍ଷାତକୁ ଯୁକ୍ତତର୍କ ପର୍ଯ୍ୟନ୍ତ ଠେଲି ନ ଦେଇ ସୁଖାନ୍ତକ କରିବା ହିଁ ଅପନିଂଦାର ମୁଖ୍ୟ ଉଦ୍ଦେଶ୍ୟ। ଦୁଇ ବଂଧୁ ମଧ୍ୟରେ ସାମୟିକ ମିଳନକୁ କଳହମୁକ୍ତ କରିବାକୁ ହେଲେ ତୃତୀୟ ବଂଧୁର ନିଂଦାର ବିଶେଷ ଆବଶ୍ୟକତା ହୋଇଥାଏ। କୁହନ୍ତୁ ଭଲା, ଦେଶର ପରିସ୍ଥିତି ଖରାପ, ବଜାରଦର କାଛୁ କୁଣ୍ଡିଆ ଭଳି ବଢୁଛି ଏବଂ ଆଜି ଭୀଷଣ ଗରମ ବା ଶୀତ ଭଳି ତିନିଗୋଟି ଆବହମାନ କାଳରୁ ଚଳି ଆସୁଥିବା ବିଷୟକୁ ବାଦ ଦେଲେ, ଆଉ କାହାକୁ ବା ଆପଣ ଚର୍ଚ୍ଚାର ପରିଧି ଭିତରକୁ ଟାଣିପାରିବେ ? ସେ ପୁଣି ବିନା ଯୁକ୍ତିତର୍କରେ ! ଅବଶ୍ୟ ସ୍ଥଳ ବିଶେଷରେ ବିବାହ ଆଲବମ ଏବଂ ଟିକି ପୁଅ ମୁହଁରେ 'ଏ ଫର ଆପଲ' 'ବି ଫର ବଲ୍' ମଧ୍ୟ ସହାୟକ ହୋଇ ପାରିବ। ଏଥୁ ଅନ୍ତେ ଦୁନିଆଁରେ ଏମିତି କୌଣସି ବିଷୟ ନାହିଁ ଯାହା ଦୁଇଜଣ ସବଜାନତା ବଂଧୁ ମଧ୍ୟରେ ବଂଧୁତ୍ୱକୁ ଗାଢ଼ କରିବ। ହଁ, ଅଛି ବୋଇଲେ ଏକା ଅପନିନ୍ଦା ; ତୃତୀୟ ବଂଧୁର ନିଂଦା।

Digitized by srujanika@gmail.com

ସାମୟିକ ଆନନ୍ଦ ଲାଭ ପରେ ତାକୁ ଯଦି ଆପଣଂକଠାରେ ଭୁଲିଯିବାର କ୍ଷମତା ଥାଏ, ଏଥିରୁ ବଳି ଆମୋଦପୂର୍ଣ୍ଣ ପ୍ରସଂଗ ଏ ଇହଜଗତରେ ଆଉ ନାହିଁ। ତେଣୁ ମହାନନ୍ଦରେ ଅପନିନ୍ଦୁକ ସହ ତାଳ ମିଳାଇବା ହେଲା ଶ୍ରୋତାର ବାହାଦୂରି। ଏଥିରେ ଅପନିନ୍ଦୁକ ଏବଂ ଶ୍ରୋତା ଉଭୟଂକୁ ତୃପ୍ତି ମିଳିବାର ଯଥେଷ୍ଟ ସଂଭାବନା ଅଛି।

କହିବାର ଉଦ୍ଦେଶ୍ୟ ଅପନିନ୍ଦା ହେଲା ଲେଖ–ଫିକ କଲମ ଭଳି। ତାକୁ ଗଭୀର ଭାବେ ଗ୍ରହଣ କରିବା ଅବା ସେ ନେଇ ଅଯଥା ଘାରି ହେବା ହେଲା ମହାମୂର୍ଖତାର କାର୍ଯ୍ୟ। ଯେ ପର୍ଯ୍ୟନ୍ତ ଏହା ହାତାହାତି କିଂବା ଅର୍ଥବ୍ୟୟ ଯାଏଁ ଆତଙ୍କ ପର୍ଯ୍ୟାୟକୁ ଟାଣି ନ ନେଇଛି, ମନପ୍ରାଣ ଦେଇ, ଦ୍ୱିଗୁଣ ଉତ୍ସାହରେ ନିଜକୁ ସେଥିରେ ନିମଜ୍ଜିତ କରିବା ହିଁ ବୁଦ୍ଧିମାନର କାର୍ଯ୍ୟ।

ଜଣେ ବଂଧୁ ଏ ନୀତିର ଆବିଷ୍କର୍ତ୍ତା। ଅପନିନ୍ଦୁକ ଯିଏ କେହି ହୁଅନ୍ତୁ, ଅପନିନ୍ଦା ଯାହା ଉଦ୍ଦେଶ୍ୟରେ ପ୍ରକ୍ଷେପିତ ହେଉ ନା କାହିଁକି ତାଂକର ସହଯୋଗ ମାଗିଲେ, ସର୍ବଦା ସେ ଗୋଡ଼ ଟେକି ବସିଛନ୍ତି।– 'ଏବେ ଜାଣୁଛି ପ୍ରଧାନ ବାବୁଟା ଏମିତି ଲୋକ ବୋଲି।' ଏହାର ଉତ୍ତରରେ ସେ କେବେ ପଚାରିବେ ସୁଦ୍ଧା ନାହିଁ, 'କ'ଣ ହେଲା ?' ବରଂ ସ୍ୱୀକୃତି ଜଣାଇ କହିବେ, 'ଆପଣ ଏବେ ଜାଣିଲେ। ମୁଁ ପରା ତାକୁ ଦଶବର୍ଷ ହେଲା ଦେଖୁଛି।' 'କାଂପିଟାଏ ପୁରା।' ଉତ୍ତର ମିଳିବ, 'ଦେହରକ୍ତର ଯାଏ ପରା ସେ କାହାକୁ ଉଧାର ଦେବ ନାହିଁ। ଆପଣ କହିବେ, 'ଭାବୁଛି ଦିନେ ତାକୁ ବେଇଜ୍ଜତ କରିବି।' ଉତ୍ତର ମିଳିବ, 'ନିହାତି ଦରକାର ତାକୁ।' ପ୍ରଧାନ ବାବୁ ଆସିଲେ ତାକୁ ଜମା ଆଭାସ ସୁଦ୍ଧା ଦେବେ ନି ଯେ, ଏବେ ତାର ଅପନିନ୍ଦାରେ ମଗ୍ନ ଥିଲେ ଦୁହେଁ। ବରଂ ସଫଳ ଅପନିନ୍ଦା ପାଇଁ ସହଯୋଗ ମାଗିବ ଯଦି ସେ, ସେହି ଏକା ଉତ୍ତର ମିଳିବ ତାକୁ। ଏ ପୂର୍ବପ୍ରସ୍ତୁତି ବଂଧୁଙ୍କର ଏ ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ଅପନିନ୍ଦୁକଙ୍କ ପାଇଁ। ସେ ପ୍ରଶ୍ନ ଶୁଣିବା ବେଳେ ନା ବିଚଳିତ, ଉତ୍ତର ଦେବାକୁ ନା କୁଂଠିତ। ଫଳରେ ତାଂକର ଅମାପ ବଂଧୁତା। ଅନ୍ୟ ପକ୍ଷରେ ନା ନା ପରସ୍ପର ବିରୋଧୀ ଭୂଷଣରେ ଆଭୂଷିତ। ମାତ୍ର ମୋଟେ ବିଚଳିତ ନୁହନ୍ତି ସେ।

ଆଜିର ଏ ତଣ୍ଟିକଟା ଯୁଗରେ ଅପନିନ୍ଦା ଏକ ମହାମାନବୀୟ ଗୁଣ। ସମାଜରେ ପ୍ରତିଷ୍ଠା, ସମ୍ମାନ ପାଇଁ ଅତୀତରେ ଯେଉଁ ସଂସ୍କୃତଜ୍ଞାନ ଅଥବା ଲୁଂଠିତ ଧନର ବ୍ୟାପାର ଚାଲୁଥିଲା, ଅଧୁନା ତା ବଦଳରେ ଅପନିନ୍ଦାର ଆବଶ୍ୟକତା ଥିବା କଥା ସମସ୍ତେ ଅନୁଭବ କରୁଛନ୍ତି। ଅନ୍ୟଥା ବ୍ୟକ୍ତି ବଂଧୁହୀନ, ପ୍ରତିଷ୍ଠାବିହୀନ ହୋଇ ଲଂଝା ତାରା ପରି ଘୂରି ବୁଲିବାର ଯଥେଷ୍ଟ ଆଶଂକା ଅଛି। ଯିଏ ଯେତେ ବଡ଼ ଅପନିନ୍ଦୁକ, ସେ ଆଜି ସେତିକି ସଫଳ ବ୍ୟକ୍ତିତ୍ୱ।

Digitized by srujanika@gmail.com

ମାତ୍ର ଏହି ପ୍ରତିଯୋଗିତାମୟ ଜଗତରେ ସମସ୍ତ ଅପନିନ୍ଦୁକ ଯେ ସଫଳ ହୋଇ ଖ୍ୟାତି ଅର୍ଜନ କରିବେ ଏଥିରେ କୌଣସି ନିଶ୍ଚୟତା ନାହିଁ। ବିଫଳତା ଅତି ଶୀଘ୍ର ସେମାନଙ୍କୁ ସ୍ୱନିନ୍ଦୁକ ପରି ଗାରଦଖାନା କିଂବା ଅଭୟାରଣ୍ୟରେ ସ୍ଥାନ ଦେବ ଏହା ସ୍ୱତସିଦ୍ଧ। ତେଣୁ ଏକ ପକ୍ଷରେ ଅପନିନ୍ଦାର ଆଶୁ ସମୃଦ୍ଧି, ଉଜ୍ଜଳ ଭବିଷ୍ୟତ ଏବଂ ଅନ୍ୟପକ୍ଷରେ ବିଫଳ ଅପନିନ୍ଦୁକର ଦୁର୍ଦ୍ଦଶାକୁ ଆଖି ଆଗରେ ରଖି ବୁଦ୍ଧିଜୀବିଗଣଙ୍କୁ ଅପନିନ୍ଦା ସଂବଂଧରେ ବିଶେଷ ଗବେଷଣା ସବୁ ଆରଂଭ କରିବାକୁ ପଡ଼ିବ। ଉପର୍ଯ୍ୟୁପରି ବାଡ଼ିବାଇଗଣ ଓ ପୋଥିବାଇଗଣ ଭିତରେ କୌଣସି ପ୍ରଭେଦ ନ ରଖି ସେମାନଙ୍କୁ ସ୍ୱ ସ୍ୱ ସ୍ତରରେ ଗବେଷଣା ସହ ଅପନିନ୍ଦା ମଧ୍ୟ କରିବାକୁ ପଡ଼ିବ। ଏବେ କରୁଥିବା ଅପନିନ୍ଦା ବେଳେ ମନରେ ଥିବା ଅପରାଧବୋଧକୁ ସେମାନଙ୍କୁ ମୂଳୋତ୍ପାଟନ କରିବାକୁ ପଡ଼ିବ। ବିନା ଅପରାଧବୋଧରେ ହିଁ କେବଳ ଅପନିନ୍ଦାର ଲୁକ୍କାୟିତ ଗୁଣ ସବୁ ଆବିଷ୍କୃତ ଓ ବିଚ୍ଛୁରିତ ହେବା ସଂଭବ। ତେବେ ଯାଇ ଇହ ଓ ପରକାଳରେ ଅପନିନ୍ଦାର ଯଶୋବୃଦ୍ଧି ଓ ଅପନିନ୍ଦୁକର ବଂଶବୃଦ୍ଧି ହେବ। ପାଣିପାଗ ଠିକ୍ ନ ରହିଲେ ଅପନିନ୍ଦା ଭଳି ଏକ ଦୁର୍ଲଭ ହାଇବ୍ରିଡ଼ ଫସଲର ଗଜା ମରୁଡ଼ି ହେବାର ଆଶଙ୍କା ରହିଛି।

(୧୯୮୯)

Digitized by srujanika@gmail.com

# ଆମ ଜାତୀୟତାର ରୂପ—ଗୁଣ

ଜାତୀୟତା ମାନେ ଦେଶଭକ୍ତି, ରାଷ୍ଟ୍ରପ୍ରୀତି। ତାତ୍ତ୍ୱିକ ଦୃଷ୍ଟିରୁ ବିଚାର କଲେ ତହିଁରେ ନକରାତ୍ମକ କିଛି ନାହିଁ। ନିଜ ଜାତି, ନିଜ ଭାଷା, ନିଜ ସଂସ୍କୃତିକୁ ଆପଣାର ମନେ କରିବା; ତାକୁ ଆପଣେଇଥିବା ଲୋକଙ୍କ ସାଂଗରେ ଏକତା ରଖିବା କିଛି ଖରାପ କଥା ନୁହେଁ। ଏହାର ଅର୍ଥ ନୁହେଁ ଯେ, ଆଉ ଯେଉଁମାନେ ନିଜ ଜାତି, ନିଜ ଭାଷା ଆଦିକୁ ଆପଣେଇଛନ୍ତି, ତାଂକ ସାଂଗରେ ପ୍ରଥମ ଗୋଷ୍ଠୀର କଳହ ହେବ। ସାଧାରଣତଃ ଏହା ହେବା କଥା ନୁହେଁ। ଅନ୍ୟଥା, ଶ୍ରବଣକୁମାର କାହାଣୀ ଶୁଣିଲେ ଆଉ ଯେଉଁ ପିତୃଭକ୍ତ ପୁତ୍ରମାନେ ଅଛନ୍ତି, ଚିଡ଼ି ଯାଆନ୍ତେ। କିନ୍ତୁ, ବିଡ଼ଂବନାର ବିଷୟ ଏହି ଯେ, ଆମ ଜାତୀୟତାର ଭକ୍ତମାନେ ପଡ଼ୋଶୀ ଦେଶ ଜାତୀୟବାଦୀ ଭକ୍ତଂକ ନାଁ ଶୁଣିଲେ ନାହିରେ ତେଲ ଦେଇ ଡିଆଁ ମାରନ୍ତି। ଅର୍ଥାତ୍ ଆମ ଜାତୀୟତା ଓ ତାଂକ ଜାତୀୟତା ମଧ୍ୟରେ କିଛି ପରିପୂରକତା ନାହିଁ, ବରଂ ବୈରଭାବ ବେଶ୍ ସୁସ୍ପଷ୍ଟ। ତେଣୁ କରି ତାଂକ ଜାତୀୟତାବାଦୀ ଆମର ଶତ୍ରୁ; ଆମ ଜାତୀୟବୀର ତାଂକ ପାଇଁ ଛି...ଥୁ..ଥୁ।

ରାଷ୍ଟ୍ରବାଦର ଇତିହାସ ବହୁତ ପୁରୁଣା ନୁହେଁ। ମଧ୍ୟଯୁଗର ଶେଷ ବେଳକୁ ୟୁରୋପ ଲୋକ ବାହାରକୁ ବାହାରିଲେ – ଧର୍ମଯୁଦ୍ଧ ଆଳରେ, ଧର୍ମପ୍ରଚାର ଉଦ୍ଦେଶ୍ୟରେ, ଭୌଗୋଳିକ ଆବିଷ୍କାର ନିମନ୍ତେ, ବାଣିଜ୍ୟ ସକାଶେ। ବାହାରକୁ ଆସିଲାରୁ ଅସୁରକ୍ଷାର ଭାବ ବଢ଼ିଲା। ସୁରକ୍ଷା ସକାଶେ ଭାଷା-ସଂସ୍କୃତି ଭିତ୍ତିରେ ଭୌଗୋଳିକ ପରିସୀମାକୁ ଆଧାର କରି ନିଜ ନିଜ ଭିତରେ ଗୋଷ୍ଠୀ ତିଆରିଲେ। ଫରାସୀ ଭାଷା–ଭାଷୀ ଲୋକ ନିଜକୁ ଫରାସୀ ଗୋଷ୍ଠୀ, ଫରାସୀ ରାଷ୍ଟ୍ର ବୋଲି କହିଲେ, ଇଂରେଜ ଭାଷା–ଭାଷୀ ଗୋଷ୍ଠୀ ନିଜକୁ ଇଂରେଜ ରାଷ୍ଟ୍ର ନାମରେ ନାମିତ କଲେ। ତାଂକ ତାଂକ ଭିତରେ ଝଗଡ଼ା–ଝାଟି ବେଳେ ରାଷ୍ଟ୍ରବାଦ ପକ୍ଷ ତିଆରିଲା – ଫରାସୀ ଭାଷା ଅନ୍ୟ ଫରାସୀ ଭାଷୀକୁ ସମର୍ଥନ କଲା, ଇଂରାଜୀ ଭାଷୀ ଇଂରେଜକୁ ରମିଲା। ଷୋଡ଼ଶ ଶତାବ୍ଦୀରେ ଧର୍ମସୁଧାର ଆଂଦୋଳନ ଚାଲିଲା; ସୁଧାରକମାନେ ପୋପଂକର ବିରୋଧ କଲେ। ସୁଧାରକ ମାର୍ଟିନଲୁଥର ଜର୍ମାନ ଜାତୀୟତାର ଆଧାରରେ ପୋପଙ୍କର ବିରୋଧ କରିବା ପାଇଁ ଆହ୍ୱାନ ଦେଲେ; ସେହି ଆଧାରରେ ସମର୍ଥନ ମଧ୍ୟ ତାଂକ ଆଂଦୋଳନକୁ ମିଳିଲା। ଇଂଲଣ୍ଡର ରାଜା ଅଷ୍ଟମ ହେନେରୀ ପୋପଂକର କେଥୋଲିକ

Digitized by srujanika@gmail.com

ଚର୍ଚ୍ଚଠାରୁ ଭିନ୍ନ ହେବା ସଙ୍କାଶେ ଇଂରେଜ ଜାତୀୟତାକୁ ଆଧାର କଲେ। ଊନବିଂଶ ଶତାବ୍ଦୀରେ ଉପନିବେଶବାଦର ଆରଂଭ, ପୁଂଜିବାଦର ବିକାଶ ମୂଳରେ ରାଷ୍ଟ୍ରବାଦ ଆହୁତିର କାମ କଲା। ବିଂଶ ଶତାବ୍ଦୀରେ ଏସୀୟ, ଆଫ୍ରିକୀୟ ତଥା ଲାଟିନ ଆମେରିକୀୟ ଦେଶରେ ଉପନିବେଶବାଦ ବିରୋଧୀ ଆଂଦୋଳନ ମୂଳରେ ମଧ୍ୟ ସେହି ରାଷ୍ଟ୍ରୀୟତା ବା ରାଷ୍ଟ୍ରବାଦ ବିଦ୍ୟମାନ। ଆମେ ସେହିଦିନଠାରୁ ରାଷ୍ଟ୍ରୀୟତା ଆଂଦୋଳନକୁ ଭାରତରେ ଜପାମାଳି କରିଛୁ। ଆଜି ଯଦି ନିରେଖି ଦେଖାଯାଏ ଚୀନ ଓ ରୁଷ ବିପ୍ଳବ ମଧ୍ୟ ରାଷ୍ଟ୍ରବାଦୀ ଆଂଦୋଳନ ରୂପେ ଉଦ୍‌ଭାସିତ ହେବେ। କେବଳ ଏତିକି ନୁହେଁ, ଜର୍ମାନୀରେ ନାଜିବାଦର ଆଶୁ ସଫଳତା ପଛରେ ମଧ୍ୟ ଉଗ୍ରରାଷ୍ଟ୍ରବାଦ ପ୍ରଚ୍ଛନ୍ନ ଭାବରେ ବିଦ୍ୟମାନ।

ଏଥିରୁ ଗୋଟାଏ କଥା ସୁସ୍ପଷ୍ଟ ଯେ, ରାଷ୍ଟ୍ରୀୟତା ବା ଜାତୀୟତାର କିଛି ନିଜସ୍ୱ ଗୁଣନାହିଁ। ସେ ଏକ ପ୍ରବହମାନ ଶକ୍ତି ଏବଂ ଆଧୁନିକ ଯୁଗର ଏକ ମହତ୍ତ୍ୱପୂର୍ଣ୍ଣ ବାସ୍ତବିକତା। ଇଂରେଜ ପୁଂଜିବାଦୀଂକ ହାତବାରିସୀ ହୋଇ ସେ ଉପନିବେଶବାଦର ସଂଚାଳନ ଓ ବ୍ୟାପ୍ତିରେ ସହାୟ ହୁଏ, ହିଟଲରଂକ ନାଜିବାଦକୁ ପ୍ରୋତ୍ସାହନ ଦିଏ, ପୁଣି ମହାତ୍ମାଗାଂଧିଂକ ସାଂଗରେ ଅସହଯୋଗ, ଭାରତଛାଡ଼ ଆଦି ନାଁରେ ସେ ଇଂରେଜ ଉପନିବେଶବାଦକୁ ଭାରତରୁ ବୋକଚା ବାଂଧିବାକୁ ବାଧ କରେ। ତାର ବ୍ୟବହାର ଓ ଉପଚାରରୁ ବ୍ୟବହାରକର୍ତ୍ତାଂକ ମତିଗତିକୁ ଦେଖିହୁଏ। ତେଣୁ ସ୍ଥାନୀୟ ରୂପଗୁଣ ତାର ଯେ ସର୍ବଦା ଅପରିବର୍ତ୍ତନୀୟ ଏବଂ ଦ୍ୱିଧା—ଶୂନ୍ୟ ରହିବ; ତାର କିଛି ମାନେ ନାହିଁ।

ସ୍ୱାଧୀନତା ପୂର୍ବରୁ ଆମ ଜାତୀୟତାର ମୁଖ୍ୟ ଚରିତ୍ର ଥିଲା ଉପନିବେଶବାଦର ବିରୋଧ। ଏହାର ଅର୍ଥ ନୁହେଁ ଯେ ତାର ଆଉ କିଛି ଅଲଗା ଦିଗନ୍ତ କି ଚରିତ୍ର ନ ଥିଲା। ଉଦାହରଣ ସ୍ୱରୂପ ସମାଜର ଜାତିବାଦୀ ଭିତ୍ତି ଉପରେ କୁଠାରଘାତ, ଗଣତାନ୍ତ୍ରିକ ମୂଲ୍ୟବୋଧର ବିକାଶ, ନର—ନାରୀ ସମାନତା ପାଇଁ ଉଦ୍ୟମ ମଧ୍ୟ ଆମ ଜାତୀୟତା ଆଂଦୋଳନର ଗୌଣ ଚରିତ୍ର ହୋଇ କେବେ ରହି ନାହାନ୍ତି। କିନ୍ତୁ ଦେଶର ସ୍ୱାଧୀନତା ଓ ବିଭାଜନ ପରେ ଉପନିବେଶବାଦ ସ୍ଥାନରେ ପଡ଼ୋଶୀର ବିରୋଧ ହିଁ ଆମ ଜାତୀୟତାର ମୁଖ୍ୟ ଚରିତ୍ର ଏବଂ ଏକମାତ୍ର ଚରିତ୍ର ହେବାରେ ଲାଗିଛି। ସମୟ ଯେତେ ଆଗେଇଛି ଆମ ପ୍ରତିବେଶୀ ବିରୋଧୀ ଭାବ ସେତେ ଅଧିକ ମାତ୍ରାରେ ଉଗ୍ର, ଉତ୍କଟ ହୋଇଚାଲିଛି। ଏହା ଆମ ସମୟର ସବୁଠାରୁ ବଡ଼ ଅନ୍ତର୍ଦ୍ୱଂଦ ବୋଲି କହିଲେ ବୋଧହୁଏ ଭୁଲ ହେବ ନାହିଁ। ସମାଜ ଗଠନ, ରୁଢ଼ିବାଦୀ ପରଂପରାର ବିରୋଧ, ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ତଥା ସୁଦୃଢ଼ୀକରଣ ଆଦି, ରାଷ୍ଟ୍ରୀୟତାର (ଆମ) ଆଉ ଲକ୍ଷ୍ୟ ହୋଇ ରହିନାହିଁ।

ସ୍କୁଲ ପାଠ ବହିରେ, ଆଈମା' କାହାଣୀରେ ତଥା ସାଧାରଣ ବୁଦ୍ଧିରେ ଆମେ ଶିଖୁ ଯେ, ପଡ଼ୋଶୀ ସାଂଗରେ ସର୍ବଦା ମଧୁର ସଂପର୍କ ରହିବା କଥା। ପଡ଼ୋଶୀ

Digitized by srujanika@gmail.com

ସାଂଗରେ ନ ପଡ଼ିଲେ ସହରରେ ଲୋକ ଭଡ଼ା ଘର ବଦଳେଇ ଦିଅନ୍ତି। ଯାହା ସାଂଗରେ ପଡ଼େ ସେ ହୁଏ ପଡ଼ୋଶୀ। କିନ୍ତୁ ଆମ ଶାସକ ବର୍ଗର ବିଶ୍ୱାସ ଯେ, ନିଜ ଦେଶ, ନିଜ ଜାତିକୁ, ନିଜ ଭିତ୍ତିକୁ ସୁଦୃଢ଼ କରିବାକୁ ହେଲେ ଅନ୍ୟ (ପଡ଼ୋଶୀ) ପ୍ରତି ଘୃଣା ଓ ବୈରି ଭାବ ପୋଷଣ ଓ ସଂବର୍ଦ୍ଧନ ଅତି ଆବଶ୍ୟକ। ବ୍ୟକ୍ତିକୁ ସେତେ ରାଷ୍ଟ୍ରୀୟତା ଦୀକ୍ଷାରେ ଦୀକ୍ଷିତ ବୋଲି ବିଚାର କରାଯିବ, ଯେତେ ସେ ପଡ଼ୋଶୀ ପ୍ରତି ଘୃଣା ପ୍ରକଟ କରୁଥିବ। ନିଜ ସଭ୍ୟତା–ସଂସ୍କୃତି ପ୍ରତି ଅମୂର୍ତ୍ତ ପ୍ରୀତିଭାବ ବୋଲି କିଛି ନାହିଁ; ପଡ଼ୋଶୀ ରାଷ୍ଟ୍ରପ୍ରତି ଘୃଣା ଓ ବିରକ୍ତି ହିଁ ଯେମିତି ଆମ ରାଷ୍ଟ୍ରୀୟତାର ମୁଖ୍ୟ ସ୍ୱର !

ଆମର ପଡ଼ୋଶୀ କିଏ ? ପାକିସ୍ଥାନ, ବାଂଲାଦେଶ, ଶ୍ରୀଲଂକା, ନେପାଳ, ଭୁଟାନ ଓ ଚୀନ। ଚୀନକୁ ବାଦଦେଲେ ବାକୀ ସମସ୍ତେ ଆମେ ଅତୀତରେ ଗୋଟାଏ ସଂସ୍କୃତିର ଅଂଶ ବିଶେଷ ଥିଲେ। ଆମ ସମସ୍ତଙ୍କର ବେଶଭୂଷା, ଚାଲି–ଚଲଣି, ହାବ–ଭାବ, ଭାଷା – ପ୍ରାୟ ସବୁଥିରେ କିଛି ନା କିଛି ସାମଂଜସ୍ୟ। ଚୀନ ସହ ଖୋଲା ଖୋଲି ବୈରଭାବ ରଖିବାର ସାମର୍ଥ୍ୟ ଆମର ନାହିଁ। ଶ୍ରୀଲଂକା, ନେପାଳ, ଭୁଟାନ ଆଦି ଏତେ ସାନ ଯେ – ଆକାର ଓ ସାମର୍ଥ୍ୟ ଦୃଷ୍ଟିରୁ – ଆମଶାସକ ବର୍ଗ ତାଂକୁ ଶତ୍ରୁ ଘୋଷଣା କଲେ, ପଦାରେ ପଡ଼ିଯିବେ। ନେଇ ଥୋଇ ଶେଷକୁ ପାକିସ୍ଥାନ ରହେ – ଯାହା ସାଂଗରେ ଆମେ ଶତ୍ରୁତାର ହୁଂକାର ଦେଇ ପାରିବା; ଶାସକ ବର୍ଗର ରଣ ହୁଂକାରକୁ ଲୋକ ପରତେ ଯିବେ, କାରଣ ପାକିସ୍ଥାନ ଓ ଭାରତ ମଧ୍ୟରେ ଧର୍ମଗତ ଅସାମଂଜସ୍ୟ। ଆଜି ଆମ ଜାତୀୟତାର ବିଶେଷ ଗୁଣ ହେଲା ପାକିସ୍ଥାନର ଅଂଧ ବିରୋଧ।

ଷାଠିଏ ଦଶକର ସମାଜବାଦୀ ନେତା ରାମମନୋହର ଲୋହିଆ ଭାରତ, ପାକିସ୍ଥାନ, ନେପାଳ ଆଦିଂକୁ ନେଇ ଏକ ମିଳିତ ରାଷ୍ଟ୍ର ହେବା କଥା କହୁଥିଲେ। ଫଳତଃ, ଆଶାଥିଲା, ପ୍ରତିରକ୍ଷାରେ ଖର୍ଚ୍ଚ କମ୍ ହେବ, ଅନେକ ଜିନିଷରେ ଅଯଥା ପୁନର୍ବ୍ୟୟ ହେବ ନାହିଁ। ସେତେବେଳେ ଦେଶର ଅନେକ ବୁଦ୍ଧିଜୀବି ଲୋହିଆଂଙ୍କ ଯୁକ୍ତିକୁ ଅବାନ୍ତର ମନେ କରୁ ନ ଥିଲେ। ଆଜି କେନ୍ଦ୍ରର କେତୋଟି ସରକାରରେ ଲୋହିଆଂକ ପଟ୍ଟଶିଷ୍ୟମାନେ ମଧ୍ୟ ପ୍ରତିରକ୍ଷା ମନ୍ତ୍ରୀ ହେଲେଣି। ହେଲେ ମିଳିତ ରାଷ୍ଟ୍ର ତ ପର କଥା, ଦୁଇ ଦେଶ ମଧ୍ୟରେ ଉତ୍ତେଜନାର ପରିମାଣରେ ମଧ୍ୟ ସାମାନ୍ୟ ହ୍ରାସ ହେବାର ଆଶା ନାହିଁ; ବରଂ ପରିମାଣ ବଢୁଛି; ପରିଣାମ ଭୟଙ୍କର ହୋଇ ଉଠୁଛି। ପରମାଣୁ ଅସ୍ତ୍ରଶସ୍ତ୍ରରେ ବଳ କଷାକଷି ବେଳୁ ବେଳ ଦୁର୍ବିସହ ହୋଇ ଉଠୁଛି। ସାମରିକ ବ୍ୟୟ ବଢୁଛି; ଗୋଟାଏ ଦେଶ ବୋମା ଫୁଟାଇଲେ, ଆର ଦେଶରେ ତାର ପ୍ରତିଧ୍ୱନୀ ଭଳି ବୋମା ଫୁଟୁଛି। ସ୍ଥିତିରେ କୌଣସି ପରିବର୍ତ୍ତନ ନାହିଁ – ସରକାର 'ହିଂଦୁବାଦୀଂକ' ହାତରେ ଥାଉ, କି ହିଂଦୁ ବିରୋଧୀଂକ ହାତରେ ଥାଉ।

Digitized by srujanika@gmail.com

ଆଉ କାହିଁକି ବା ନ ହେବ? ପରସ୍ପରର ସବୁ ସମସ୍ୟାର– ଉଗ୍ରବାଦ, ଆଭ୍ୟନ୍ତରୀଣ ଶାନ୍ତି, ଆର୍ଥିକ ବିକାଶ– ପରା ଗୋଟାଏ କାରଣ ପଡ଼ୋଶୀ। ପ୍ରାକ୍ ସ୍ୱାଧୀନତା କାଳରେ ଇଂରେଜ ଉପନିବେଶବାଦ ଦେଶୀୟ ବିକାଶର ଯେତେ ବାଧକ, ସ୍ୱାଧୀନୋତ୍ତର ଭାରତରେ, ଜାଣି, ପାକିସ୍ଥାନ (ଏବଂ ପାକିସ୍ଥାନ ପାଇଁ ଭାରତ) ବିକାଶର ସେତେ ଅନ୍ତରାୟ। ତେଣୁ ଆମ ଜାତୀୟତା ପାକିସ୍ଥାନକୁ ମୂଳପୋଛ ନ କଲା ଯାଏଁ ସୁସ୍ଥେଇବ କେମିତି?

ପ୍ରତିଯୋଗିତା ହେଲା ଆଧୁନିକ ସମାଜର ଏକ ଆବଶ୍ୟକ ଚରିତ୍ର। ପୁଂଜିବାଦୀ ଶିକ୍ଷା ଅନୁଯାୟୀ ଉନ୍ନତି ଓ ବିକାଶ– ସେ ବ୍ୟକ୍ତିର ହେଉ ବା ରାଷ୍ଟ୍ରର– ପ୍ରତିଯୋଗିତା ବିନା ଅସଂଭବ! ଭାରତ ଓ ପାକିସ୍ଥାନ ମଧ୍ୟରେ ପ୍ରତିଯୋଗିତା ଅମୂର୍ତ୍ତ ବା ହୋଇଥାନ୍ତା ଯେମିତି ଦୁଇ ମଲ୍ଲଯୋଦ୍ଧାଂଙ୍କ ମଧ୍ୟରେ ଥାଏ! ହେଲେ ଆମ ପ୍ରତିଯୋଗିତାର ପରିଣାମ ଯେତେ ଭୟାବହ, ଉଦ୍ଦେଶ୍ୟ ବି ସେତେ ମହତ ନୁହେଁ।

ସବୁଠାରୁ ଭୟାବହ ପରିଣାମ ହେଲା– ସାମରିକ ଅପବ୍ୟୟ। ଯଦି ଜନ ହିତକର କାମ, ରାସ୍ତାଘାଟ ନିର୍ମାଣ, ନାଳି ନର୍ଦ୍ଦମା ସଫେଇ ଆଦି କରି ନ ପାରିଲ, ମଧ୍ୟ ଯୁଗର ରାଜା–ରାଜୁଡ଼ାଂକ ଭଳି ମଂଦିର–ମସ୍‌ଜିଦ କର, ପ୍ରାସାଦ ତିଆର, ଅନ୍ତତଃ ଦେଶର ଶିଳ୍ପୀ କାରିଗରଂକୁ ମଜୁରୀ ମିଳିବ, ରାଜକୋଷରୁ ଆସି ଅର୍ଥ ବଢ଼େଇ-କମାରଂକ ଘରେ ପଶିବ। କିନ୍ତୁ ବୋମା–ବାରୁଦ ଫୁଟାଇଲେ କେବଳ ଅର୍ଥ ଅପବ୍ୟୟ ହେବା ହିଁ ସାର ହେବ। ସବୁଠାରୁ ବଡ଼ କଥା, ଚଢ଼ା ଓ କଡ଼ା ଦାମରେ ବିଦେଶରୁ ମାଲମତା କିଣି ନିଜ ଘରେ ବୋମା–ବାରୁଦ ଫୁଟାଇବା କଥା କେବଳ ଭାରତ–ପାକିସ୍ଥାନ ଭଳି ମୂର୍ଖ ପଡ଼ୋଶୀ ହିଁ ଚିନ୍ତା କରି ପାରନ୍ତି। ଏ ଝଗଡ଼ା ଲାଗେ ଦୁଇ ସଉତୁଣୀ କଳି ପରି ଶସ୍ତା, ମଗଜହୀନ ଓ ମଉଜିଆ। ଅତୀତରେ ଜୟଚାଂଦ, ମିର୍ଜାଫର ବିଦେଶୀ ଶତ୍ରୁକୁ ଡାକି ବିଦେଶୀ ଅସ୍ତ୍ରଦ୍ୱାରା ପଡ଼ୋଶୀକୁ 'ସାବାଡ଼' କରେଇ ଥିଲେ ବୋଲି ଆମେ ତାଂକୁ ଦେଶଦ୍ରୋହୀ ଘୋଷଣା କରୁ, ମାତ୍ର ଆଜି ପଡ଼ୋଶୀକୁ କାବୁ କରିବା ସକାଶେ ଆକାଶ-ଛୁଆଁ ଦାମରେ ବିଦେଶୀ ଅସ୍ତ୍ର–ଶସ୍ତ୍ର କିଣୁଥିବା ରାଜନେତାଂକୁ ରାଷ୍ଟ୍ରଭକ୍ତର ଆଖ୍ୟା ଦେଉଁ। ଦେଶରେ ଲୋକ ଉପାସରେ ଓ ପେଟ ବିକଳରେ ଆମ୍ବଟାକୁଆ ଶସ ଖାଇ ଶହ ଶହ ଲୋକ ମରୁଥିବା ବେଳେ; ଥୋକେ ବ୍ୟାଧିରେ ସଢୁଥିବା ସ୍ଥଳେ ଏହା କି କମ୍ ବିଡ଼ମ୍ବନାର ବିଷୟ! ରାଷ୍ଟ୍ରବାଦର ସୂର୍ଯ୍ୟୋଦୟ କାଳରେ ପୃଥ୍ୱୀରାଜଂକର ଯେତେ 'ପଡ଼ୋଶୀ' ଥିଲେ, ଜୟଚାଂଦ ଆଜି ପାକିସ୍ଥାନଠାରୁ ଅଧିକ ଦୂରର 'ପଡ଼ୋଶୀ' ନୁହେଁ ଭାରତ।

ସାମରିକ ଅପବ୍ୟୟଠାରୁ ମଧ୍ୟ, ବୋଧହୁଏ, ପ୍ରତିଯୋଗିତାର ଅନ୍ୟଏକ ଦାରୁଣ ପରିଣାମ ହେଲା ମାନବିକ ସଂବଳର ଅପବ୍ୟୟ। ଉପର ସ୍ତରରେ 'ମହାପାତ୍ରେ'

Digitized by srujanika@gmail.com

ମାରି ନେଲା ବେଳକୁ ତଳେ ସେନାବାହିନୀର ଲକ୍ଷ ଲକ୍ଷ ଜବାନ ପାକିସ୍ଥାନକୁ 'ଜଲକା' ହୋଇ ଚାହିଁଛନ୍ତି ଖାଲି। ଶରୀର ସଜା, ସମର ସଜା ବ୍ୟତୀତ ତାଂଙ୍କର ଅନ୍ୟ କିଛି କାମ ନାହିଁ। ପରିବାରଠାରୁ ଦୂରରେ, ପଇସାଠାରୁ ଦୂରରେ, କାମକୁ ନେଇ ଆତ୍ମତୁଷ୍ଟି ଠାରୁ ଦୂରରେ ରହି ଦେଶର ଏତେ ବଡ଼ ସୁସ୍ଥ, ସବଳ ଯୁବଶକ୍ତି ପଡ଼ି ରହେ। ଛୁଟୀରେ ଫେରିବା ବେଳେ ରେଲଷ୍ଟେସନରେ ହଂଗାମା କରିବା ବ୍ୟତୀତ ଅନ୍ୟ କିଛି ଦରିପାରିବାର ଆତ୍ମବିଶ୍ୱାସ ଯେମିତି ନାହିଁ ତା'ଠାରେ! କେବଳ ଜବାନ କାହିଁକି, ହଜାର ହଜାର ବୁଦ୍ଧିଜୀବି, ଯନ୍ତ୍ରୀ, ବୈଜ୍ଞାନିକ ବି ସେହି ଅହେତୁକ ପର୍ବତ ଖୋଦନରେ ଘର୍ମାକ୍ତ। ମାନବିକ ସଂବଳର ଏ'କି କମ ଅପବ୍ୟବହାର ଅହଂକାର, ଆସ୍ପର୍ଦ୍ଧାର କ'ଣ ଅଳପ ବ୍ୟଭିଚାର ?

ଉପନିବେଶବାଦର ଆରଂଭ କାଳରେ ଗୋରା ଉପନିବେଶବାଦୀ ଆଫ୍ରିକାରୁ ବଳପ୍ରୟୋଗପୂର୍ବକ କଳା ଲୋକଂକୁ ନେଇ କଳା ମାନବ ସଂବଳରେ କାନାଡ଼ା, ଯୁକ୍ତରାଷ୍ଟ୍ର ଆମେରିକା ଭଳି ଧନଧାନ୍ୟ ଭରା ସମାଜ ଗଢ଼ିଗଲେ। କଳାମାନେ ଥିଲେ (ଅନ୍ତତଃ ଗୋରାଂକ ନଜରରେ) ସ୍ୱଳ୍ପ ବୁଦ୍ଧିସଂପନ୍ନ, ଅସୁସ୍ଥ, ଦୁର୍ବଳ। ତଥାପି ତାଂକରି ପରିଶ୍ରମରେ, ତାହାକୁ ସଂବଳ କରି ଆଧୁନିକ ବିକାଶ ମୁଣ୍ଡ ଟେକିଲା ଦୁନିଆଁରେ। ମାନବିକ ସଂବଳର ଅଥକ ଶକ୍ତିକୁ ହିଁ ଏହା ସୂଚିତ କରାଏ। ଆଉ ଏ ପଟେ, ଉଭୟ, ଭାରତ ଓ ପାକିସ୍ଥାନ, ଦେଖି ପରଖି ବର୍ତ୍ତମାନ ପୀଢ଼ିର ସବୁଠାରୁ ଭଲ, ସବଳ, ବୁଦ୍ଧିମାନ ଯୁବକମାନଂକୁ କହୁଛନ୍ତି– ଯାଅ ସିଆଚୀନ ଗ୍ଲେସିଅରରେ ଥଣ୍ଡା ଖାଅ; ତାହା ହିଁ ତୁମ ରାଷ୍ଟ୍ରଭକ୍ତିର ସମୁଚିତ ପରୀକ୍ଷା ଓ ପୁରସ୍କାର। ଏହି ନିଷ୍ପତ୍ତି କେତେ ମାତ୍ରାରେ ଅସଂଗତ ଯେ ତାହା କେବଳ ଇତିହାସ କହିବ।

ଭାରତ ତୁଳନାରେ ପାକିସ୍ଥାନ ଆକାରରେ ଖୁବ ସାନ, ସାମର୍ଥ୍ୟ ମଧ ତାର କମ। ଅତୀତରେ ପ୍ରତିଥର ସେ ଭାରତ ହାତରେ ପରାସ୍ତ ହୋଇଛି। ଯଦି ତାକୁ ଆମେରିକା, ଚୀନ ସାହାଯ୍ୟ ଦେବେ, ଯୁଦ୍ଧବେଳେ ଭାରତକୁ ମଧ କିଏ କିଏ ସାହାଯ୍ୟ ଦେବେ। ନିଜର ଅନ୍ତଃଶକ୍ତି ନ ଥାଇ କେବଳ ବାହାର ସାହାଯ୍ୟରେ କିଏ ଯଦି ଯୁଦ୍ଧ ଜିଣୁଥାନ୍ତା, ତେବେ କେବେଠୁ ପାକିସ୍ଥାନ ଭାରତକୁ ଜିଣି ସାରନ୍ତାଣି। ପାକିସ୍ଥାନ ବିରୁଦ୍ଧରେ ଭାରତର ସମର ସଜାର ବିପକ୍ଷରେ ଏତେ ସବୁ ଅକାଟ୍ୟଯୁକ୍ତି, ତଥାପି ଭାରତର ଦୃଷ୍ଟିକୋଣରେ କୌଣସି ପରିବର୍ତ୍ତନ ନାହିଁ। ଏକା ଧରଣର ଯୁକ୍ତି ପାକିସ୍ଥାନ ବିପକ୍ଷରେ– ତିନି ତିନି ଥର ଭାରତଠାରୁ ପରାଜିତ ହୋଇ ସାରିଛି ସେ। ସବୁ ଦିଗରୁ ସାନ, ତାକୁ ଜଣା ସେ ଭାରତକୁ ପାରିବ ନାହିଁ। ତଥାପି ବଳ କଷିବା ପାଇଁ ସଜ ସଜ ଆଗଭର!

Digitized by srujanika@gmail.com

ଏଥିରୁ ମନେହୁଏ ଯେ, ଉଭୟ ଦେଶରେ 'ଯୁଦ୍ଧଂ ଦେହି' ଡାକରା ପଛରେ ଉଦ୍ଦେଶ୍ୟ ଯୁଦ୍ଧ ନୁହେଁ, ଭିନ୍ନ କିଛି। ଉଭୟ ଦେଶର ଶାସକ ବର୍ଗ– ସେ କଂଗ୍ରେସ ହେଉ କି ବିଜେପି, ମୁସଲିମଲିଗ ହେଉ କି ପିପୁଲସ ପାର୍ଟି– ପୁଂଜିବାଦୀ ଆଗରେ ବିକି ହୋଇଗଲେଣି, ନବ–ଉପନିବେଶବାଦୀ ଶକ୍ତି ନିମିତ୍ତ ନିଜ ନିଜ ଦେଶକୁ ନବ–ଉପନିବେଶ କରି ପରଷିଲେଣି। ପୁଂଜିବାଦୀ ରାଷ୍ଟ୍ରଂକ ଇସାରାରେ ତାଂକୁ ଅସ୍ତ୍ର କିଣିବାକୁ ହେବ, ସମର ସଜ୍ଜା କରିବାକୁ ହେବ, ନୂଆ ଅର୍ଥନୀତିର ପ୍ରଚଳନ କରିବାକୁ ହେବ, ବହୁରାଷ୍ଟ୍ରୀୟ କଂପାନୀକୁ ଆଣିବାକୁ ହେବ, ଇତ୍ୟାଦି ଇତ୍ୟାଦି। ଏ ସବୁ କାମ ସୁରଖୁରୁରେ ହେବା ପାଇଁ ପଡ଼ୋଶୀକୁ ଏକ ଶକ୍ତିଶାଳୀ ଶତ୍ରୁ ଭାବେ ଗଢ଼ିବା ଭାରି ଜରୁରୀ, ତେଣିକି ଅସଲରେ ପଡ଼ୋଶୀ ଆଶାବାଡ଼ି ଧରି ଚାଲୁଥାଉ ପଛେ କାହାରି କିଛି କହିବାର ନାହିଁ। ପଡ଼ୋଶୀକୁ ଯେତେ ଶତ୍ରୁ ବୋଲି ପ୍ରମାଣ କରିହେବ ନବ-ଉପନିବେଶବାଦର ସେତେ ଅଧିକ ସଫଳତା। ଏହାଛଡ଼ା ଶାସକ ବର୍ଗର ନପୁଂସକତା ମଧ୍ୟ ଏଥିରେ ଘୋଡ଼ି ହୋଇଯାଏ। ଯେଉଁ ରାଷ୍ଟ୍ରୀୟତା ପଚାଶ ବର୍ଷ ତଳେ ଏକ ନୂଆଁ ସମାଜ ଗଢ଼ିବାର ତାଉ ଓ ତାକତ ରଖିଥିଲା, ହଜାର ବର୍ଷର ପୁରୁଣା ଜାତିବାଦୀ ଭିତ୍ତି, ଲିଂଗଗତ ବୈଷମ୍ୟ, ରୂଢ଼ିବାଦୀ ପରଂପରାକୁ ଭାଂଗିବା ପାଇଁ ବଳ କଷୁଥିଲା ତାହା କି ଆଜିର ଏ ଅପାରଗ ଶାସକ ବର୍ଗ ଓ ଶୋଷଣକାରୀ ନବ-ଉପନିବେଶବାଦ ଆଗରେ ଚୁପ ରହିଥାନ୍ତା ? ତେଣୁ ବେଳହୁଁ ସାବଧାନ ରୀତିରେ 'ପଡ଼ୋଶୀ ଶତ୍ରୁ' ଖୋଜିବାକୁ ତାକୁ ଅଂଧାରରେ ପେଲି ଦେଇ ଶାସକବର୍ଗ ଇଦ୍–ଦିୱାଲୀ ମାନୁଛନ୍ତି। ଏଥିରେ ହିଁ ଆମ ଶାସକବର୍ଗର ବାହାଦୁରି।

(୧୯୯୭)

◆◆

Digitized by srujanika@gmail.com

# ରାଷ୍ଟ୍ର ଓ କ୍ଷେତ୍ରୀୟତା

ଚଳିତ ଦଶନ୍ଧିରେ କେନ୍ଦ୍ରରେ କ୍ଷମତାସୀନ ଶାସକ ଦଳଗୁଡ଼ିକର ଘଟକଗୋଷ୍ଠୀମାନଙ୍କ ତାଲିକା ଦେଖିଲେ ଜଣାପଡ଼େ ଯେ, ସାଧାରଣ ନିର୍ବାଚନମାନଙ୍କରେ କ୍ଷେତ୍ରୀୟ ବା ଆଂଚଳିକ ରାଜନୈତିକ ଦଳମାନଙ୍କୁ ରାଷ୍ଟ୍ରୀୟ ବା କେନ୍ଦ୍ରୀୟ ଦଳ ତୁଳନାରେ ଅଧିକ ସଫଳତା ମିଳୁଛି। ଉପର ଠାଉରିଆ ଭାବେ କହିଲେ, କେତେଗୋଟି ଆଂଚଳିକ ଓ ପ୍ରାଦେଶିକ ଶକ୍ତିର ସମନ୍ୱୟ ହିଁ ହେଲା ଆଜିକାଲିର କେନ୍ଦ୍ର ସରକାର। ବିଜେପି ଓ ମେଣ୍ଟ ସରକାରରେ ୧୩ଟି ଦଳ— ସମତା, ବିଜେଡ଼ି, ହରିଆନା ବିକାଶ ପାର୍ଟି, ଆନ୍ନା ଡିଏମକେ, ଅକାଲି, ଇତ୍ୟାଦି। ୧୯୯୬ ନିର୍ବାଚନ ପରବର୍ତ୍ତୀ ମିଳିତ ସାମ୍ମୁଖ୍ୟରେ ମଧ ତଦ୍‌ରୂପସ୍ଥିତି— ଡିଏମକେ, ମାନିଲା କଂଗ୍ରେସ, ତେଲୁଗୁ ଦେଶମ, ସମାଜବାଦୀ ପାର୍ଟି, ଆସାମ ଗଣପରିଷଦ, କମ୍ୟୁନିଷ୍ଟ, ଇତ୍ୟାଦି। ବର୍ତ୍ତମାନ ଅଧିକାଂଶ ରାଜ୍ୟରେ ଆଂଚଳିକ ଦଳର ପ୍ରାଧାନ୍ୟ— ସେ ଅରୁଣାଚଳ ପ୍ରଦେଶର ଅରୁଣାଚଳ କଂଗ୍ରେସ ନାମରେ ହେଉ, କି ଆଂଧ୍ରରେ ତେଲୁଗୁ ଦେଶମ। ତା ତଳକୁ ପ୍ରଦେଶ ଗୁଡ଼ିକ ଭିତରେ ପୁଣି ଅଛନ୍ତି ଛୋଟ କିନ୍ତୁ ସ୍ୱ ସ୍ୱ ଅଂଚଳରେ ଖୁବ୍ ପ୍ରଭାବଶାଳୀ ଅନେକ ଗୁଡ଼ିଏ ଦଳ, ଯେମିତି କି ଆସାମର କୋକ୍ରାଝାର ଅଂଚଳରେ ବୋଡ଼ୋ ଦଳ, ଦାର୍ଜିଲିଂର ଗୋର୍ଖାଲେଣ୍ଡ ଦଳ, ଦକ୍ଷିଣ ବିହାରର ଝାରଖଣ୍ଡ ଦଳ ଆଦି। ମନେହୁଏ, ଏଣିକି କ୍ଷେତ୍ରୀୟ ରାଜନୈତିକ ଶକ୍ତି ଓ ରାଜନେତା ହିଁ ରାଷ୍ଟ୍ରର ଭାଗ୍ୟ ନିୟନ୍ତା ରହିବେ !

ଯେଉଁ ମାତ୍ରାରେ କ୍ଷେତ୍ରୀୟ ଦଳର ପ୍ରଭାବ ବୃଦ୍ଧି ପାଇବାରେ ଲାଗିଛି, ଏହି କିଛି ବର୍ଷହେଲା ଠିକ ଅନୁରୂପ ମାତ୍ରାରେ ଦେଶରେ ରାଷ୍ଟ୍ରୀୟ ଦଳଗୁଡ଼ିକର ପ୍ରାଧାନ୍ୟ ହ୍ରାସ ପାଇ ଚାଲିଛି। ଉଦାହରଣ ସ୍ୱରୂପ ୧୯୯୧ ସାଧାରଣ ନିର୍ବାଚନ ପରବର୍ତ୍ତୀ ସ୍ଥିତି କଥା ବିଚାର କରାଯାଇପାରେ। କ୍ଷମତାକୁ ଆସିଲା ଭଳି ରାଷ୍ଟ୍ରୀୟ ଦଳର ସଂଖ୍ୟା ବୃଦ୍ଧି ନ ହେବା ସତ୍ତ୍ୱେ, ସେତେବେଳେ ଲୋକସଭାରେ ସଂଖ୍ୟା ଗରିଷ୍ଠତା ନା କଂଗ୍ରେସକୁ ମିଳିଲା, ନା ଜନତା ଅଥବା ଭାରତୀୟ ଜନତାକୁ ମିଳିଲା। ନିର୍ବାଚନ ସମୟରେ କଂଗ୍ରେସ କ୍ଷମତାସୀନ ନ ଥିଲା ; ନିର୍ବାଚନ ମଝିରେ ଦଳର ନେତା ରାଜୀବ ଗାନ୍ଧୀଙ୍କ ହତ୍ୟା ହେଲା। ତା'ସତ୍ତ୍ୱେ କଂଗ୍ରେସକୁ ନା 'ଅନୁକମ୍ପା' ଭୋଟ ମିଳିଲା, ନା ମିଳିଲା କ୍ଷମତା—ବିରୋଧୀ ଭୋଟ। ଏହାର ଠିକ ବିପରୀତ ସ୍ଥିତି ଥିଲା ୧୯୮୦ ନିର୍ବାଚନ ସମୟରେ। ଜନତା ପାର୍ଟି (ଲୋକଦଳ) କ୍ଷମତାରେ ଥାଇ ନିର୍ବାଚନ ହେଲା। ଇଂଦିରା ଗାନ୍ଧୀଙ୍କ ନେତୃତ୍ୱରେ ବିରୋଧୀ ଦଳ ଭାବେ କଂଗ୍ରେସକୁ ଲୋକସଭାରେ

Digitized by srujanika@gmail.com

ପୂର୍ଣ୍ଣସଂଖ୍ୟା ଗରିଷ୍ଠତା ମିଳିଲା। ଠିକ ସେହିଭଳି ୧୯୮୪ ସାଧାରଣ ନିର୍ବାଚନ ପୂର୍ବରୁ ଇଂଦିରା ଗାଂଧିଙ୍କ ହତ୍ୟା ହେଲା। ଅନୁକଂପା ଭୋଟ ବଳରେ ରାଜୀବ ଗାଂଧି ଓ କଂଗ୍ରେସକୁ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ମିଳିଲା। ୧୯୯୧ ନିର୍ବାଚନ ବେଳେ ଦୁଇଟି ଯାକ କାରଣ– କଂଗ୍ରେସ କ୍ଷମତାସୀନ ନ ରହି ଏବଂ ଦଳର ନେତା ରାଜୀବ ଗାଂଧିଙ୍କ ହତ୍ୟା– ମହଜୁଦ ଥିଲେ। ତଥାପି କଂଗ୍ରେସ ଦଳକୁ ଲୋକସଭାରେ ପୂର୍ଣ୍ଣ ବହୁମତ ମିଳିଲା ନାହିଁ। ସ୍ୱାଧୀନୋତ୍ତର ଭାରତରେ ପ୍ରଥମ ଥର ପାଇଁ ଲୋକସଭାରେ ସଂଖ୍ୟା ଗରିଷ୍ଠତାର ଅଭାବ ଜନିତ ଦଶାରେ ସମସ୍ତ ରାଜନୈତିକ ଦଳ ଗ୍ରାସିତ ରହିଲେ। କଂଗ୍ରେସ ସଂଖ୍ୟା ଗରିଷ୍ଠ ଦଳ ନ ହୋଇ ସୁଦ୍ଧା କେଂଦ୍ରରେ ସରକାର ଗଢ଼ିଲା। ୧୯୯୬ ନିର୍ବାଚନ ଉତ୍ତାରୁ ତ କେଂଦ୍ରୀୟ ଦଳମାନେ ଏତେ ବିକଟ ସ୍ଥିତିର ସମ୍ମୁଖୀନ ହେଲେ ଯେ, ଲୋକସଭାର ସର୍ବବୃହତ ଦଳଭାବରେ ବିଜେପିକୁ ସରକାର ଗଠନ ପାଇଁ ନିମନ୍ତ୍ରଣ ତ ମିଳିଲା, ହେଲେ ୧୩ ଦିନ ପରେ ସଂଖ୍ୟା ଗରିଷ୍ଠତାର ଅଭାବରେ ବାଧ ହୋଇ ତାକୁ ଇସ୍ତଫା ମଧ ଦେବାକୁ ପଡ଼ିଲା। କ୍ଷେତ୍ରୀୟ ଦଳସବୁ ଏତେ ମାତ୍ରାରେ ଏକଜୁଟ ଓ ପ୍ରଭାବଶାଳୀ ସିଦ୍ଧ ହେଲେ ଯେ, ଦ୍ୱିତୀୟ ସର୍ବବୃହତ ଦଳ କଂଗ୍ରେସକୁ ମଧ ସରକାରରେ ସ୍ଥାନ ମିଳିଲା ନାହିଁ। ପାଂଚବର୍ଷ ପୂର୍ବେ କ୍ଷେତ୍ରୀୟ ଦଳଗୁଡ଼ିକ ଭିତରେ ଏକତାର ଅଭାବର ଫାଇଦା ନେଇ ଏକ କେନ୍ଦ୍ରୀୟ ଦଳ– କଂଗ୍ରେସ– ଶାସନ କରିବାର ଯେଉଁ ସୁଯୋଗ ପାଇଥିଲା, ଏଥର ତାର ଆଉ ପୁନରାବୃତ୍ତି ହେଲା ନାହିଁ। ୧୯୯୮ ନିର୍ବାଚନ ପରେ ଅବିକଳ ପୂର୍ବଭଳି ସ୍ଥିତି। କ୍ଷେତ୍ରୀୟ ଦଳଗୁଡ଼ିକ ଆଜି ଏତେ ପ୍ରଭାବଶାଳୀ ଯେ, ବିଜେପି ବଦଳରେ ତେଲୁଗୁ ଦେଶମକୁ ଲୋକସଭା ବାଚସ୍ପତି ଆସନ ମିଳିଛି, ଏଡ଼ିଏମକେ ନେତ୍ରୀ ଜୟଲଳିତାଂକ ସାମାନ୍ୟ ଧମକିରେ କେଂଦ୍ରସରକାରର ରଥୀ, ମହାରଥୀମାନେ ତ୍ରସ୍ତ ହୋଇପଡୁଛନ୍ତି, ସମତାପାର୍ଟିର ଇଂଗିତରେ ବିହାର ସରକାରକୁ ବରଖାସ୍ତ କରିବାକୁ ନିଷ୍ପତ୍ତିନେଇ ବିଜେପି ରାଷ୍ଟ୍ରପତିଂକ ଆଗରେ ଅପଦସ୍ତ ହେଉଚି, ତ ପୁଣି ଅକାଳିଂକ ଚାପରେ ଉଦ୍ଧାମସିଂ ନଗର ଜିଲ୍ଲାକୁ ପ୍ରସ୍ତାବିତ ଉତ୍ତରାଖଣ୍ଡ ରାଜ୍ୟ ଅନ୍ତର୍ଭୁକ୍ତ କରାଯିବ କି ନାହିଁ ନିଷ୍ପତ୍ତି ନିଆଯାଇ ପାରୁନାହିଁ। ଲାଗୁଛି, ସରକାରର ନାକରସି ବିଜେପି ବଦଳରେ କେତୋଟି କ୍ଷେତ୍ରୀୟ ଦଳର ହାତମୁଠାରେ। ତେଣିକି ଉକ୍ତ ଦଳଗୁଡ଼ିକ ପ୍ରକୃତ ଦିଗଦର୍ଶନ ଦେଇ ପାରୁଛନ୍ତି, ନା କେଂଦ୍ରୀୟ ଦଳଗୁଡ଼ିକ ଭଳି କ୍ଷମତାଂଧ ହୋଇ ପଡୁଛନ୍ତି, ସେ ଭିନେ କଥା।

ଅନ୍ୟ ଅର୍ଥରେ କହିଲେ, ଗତ ତିନୋଟି ସାଧାରଣ ଓ ମଧ୍ୟବର୍ତ୍ତୀ ନିର୍ବାଚନ ଯେତିକି ମାତ୍ରାରେ କଂଗ୍ରେସ, ବିଜେପି ଆଦିଂକ ମଧରେ କ୍ଷମତା ଦୌଡ଼କୁ ତୀବ୍ର କରିଛି, ତତୋଽଧିକ ମାତ୍ରାରେ କେଂଦ୍ରୀୟ ଓ କ୍ଷେତ୍ରୀୟ ରାଜନୈତିକ ଶକ୍ତି ମଧରେବଳ କଷାକଷି ପ୍ରକ୍ରିୟାକୁ ସୁଦୃଢ଼ କରିଛି। ଫଳସ୍ୱରୂପ, କେଂଦ୍ରୀୟ ଦଳ ରାଜନୀତିରେ କ୍ଷେତ୍ରୀୟଦଳର କ୍ରମବର୍ଦ୍ଧିଷ୍ଣୁ ପ୍ରଭାବକୁ ସ୍ୱୀକାର କରିଛି। ଗତ ଦୁଇ ଦଶଂଧି ମଧରେ

Digitized by srujanika@gmail.com

କ୍ଷେତ୍ରୀୟ ସ୍ୱାୟତ୍ତତା ପ୍ରଶ୍ନକୁ ନେଇ ଯେତେସବୁ ଜନ ଆଂଦୋଳନ ସଂଗଠିତ ହୋଇ ଆସିଛି, ଏହା ବୋଧହୁଏ ତାର ଏକ ତାର୍କିକ ଓ ସାଂବଧାନିକ ପରିଣତି।

କେତୋଟି ରାଜ୍ୟରେ ଅବଶ୍ୟ ଏବେ ସୁଦ୍ଧା ରାଷ୍ଟ୍ରୀୟ ବା କେଂଦ୍ରୀୟ ଦଳର ପ୍ରାଧାନ୍ୟ ରହିଛି, କିନ୍ତୁ ଅନୁଧ୍ୟାନ କଲେ ମନେହୁଏ, ତନ୍ମଧ୍ୟରୁ ଅନେକଙ୍କ ଚରିତ୍ର ଆଂଚଳିକ ଦଳଠାରୁ ବିଶେଷ ଭିନ୍ନ ନୁହେଁ। ଉଦାହରଣ ସ୍ୱରୂପ ବିହାର, ଓଡ଼ିଶା ଓ କର୍ଣ୍ଣାଟକର ଜନତା ଦଳ; ପଶ୍ଚିମବଂଗ, ତ୍ରିପୁରା ଓ କେରଳର ସିପିଏମକୁ ନିଆଯାଇପାରେ। ଲାଗେ, ଭୋଟଦାତାଂକ ନଜରରେ ସେମାନେ ହେଲେ କ୍ଷେତ୍ରୀୟ ଆଶା ଆକାଂକ୍ଷାର ଗୋଟାଏ ଗୋଟାଏ ଭାରତୀୟ ସ୍ୱରୂପ। ୧୯୯୬ ନିର୍ବାଚନପରେ ବିହାରରେ ଜନତା ଦଳର ସ୍ଥିତି ଯତସାମାନ୍ୟ ବଜାୟ ରହିବା ପଛରେ, ଲାଲୁ ଯାଦବଙ୍କୁ ଜାତିଭିତ୍ତିକ ସମର୍ଥନ ଓ ଦେଶରେ ବିହାରର ପ୍ରଭୁତ୍ୱ ବୃଦ୍ଧି ହେବାର ଆଶା ହିଁ ମୁଖ୍ୟ କାରଣ। ତେଣୁ ବିନା କୌଣସି ନୀତି ଆଦର୍ଶର ଭିତ୍ତିରେ ଲାଲୁ ଜନତାଦଳରୁ ନିଜ ଗୋଷ୍ଠୀ କାଢ଼ି ନେଲେ। ଆଜି ନାମମାତ୍ର କେତେଜଣ ନେତାଂକୁ ବାଦଦେଲେ ବିହାରରେ କେନ୍ଦ୍ରୀୟ ଜନତା ଦଳ ଶୂନ୍ୟପ୍ରାୟ ସ୍ଥିତିରେ। ଠିକ ସେହିଭଳି କେବଳ ନାମକୁ ବାଦଦେଲେ ଅନ୍ୟକୌଣସି ଦୃଷ୍ଟିରୁ ବିଜୁ ପଟ୍ଟନାୟକଂକ ଜନତା ଦଳକୁ ଏକ ରାଷ୍ଟ୍ରୀୟ ଦଳର ଶାଖା ବୋଲି ବିଚାରିବା କଷ୍ଟ। ନୂଆଁ ଅର୍ଥନୀତି, 'ମଣ୍ଡଳ' ଆଦି ମହତ୍ୱପୂର୍ଣ୍ଣ ତଥା ବିବାଦୀୟ ବିଷୟଗୁଡ଼ିକରେ ବିଜୁବାବୁ ନିଜ କେଂଦ୍ରୀୟ ଦଳଠାରୁ ସଂପୂର୍ଣ୍ଣ ବିପରୀତ ମତପୋଷଣ କରୁଥିଲେ ଏବଂ ଆବଶ୍ୟକ ସ୍ଥଳେ ଓଡ଼ିଶାକୁ ଭାରତରୁ ସ୍ୱତନ୍ତ୍ର ରଖିବାର ଧମକି ମଧ୍ୟ ଦେଉଥିଲେ। ଆଶ୍ଚର୍ଯ୍ୟର କଥା, ଏ ସବୁ ସତ୍ତ୍ୱେ ନା ସେ ଦଳରୁ ତଡ଼ା ଖାଇଲେ, ନା କେବେ ଦଳରେ ତାଂକ ପ୍ରଭୁତ୍ୱ ଊଣା ହେଲା! ଓଡ଼ିଶା ଜନତା ଦଳରେ କ୍ଷେତ୍ରୀୟତାର ମାତ୍ରା ଯେ କେତେ ଅଧିକ ତାର ପ୍ରମାଣ ମିଳିଲା ୧୯୯୭ରେ ବିଜୁ ଜନତା ଦଳର ଗଠନ ପରେ ପ୍ରାୟତଃ ଅସଲି ଜନତା ଦଳର ପୂରାଅଂଶ ଆଜି ବିଜୁ ଜନତା ଦଳରେ ! ଆଗାମୀ ବିଧାନସଭାରେ ଏପରିକି କେହି ବିହନ ବଞ୍ଚାଇବା ପାଇଁ ଅସଲି ଜନତାଦଳରୁ ନ ଥିବେ– ଏ କଥା ଲୋକ ଆଜିଠୁଁ ଅନୁମାନ କରି ସାରିଲେଣି। କର୍ଣ୍ଣାଟକରେ ମଧ୍ୟ ଜନତା ଦଳ ଏକାପରିମାଣରେ ଆଂଚଳିକ। ଫଳରେ ଦେବଗୌଡ଼ଂକ ପ୍ରଧାନମନ୍ତ୍ରୀତ୍ୱ କାଳରେ ସମ୍ବାଦପତ୍ରମାନେ ପ୍ରଧାନମନ୍ତ୍ରୀଂକୁ କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ଭଳି ବ୍ୟବହାର କରୁଛନ୍ତି ବୋଲି ଆକ୍ଷେପ କରିବାର ସାହସ କରୁଥିଲେ। କାବେରୀ ଜଳବିବାଦ ପରି ଆନ୍ତଃ–ପ୍ରାଦେଶିକ ସମସ୍ୟା ଉପୁଜିଲେ, ମିଳିତ ସାମୁଖ୍ୟର ଘଟକ ଦଳବି ତାଂକ ନାଁରେ ଏଭଳି ଆକ୍ଷେପ କରିବାରୁ ବିରତ ହେଉ ନ ଥିଲେ।

ପ୍ରାୟ ଏକା ଧରଣର ସ୍ଥିତି ସିପିଏମର। ଆନ୍ତର୍ଜାତୀୟତା ଓ ସର୍ବହରା ଗଣ ବିପ୍ଳବର ଯେତେ ନାଗରା ପିଟୁ ପଛେ, ଲୋକ ଦୃଷ୍ଟିରେ ସିପିଏମ ବଂଗାଳିଂକର ଏବଂ ଦକ୍ଷିଣରେ ନମ୍ବୁଦିରି ନାୟାନାରଂକ ଏକ ସାମାଜିକ ସଂଗଠନ। ତେଣୁ ବଂଗାଳି

Digitized by srujanika@gmail.com

ପ୍ରଭୁତ୍ୱର ବିରୋଧୀ ଆସାମ ଛାତ୍ର ଆଂଦୋଳନକୁ ଅଣି ଦଶକରେ ଯେତେବେଳେ ଦଳ ବିରୋଧ କଲା କିଂବା ଗୋର୍ଖାଲେଣ୍ଡ ଆଂଦୋଳନକୁ ବିଚ୍ଛିନ୍ନତାବାଦୀ ଆଖ୍ୟା ଦେଲା (ଯଦିଓ ବିରୋଧୀ ଦଳ ନେତା ଭାବେ ଅତୀତରେ ଜ୍ୟୋତି ବସୁ ଗୋର୍ଖାଲେଣ୍ଡ ଦାବୀକୁ ଭାରତୀୟ–ନେପାଲୀଂକ ସ୍ୱାଭିମାନର ସଂଘର୍ଷ ବୋଲି ଘୋଷଣା କରିଥିଲେ।), ଲୋକ ଆଚମ୍ୱିତ ହେଲେ ନାହିଁ। ଆଜିର ବାସ୍ତବିକତା ହେଲା ଯେ, ଯେଉଁଠି ବଂଗାଳି ନାହାନ୍ତି, ସେଠି ସିପିଏମ ଉବୁରିବା ଦୂରର କଥା ଗଜୁରିବାର ସ୍ୱପ୍ନ ସୁଦ୍ଧା ଦେଖେନି। (କେତେ ସଫଳତା ମିଳେ– ତାହା ଭିନ୍ନ କଥା।) ସେ ଉତ୍ତର ପ୍ରଦେଶର କାନପୁର ହେଉ କି ଦିଲ୍ଲୀର ଚିତ୍ତରଂଜନ ପାର୍କ। ବାକୀ ଅଂଚଳରେ ହୁଏତ ଏହା ଆସାମ ଗଣପରିଷଦର 'ଅନୁଯାୟୀ' ହୋଇ ଆସନଟିଏ ଜିଣିଛି, ନୋହିଲେ ଜନତାଦଳର କୃପାଦୃଷ୍ଟି ଅଭାବରେ ମିଳିଥିବା ସିଟ୍‌ଟିକୁ ହାତଛଡ଼ା କରିଛି।

କେବଳ ଜନତାଦଳ ବା ସିପିଏମ ନୁହନ୍ତି, କ୍ଷେତ୍ରୀୟତା ଆଜି ସବୁ କେଂଦ୍ରୀୟ ଦଳର ଏକ ବାସ୍ତବିକତା। ଫଳରେ କ୍ଷଣକ୍ଷଣକେ ଗୁଜରାଟ ଜନତାଦଳ, କର୍ଣ୍ଣାଟକ କଂଗ୍ରେସ, ତାମିଲ ମାନିଲା କଂଗ୍ରେସ, ମଧ୍ୟପ୍ରଦେଶ ବିକାଶ ପାର୍ଟି, ଶଂକର ସିଂ ବାଘେଲାଂକ ରାଷ୍ଟ୍ରୀୟ ଜନତାପାର୍ଟି ଆଦି ଦଳ କେବଳ ଗଠିତ ହୁଅନ୍ତି ନାହିଁ, ଗୁଂଜାଏ ଲେଖା ଏମପି, ଏମଏଲଏ ସାଉଁଟିବାର ବି ତାକତ ରଖନ୍ତି।

କ୍ଷେତ୍ରୀୟ ଦଳ ମଧ୍ୟରେ ବିଏସପିର ଉତ୍ତର ପ୍ରଦେଶ ବାହାରେ ପଂଜାବ ଓ ମଧ୍ୟପ୍ରଦେଶରେ ମଧ୍ୟ କିଛିଟା ପ୍ରଭାବ ରହିଛି। ଦଳର ନେତା କାଂଶିରାମ ଖୋଦ ୧୯୯୬ ନିର୍ବାଚନରେ ପଂଜାବରୁ ନିର୍ବାଚିତ ହୋଇଥିଲେ। ପ୍ରାପ୍ତ ମତର ପ୍ରତିଶତ ଆଧାରରେ କିଛିମାସ ତଳେ ନିର୍ବାଚନ କମିଶନ ତାକୁ ରାଷ୍ଟ୍ରୀୟ ଦଳର ମାନ୍ୟତା ଦେଇଛି। ଜାତିଭିତ୍ତିକ ସମୀକରଣ ତୀବ୍ର ହେଲେ ଭବିଷ୍ୟତରେ ଏହି ଦଳ ପ୍ରକୃତ ଅର୍ଥରେ ସର୍ବଭାରତୀୟ ସ୍ତରକୁ ଉନ୍ନୀତ ହେବାର ମଧ୍ୟ କମ ସଂଭାବନା ନାହିଁ। ଏସବୁ ସତ୍ତ୍ୱେ ବର୍ତ୍ତମାନ ସ୍ଥିତିରେ ବିଏସପି ହେଲା ଉତ୍ତର ପ୍ରଦେଶର ଏକ କ୍ଷେତ୍ରୀୟ ଦଳ। ଠିକ ସେହିଭଳି ଉତ୍କଟ ଆଂଚଳିକତାବାଦୀ ଏଡ଼ିଏମକେ ତାମିଲନାଡୁ ବାହାରେ ପଣ୍ଡିଚେରୀରେ ମଧ୍ୟ ଖୁବ ପ୍ରଭାବଶାଳୀ। ତଥାପି ତାକୁ ଆଂଚଳିକ କହିଲେ, ସ୍ୱୟଂ ଏଡ଼ିଏମକେର ବି ଆପତ୍ତି ରହେନା। ଏକାଧିକ ରାଜ୍ୟରେ ନିର୍ବାଚନ ଲଢ଼ିଲେ ବା ନମୁନା ପାଇଁ ଦୁଇ ଚାରୋଟି ଆସନ ଜିଣିଲେ, ଦଳଟିଏ ସର୍ବଭାରତୀୟ ସ୍ତରର ମାନ୍ୟତା ପାଏନା କି ଚରିତ୍ରର ହୋଇଯାଏନା। ସବୁ ଅଂଚଳରେ ଲୋକଂକ ଭିତରେ ତାର ପରିଚିତି ରହିବା କଥା, ଆଦର ରହିବା ବାଂଛନୀୟ। ତାହା ଯଦି ମାନଦଣ୍ଡ ନହୁଏ ଦେଶରେ ଥିବା ପ୍ରାୟ ସବୁଦଳ ଆଜି ରାଷ୍ଟ୍ରୀୟ ଶ୍ରେଣୀଭୁକ୍ତ ହେବେ। ଏବଂ ସର୍ବଭାରତୀୟ ପରିଚିତି ଯେହେତୁ ଏକ ମାନଦଣ୍ଡ, ତେଣୁ ପ୍ରକୃତ ଅର୍ଥରେ ଜନତା ଓ ଭାରତୀୟ ଜନତା ପାର୍ଟିକୁ ମଧ୍ୟ ସର୍ବଭାରତୀୟ ସ୍ୱୀକୃତି ମିଳିବା କଷ୍ଟ। କିଏ ବଂଗାଳି ଦଳ, ତ କିଏ ଉତ୍ତରଭାରତୀୟ ଦଳ, ତ ପୁଣି ଆଉ କିଏ ବିହାରୀ ଅବା ଯାଦବଂକ ଦଳ।

Digitized by srujanika@gmail.com

ତେଣୁ କାହାକୁ 'ଆଂଚଳିକ' ବୋଲି ନ୍ୟୁନ ମନେ କରିବା, ବିଚ୍ଛିନ୍ନତାବାଦୀ ଆଖ୍ୟା ଦେବା ଅସଂଗତ ଯେତିକି, ଅନ୍ୟ କେଉଁ ଦଳକୁ 'ରାଷ୍ଟ୍ରୀୟ' କହି, ସେହି ଭିତ୍ତିରେ ତାକୁ ଶ୍ରେଷ୍ଠ ବିଚାରିବା ଅଯୌକ୍ତିକ ସେତିକି। ଏ ସବୁ ସତ୍ତ୍ୱେ ସୁବିଧା ପାଇଁ, ବୁଝିବା ପାଇଁ ନିବଂଧରେ କେତୋଟି ଦଳକୁ 'ରାଷ୍ଟ୍ରୀୟ' ଏବଂ ବାକୀମାନଂକୁ 'କ୍ଷେତ୍ରୀୟ' ବୋଲି ଆମେ ଉଲ୍ଲେଖ କରିଛୁ। ଅନ୍ୟ ଦଳର ବିନା ବା ଅତ୍ୟଳ୍ପ ସାହାଯ୍ୟରେ କେଂଦ୍ରରେ ସରକାର ଗଢ଼ିବାର ଆଶା ପୋଷିଥିବା ଦଳକୁ 'ରାଷ୍ଟ୍ରୀୟ', କେଂଦ୍ରୀୟ ସୂଚୀରେ ରଖି, ସେହିଭଳି ଆଶା ପାଳି ନ ଥିବା ଦଳକୁ 'କ୍ଷେତ୍ରୀୟ' 'ଆଂଚଳିକ' ତାଲିକାରେ ରଖିଛୁ। ସଂଜ୍ଞାଟି ସର୍ବାଦୌଗ୍ରହଣୀୟ ହୋଇ ନପାରେ, ମାତ୍ର ନିବଂଧର ପରିକଳ୍ପନା ଦୃଷ୍ଟିରୁ ଏକ ଆବଶ୍ୟକତା।

କ୍ଷେତ୍ରୀୟ ଦଳର କ୍ରମବର୍ଦ୍ଧିଷ୍ଣୁ ଏବଂ ନିଜର କ୍ରମକ୍ଷୟିଷ୍ଣୁ ଶକ୍ତି କଥା ଏହି କିଛି ବର୍ଷ ହେଲା ସ୍ୱୟଂ କେଂଦ୍ରୀୟ ଦଳ ବି ହୃଦୟଂଗମ କଲେଣି। ପ୍ରମାଣ ସ୍ୱରୂପ ରାଜନୀତିର ନାଭି କେଂଦ୍ର ରୂପେ ପରିଚିତ ଉତ୍ତରପ୍ରଦେଶର ଅନୁଭୂତିକୁ ନିଆଯାଇପାରେ। ସାତଜଣ ପ୍ରଧାନମନ୍ତ୍ରୀ ସୃଷ୍ଟି କରିଥିବା ଏହି ପ୍ରଦେଶରେ ଆଜି ଗୋଟାଏ ପକ୍ଷରେ କଂଗ୍ରେସ କ୍ଷେତ୍ରୀୟ ବିଏସପିର ନେତୃତ୍ୱାଧୀନରେ ନିର୍ବାଚନ ମେଣ୍ଟ କରୁଛି ତ, ଅନ୍ୟ ପକ୍ଷରେ କ୍ଷେତ୍ରୀୟ ସମାଜବାଦୀ ପାର୍ଟିର ମୁଲାୟମ ସିଂକୁ ଜନତାଦଳ ନିଜ ମହାରଥୀ ଘୋଷଣା କରୁଛି। ଠିକ ସେହିଭଳି ତାମିଲନାଡୁରେ ଗତ କେତେ ଦଶଂଧି ହେଲା ଡିଏମକେ ବା ଏଡ଼ିଏମକେର ନେତୃତ୍ୱ ଅବା ସାହଚର୍ଯ୍ୟ ବିନା କୌଣସି ରାଷ୍ଟ୍ରୀୟ ଦଳ ପକ୍ଷରେ ଆସନ କେତୋଟି ଜିଣିବା ବି କାଠିକର ହୋଇ ପଡୁଛି; କ୍ଷମତା ହାସଲ କରିବା ତ ସୁଦୂର ପରାହତ ଏକ ସାମର୍ଥ୍ୟ। ବିଜେପିର ବି ଅନୁରୂପ ସ୍ଥିତି। ୟୁପିରେ କ୍ଷମତାସୀନ ହେବା ଲାଗି ସେ ବିଏସପି ଆଗରେ ଆଣ୍ଠେଇଲାଣି, ତ ମହାରାଷ୍ଟ୍ରରେ ଶିବସେନାର ପଛୁଆଳ ଓ କଟୁଆଳ ସାଜିଲାଣି। ପଂଜାବ, ହରିଆଣା ଓ ବିହାରରେ ବି ସେ କୌଣସି ନା କୌଣସି କ୍ଷେତ୍ରୀୟ ଦଳର ପଛୁଆଳ। କ୍ଷେତ୍ରୀୟ ଦଳଗୁଡ଼ିକ ଯଦି ଦୁର୍ବଳ ହୋଇଥାନ୍ତେ, ବିଜେପି କି ଏତେ ମନ ଧରନ୍ତା ?

କ୍ଷେତ୍ରୀୟ ଦଳର ପ୍ରାଧାନ୍ୟ ବଢ଼ିଲେ ଅବଶ୍ୟ ପ୍ରାନ୍ତୀୟ ଆଶା ଆକାଂକ୍ଷାକୁ ସ୍ୱର ମିଳିଲା ବୋଲି କହିବା କଷ୍ଟ! କିନ୍ତୁ ତା ଯୋଗୁଁ ଦେଶର ସାର୍ବଭୌମତ୍ୱ ପ୍ରତି ବିପଦ ଆଶଂକା କରୁଥିବା ମତର ଆମେ ପକ୍ଷଧର ନୋହୁଁ। ଭାରତବର୍ଷରେ ପଚିଶ–ତିରିଶଟି ଭାଷା ବା ଶହେ–ଦୁଇଶହ ଆଂଚଳିକ ସଂସ୍କୃତି ବିକଶିତ ହେଲେ ଦେଶର ଶକ୍ତି କ୍ଷୟ ହୁଏ ନାହିଁ, ବରଂ ସଭ୍ୟାଚାର ଆଧାରଶିଳା ମଜବୁତ ହୁଏ। ତଦନୁରୂପ କ୍ଷେତ୍ରୀୟ ଦଳର ମାହାତ୍ମ୍ୟ ବୃଦ୍ଧି ପାଇଲେ, ରାଷ୍ଟ୍ର ଦୁର୍ବଳ ହୁଏନା, ବରଂ ତଦ୍ୱାରା ତାର ପୁଂଜି ବଢ଼େ, ଗଣତାନ୍ତ୍ରିକ ଭିତ୍ତିଭୂମି ବଳ ପାଏ। କେତେଗୋଟି ଦୁର୍ବଳ, ଶକ୍ତିହୀନ, ପ୍ରତିନିଧିତ୍ୱ–ହୀନ କ୍ଷେତ୍ରର ସମଷ୍ଟୀରେ ଏକ ଶକ୍ତିଶାଳୀ କେଂଦ୍ରର ପରିକଳ୍ପନା କେବଳ ଏକଛତ୍ରବାଦୀ ଶାସନ ହିଁ କରିପାରେ। ପ୍ରଶ୍ନଉଠେ, କ୍ଷେତ୍ରୀୟଦଳ ଯଦି

Digitized by srujanika@gmail.com

କ୍ଷେତ୍ରର ପ୍ରକୃତ ସ୍ୱର ନୁହନ୍ତି, ତାଂକ ପ୍ରାଧାନ୍ୟ ବୃଦ୍ଧିରେ ଗଣତନ୍ତ୍ର ତା'ର ଜୀବନିକା ଶକ୍ତି ପାଇବ କେମିତି ? ଅବଶ୍ୟ ପ୍ରଶ୍ନଟି ରାଷ୍ଟ୍ରୀୟଦଳ ପାଇଁ ମଧ ସମମାତ୍ରାରେ ପ୍ରଯୁଜ୍ୟ !

ଭାରତବର୍ଷ ହେଲା ଏକ ବିଶେଷ ସାମାଜିକ, ସାଂସ୍କୃତିକ ତଥା ଭୌଗୋଳିକ ପରଂପରାର ନାମ। ରାଜନୈତିକ ରାଷ୍ଟ୍ରୀୟତା ଠାରୁ ଏହି ପରଂପରା ପୁରୁଣା ଓ ଭିନ୍ନ। ରାଜନୈତିକ ରାଷ୍ଟ୍ରୀୟତା ଉନବିଂଶ ଶତାବ୍ଦୀର ଏକ ମଣିଷଗଢ଼ା ଆଦର୍ଶ। ଆଧୁନିକତା ଓ ସମୟର ରୂପାନ୍ତରଣ ସାଂଗରେ ତାର ଚରିତ୍ର ବଦଳିବ। ସାଂସ୍କୃତିକ ଓ ଭୌଗୋଳିକ ପରଂପରାକୁ ଅବଜ୍ଞା କରି ତାହା ପୁଷ୍ଟ ହେବ। ଦରକାର ପଡ଼ିଲେ ରାଜନୀତିର ଚାପରେ ଉକ୍ତ ପରଂପରାକୁ ନଜର ଅଂଦାଜ କରି ତାହା ସ୍ୱାଭାବିକ ସଂଗୀକୁ ଶତ୍ରୁଘୋଷଣା ମଧ କରିପାରେ। ଅନ୍ୟପକ୍ଷରେ, ଭୌଗୋଳିକ ଓ ସାଂସ୍କୃତିକ ରାଷ୍ଟ୍ରୀୟତା ରାଜନୈତିକ ରାଷ୍ଟ୍ରୀୟତା ପରି ଅସ୍ଥିର ନୁହେଁ। ସେ ହଜାର ହଜାର ବର୍ଷର ପୁରୁଣା ପରଂପରା। ନଦୀ, ନାଳ, ପର୍ବ—ପର୍ବାଣୀ, ଦେବା—ଦେବୀ, ସ୍ଥାନ—ତୀର୍ଥସ୍ଥାନ, ଗଛ—ମାଛ, ଜଳବାୟୁ, ପରିବେଶ ଓ ସର୍ବୋପରି ମଣିଷ— ସମସ୍ତେ ତା'ର ଗୋଟାଏ ଲେଖା ସ୍ଥାୟୀ ଉପାଦାନ। ତହିଁରୁ କାହାର ବିଛୁଡ଼ିବା ସହଜ ନୁହେଁ। କେବଳ ରାଜନୈତିକ ନିଷ୍ପତ୍ତିର ପରିଣତି ସ୍ୱରୂପ ଆଜି ଯେଉଁମାନେ ବିଚ୍ଛିନ୍ନ, ତାଂକ ଭିତରେ 'ଶତ୍ରୁତା', ଆଗାମୀ କାଲି ପୁଣି ଯେ ସେମାନେ ପରଂପରାର ଆଧାରରେ ମିଳିତ ନ ହେବେ— ତାହା କହିବା କଠିନ। ରାଜନୈତିକ ଘଟଣାବଳୀର ପ୍ରଭାବରେ ଆମେ ଯଦି ବର୍ତ୍ତମାନ ସର୍ବସ୍ୱ ନ ହୋଇ ପରଂପରାରେ ଭରସା ରଖନ୍ତି, ଭାରତର ମୂଳଦୁଆ ଦୃଢ଼, ବଳିଷ୍ଠ ଯୋଜନ ଯୋଜନ ବର୍ଷର ଐତିହ୍ୟ ଗୋଟାଏ ଦୁଇଟି ରାଜନୈତିକ ବିଭାଜନ ଓ ଦୁଇ—ଚାରୋଟି ସାଧାରଣ ନିର୍ବାଚନର ଚାପରେ ନଷ୍ଟ ହୋଇ ନ ପାରେ। ସଭ୍ୟତାରେ ଉପର ଠାଉରିଆ ପରିବର୍ତ୍ତନ ଆଣିପାରେ ରାଜନୈତିକ ନିଷ୍ପତ୍ତି, ସଂସ୍କୃତି ଓ ଭୂଗୋଳର ଅନ୍ତଃଗତିକୁ ଆଂଦୋଳିତ କରିବା ପାଇଁ ତାକତ, ପରାକ୍ରମ ତାର କାହିଁ ?

ପୁଣି, ତାତ୍କାଳିକ ସଫଳତାର ଆଶାରେ ରାଜନୈତିକ ଦଳ ଯାହା ନିଷ୍ପତ୍ତି ନିଅନ୍ତୁ ପଛେ, ବର୍ତ୍ତମାନ ସ୍ଥିତିରେ ବିଶ୍ୱରାଜନୀତିର ସ୍ୱରୂପ ଯାହା, ତହିଁରେ ସର୍ବଭାରତୀୟ ରାଜନୈତିକ ଦୃଷ୍ଟିକୋଣ ସବୁଦଳ ପାଇଁ ଏକ ବିଶେଷ ଆବଶ୍ୟକତା। ଆସାମ ଗଣପରିଷଦ ଯେତେ ଆଂଚଳିକ ଏବଂ, ତାହା ଭାରତୀୟତା ବିରୋଧୀ ବୋଲି ଆଖ୍ୟା ପାଉ ପଛେ; କ୍ଷମତାକୁ ଆସିଲା ପରେ ଅରାଜକ; ତଥା କ୍ଷେତ୍ରୀୟ ଆଂଦୋଳନରେ ଲିପ୍ତ ଅଲଫା ପ୍ରତି ନା ସେ ନମନୀୟ ହୋଇପାରିଛି, ନା ବିଦେଶୀ ଅନୁପ୍ରବେଶକାରୀଂକୁ ଗଳାଧକ୍କା ଦେଇ ରାଜ୍ୟାନ୍ତର କରି ଦେଇପାରିଛି ! ବରଂ ଅଲଫା ପ୍ରତି ଏହା ପୂର୍ବ ସରକାର ତୁଳନାରେ ଅଧିକ ରୁକ୍ଷ ବୋଲି ଅଲଫା ଅଭିଯୋଗ କରେ, ପ୍ରଫୁଲ୍ଲ ମହନ୍ତଂକୁ ହତ୍ୟା କରିବାର ଚକ୍ରାନ୍ତ କରେ। କେବଳ ଆସାମ ଗଣପରିଷଦ କାହିଁକି, ଅକାଳିଦଳ, ନେସନାଲ କନଫେରେନ୍ସ ଆଦି ପ୍ରାୟ ସବୁ କ୍ଷେତ୍ରୀୟ ଦଳ ଅଣ—ସାଂବିଧାନିକ ଓ

Digitized by srujanika@gmail.com

ଅରାଜକ ଢଂଗରେ ଆୟୋଜିତ କ୍ଷେତ୍ରୀୟତା ଆଂଦୋଳନ ଓ ସର୍ବଭାରତୀୟ ଦୃଷ୍ଟିକୋଣ ମଧ୍ୟରେ ଗୋଟାଏ ଗୋଟାଏ ଯୋଗସୂତ୍ର, ଲୋକଙ୍କ ମତ—ଅଭିମତକୁ ସାଂବିଧାନିକ ପରିସୀମା ଭିତରେ ଥୋଇବାର ପ୍ରୟାସ। ତେଣୁ ଅକାଳିଦଳ ଯେତେ ପରିମାଣରେ କେଂଦ୍ରୀୟ ଦଳ ଗୁଡ଼ିକର ଶତ୍ରୁ, ତତୋଃଧିକ ପରିମାଣରେ 'ଉଗ୍ରବାଦୀ'ଙ୍କର ଚିନ୍ତାର କାରଣ। ତା'ର ରାଜନୈତିକ ମହତ୍ବ ବଢ଼ିଲେ, କେଂଦ୍ରୀୟ ଦଳ ସାଂଗରେ ସଶସ୍ତ୍ର ଉଗ୍ରବାଦୀଂକର ପ୍ରଭାବ ମଧ୍ୟ ଊଣାହୁଏ।

ଠିକ ସେହିଭଳି, ତାତ୍କାଳିକ ସଫଳତାର ଆଶାରେ ଅନେକ ସମୟରେ ତଥାକଥିତ ରାଷ୍ଟ୍ରୀୟଦଳ ମଧ୍ୟ କ୍ଷେତ୍ରୀୟ ଦଳଠାରୁ ଅଧିକ 'ଆଂଚଳିକ' ଓ 'ବିଚ୍ଛିନ୍ନତାବାଦୀ' ମତ ପୋଷଣ କରିବାର ଦେଖାଯାଏ। ଉଦାହରଣ ସ୍ୱରୂପ କେତେବର୍ଷ ତଳର ବିଜୁପଟ୍ଟନାୟକଙ୍କ ଘୋଷଣାକୁ—ଓଡ଼ିଶାକୁ ଭାରତରୁ ଅଲଗା କରାଯିବ—ନିଆଯାଇ ପାରେ।

ଲୋକ ନିଜ ଦୈନଂଦିନ ଅନୁଭୂତିରୁ ଜାଣନ୍ତି ଯେ, ବ୍ୟକ୍ତିର ଅସ୍ମିତା ବା ପରିଚୟ ପ୍ରଥମେ କ୍ଷେତ୍ରକୁ ନେଇ, ତେଣିକି ରାଷ୍ଟ୍ର। କ୍ଷେତ୍ର ବ୍ୟକ୍ତି ପାଇଁ ଦେଶ। ତେଣୁ ଓଡ଼ିଶାରେ କାମକରୁଥିବା ବିହାରୀ ବ୍ୟକ୍ତି ଯେତେବେଳେ କିଛିଦିନ ପାଇଁ ଗାଁକୁ ଫେରେ, କହେ, ଦେଶକୁ ଯାଉଛି। ତା'କ୍ଷେତ, ତା ବାଡ଼ି, ତା ଲୋକ, ତା ବଂଧୁ, ତା ପରିଜନ, ତା ନଦୀ, ତା ନାଳ— ଏ ସବୁର ଏକ ସମୂହ ରୂପ ହେଲା ତା ଦେଶର ସଂଜ୍ଞା। ଭାରତବର୍ଷ ମଧ୍ୟରେ ସେହିଭଳି ଶହ ଶହ ଦେଶ— ପରସ୍ପର ମଧ୍ୟରେ ବୈରଭାବ ନାହିଁ, ଛକାପଂଝା ନାହିଁ, ସର୍ବଭାରତୀୟ ସ୍ୱରୂପ ସାଂଗରେ ସେମାନଂକର ପ୍ରତିଯୋଗିତା ବି ନାହିଁ। ଏପରି କି ଗୋଟିଏ ପ୍ରଦେଶ ମଧ୍ୟରେ ଥାଇ ମଧ୍ୟ ପଡ଼ୋଶୀ ପ୍ରଦେଶର ସନ୍ନିକଟ ଭୌଗୋଳିକ ଅବସ୍ଥାନରେ ଭାଷା, ସଂସ୍କୃତି, ଖାଦ୍ୟପେୟ ଓ ପୋଷାକରେ ଭିନ୍ନତା ଦେଖାଦେଇଥାଏ। ଯେପରି ଆନ୍ଧ୍ର ସନ୍ନିକଟ ହୋଇ ଗଞ୍ଜାମ ଜିଲ୍ଲାର ଭାଷା ଓ ଖାଦ୍ୟରୁଚି; ଛତିଶଗଡ଼ ସଂସ୍ପର୍ଶରେ ବରଗଡ଼; ବଙ୍ଗପ୍ରଦେଶ ପ୍ରଭାବରେ ବାଲେଶ୍ୱର।

କ୍ଷେତ୍ର, ରାଷ୍ଟ୍ର ବା କେଂଦ୍ର ଅପେକ୍ଷା ଆଗ। ଏହି କାରଣରୁ ସ୍ୱାଧୀନୋତ୍ତର ଭାରତରେ କେବଳ ଉତ୍ତର ପ୍ରଦେଶରୁ ସାତଜଣ ପ୍ରଧାନମନ୍ତ୍ରୀ ହେବାରେ ଲୋକ ଆପତ୍ତି ଉଠାନ୍ତି। କେଂଦ୍ରମନ୍ତ୍ରୀ, ପ୍ରଧାନମନ୍ତ୍ରୀ ହେଲା ପରେ ବ୍ୟକ୍ତି ପାଇଁ ଯଦି କ୍ଷେତ୍ର ବା ଅଂଚଳ ରାଷ୍ଟ୍ର ତୁଳନାରେ ଗୌଣ ହୋଇ ପଡୁଥାନ୍ତା, ତେବେ ଆପତ୍ତିର ଆଧାର ରହନ୍ତା ନାହିଁ। ରାମବିଳାସ ପାସୱାନ ରେଳମନ୍ତ୍ରୀ ହେଲା ପରେ ହାଜିପୁରରେ ରେଳବାଇଯାନ ପ୍ରତିଷ୍ଠା କରି ପ୍ରମାଣ କରି ଦିଅନ୍ତି ଯେ, ପ୍ରଥମେ ସେ ହାଜିପୁରର ଲୋକପ୍ରତିନିଧି, ତେଣିକି କେଂଦ୍ରର ମନ୍ତ୍ରୀ, ରାଷ୍ଟ୍ରୀୟ ନେତା।

ଦିଲ୍ଲୀରେ ଭିନ୍ନ ଭିନ୍ନ ଦଳର କେତେଜଣ 'ରାଷ୍ଟ୍ରୀୟ' ନେତାଂକୁ ନିକଟରୁ ଦେଖିଲେ ମନେହୁଏ ଯେ, ରାଷ୍ଟ୍ର ତ ଦୂର, ରାଜ୍ୟର କ୍ଷେତ୍ରୀୟ ରାଜନୀତି ବି ତାଂକୁ ସୁହାଏ ନାହିଁ। ନିଜ ନିର୍ବାଚନ କ୍ଷେତ୍ର, ତହିଁରେ ବି ଜାତି ଏବଂ ତା ଭିତରେ

Digitized by srujanika@gmail.com

ପୁଣି ଲାଭକ୍ଷତି ବ୍ୟତୀତ ଅଲଗା କିଛି ଚିନ୍ତା ନ ଥାଏ ତାଂକର। ପରସ୍ପର ପ୍ରତି ବିକ୍ଷୋଦଗାର ଅନେକଂକର ମୁଖ୍ୟ ଚର୍ଚ୍ଚାର ବିଷୟ। କୋର୍ଟରେ ପେଶକଲାଭଳି ପ୍ରମାଣ, ଛାପାବିବୃତି ଅଥବା ଫଟୋର ଯଦିଓ ଆମ୍ଭପାଖରେ ଅଭାବ– ଏ ସବୁ ହେଲା ସାଧାରଣ ଘଟଣା। ତେବେ ରାଷ୍ଟ୍ରୀୟତା ଓ କ୍ଷେତ୍ରୀୟତା ମଧ୍ୟରେ ଦୂରତା କେତେ ?

ଆଲୋଚନାରୁ ଗୋଟାଏ କଥା ସ୍ପଷ୍ଟ ଯେ, ଆଂଚଳିକ ଦଳଗୁଡ଼ିକ ପାଇଁ ସାଂବିଧାନିକ ପରିସୀମା, ସର୍ବଭାରତୀୟ ଦୃଷ୍ଟିକୋଣ ଯେମିତି ଏକ ରାଜନୈତିକ ପ୍ରୟୋଜନ, ସବୁ ଦଳ ପାଇଁ– ସେ କ୍ଷେତ୍ରୀୟ ହୁଅନ୍ତୁ ବା ରାଷ୍ଟ୍ରୀୟ– କ୍ଷେତ୍ରୀୟତା ଏକ ବ୍ୟବହାରିକ ଆବଶ୍ୟକତା। କାହାରି ପାଇଁ ସେ ଗୌଣ ନୁହେଁ। କେହି ତା ପ୍ରଭାବରୁ ମୁକ୍ତ ନୁହନ୍ତି। ପାର୍ଥକ୍ୟ କେବଳ ଡିଗ୍ରୀରେ। କ୍ଷେତ୍ରର ନେତା ରାଷ୍ଟ୍ର ସଂଭାଳିଲେ, ପ୍ରକାରାନ୍ତରେ ଉକ୍ତ କ୍ଷେତ୍ରର ବର୍ଦ୍ଧିତ ସ୍ୱରୂପକୁ ହିଁ ଆମେ ରାଷ୍ଟ୍ର ବୋଲି କୁହାହେଉଁ। ଏହି କାରଣରୁ ଯେତେବେଳେ ଉତ୍ତରପ୍ରଦେଶର ସର୍ବମୋଟ ୧୨ଜଣରୁ ୮ ଜଣ ପ୍ରଧାନମନ୍ତ୍ରୀ ହୁଅନ୍ତି, ସତୁରି ପ୍ରତିଶତ କ୍ଷମତା ତାଂକ ଲୋକଂକ ହାତରେ ରହେ। ଉତ୍ତର ପ୍ରଦେଶର ଭାଷା, ସଂସ୍କୃତି, ରାଜନୀତି, ଇତିହାସ, ଆଦି 'ରାଷ୍ଟ୍ରୀୟ' ଭାଷା ଇତିହାସ ବୋଲି ଗଣା ହୁଅନ୍ତି। ବାକୀମାନେ ଆଂଚଳିକ ଭାଷା ସ୍ତରରେ ରହିଯାନ୍ତି। ଉତ୍ତରଭାରତର ଇତିହାସ ଭାରତର ଇତିହାସ ହୁଏ, ଦକ୍ଷିଣଭାରତର ଇତିହାସ ଅପଢ଼ା ରହିଯାଏ। ଏଭଳି ପ୍ରାୟୋଜିତ 'ରାଷ୍ଟ୍ରୀୟତା' ବିରୁଦ୍ଧରେ ଗଢ଼ି ଉଠୁଥିବା ପ୍ରତିବାଦକୁ, ତେଣୁ, ଭାରତୀୟତା ବିରୋଧୀ ନ କହି ଉତ୍ତର ପ୍ରଦେଶ ବା ବେଶି ହେଲେ ଉତ୍ତରଭାରତୀୟ ପ୍ରଭୁତ୍ୱର ବିରୋଧୀ ବିଚାରିଲେ ବିଶେଷ ଅଯୌକ୍ତିକ ହେବ ନାହିଁ।

ଉତ୍ତର ପ୍ରଦେଶ ହେଲା ଏକ ନମୁନା, ଉଦାହରଣ ମାତ୍ର। ପ୍ରଭୁତ୍ୱ ଆଉ କାହାର ବି ହୋଇପାରେ, ତାର ପ୍ରତିବାଦୀ ଅନ୍ୟ କୌଣସି 'ଆଂଚଳିକତା' ମଧ୍ୟ ହୋଇପାରେ, ପ୍ରତିବାଦୀ ନିଜ ସ୍ତରରେ ଅନ୍ୟ କାହାରି ଉପରେ ବି ପ୍ରଭୁତ୍ୱ ଜାହିର କରୁଥାଇ ପାରନ୍ତି। ଏ ସବୁ ସତ୍ତ୍ୱେ ଆଂଚଳିକତାକୁ ନେଇ ଯେଉଁ ପ୍ରଶ୍ନ, ତାର ଗୁରୁତ୍ୱ ଊଣାହେବନାହିଁ। ଗୋଟାଏ ଆଂଚଳିକତା ଅନ୍ୟଠାରୁ 'ବଡ଼', ଅନ୍ୟର ଅନୁକରଣୀୟ ବୋଲି ବାହୁସ୍ଫୋଟ ମାରିଲେ, କ୍ଷେତ୍ରଗୁଡ଼ିକରେ ପ୍ରତିବାଦର ସ୍ୱର ତୀବ୍ର ହେବ। ଫଳ ସ୍ୱରୂପ, ରାଜନୈତିକ ନିଷ୍ପତ୍ତି ଭାବରେ ପୁଣି ଯେ ଭାରତ ବିଭାଜିତନହେବ– ତାହା କହିହେବ ନାହିଁ। କିନ୍ତୁ ତା'ସତ୍ତ୍ୱେ ଭାରତର ସାଂସ୍କୃତିକ, ସାମାଜିକ ଓ ଭୌଗୋଳିକ ପରଂପରାର ଅନ୍ତଃଗତି ଅଭିନ୍ନ ଓ ଅତୁଟ ରହିବ। ଉପନିବେଶବାଦୀଂକ ହାତରେ ଖଣ୍ଡ ଖଣ୍ଡ ହେଲା ପରେ ବି ଆଫ୍ରିକା ଆଜି ଗୋଟାଏ ସଂସ୍କୃତି ଓ ଭୂଗୋଳ ଭାବରେ ସର୍ବତ୍ର ପରିଚିତ। ଦ୍ୱିତୀୟ ମହାଯୁଦ୍ଧ ପରେ ହିଟଲରର ଜର୍ମାନୀରୁ ଖଣ୍ଡେ ସୋଭିଏତ ରୁଷିଆ ମାଡ଼ିବସି ପୂର୍ବଜର୍ମାନୀ ରାଷ୍ଟ୍ର ଗଢ଼ିଲା, ମିତ୍ରଶକ୍ତି ଅନ୍ୟ ଖଣ୍ଡକରେ ପଶ୍ଚିମ ଜର୍ମାନୀ ଗଢ଼ିଲେ ; ସୋଭିଏତ ରୁଷିଆ ରହିଥିବା ଯାଏଁ ଦୁଇ ଜର୍ମାନୀ ମଧ୍ୟରେ ଅହିନକୁଳ ସଂପର୍କ ସୃଷ୍ଟି କରାଗଲା। ସୋଭିଏତ ରୁଷିଆର ପତନ ପରେ

Digitized by srujanika@gmail.com

ପୁଣି ଦୁହେଁ ଏକ ହୋଇଗଲେ। ଏହାଭଳି କାହାଣୀ ଭିଏତନାମର। ଆରବର ଯେଉଁ ରାଷ୍ଟ୍ରମାନେ ଆମେରିକାର ପ୍ରରୋଚନାରେ ପଡ଼ି ୧୯୯୦ରେ ଜଣେ ଅନ୍ୟ ବିରୁଦ୍ଧରେ ଅସ୍ତ୍ରଚାଳନା କରିଥିଲେ, ଆଜି ଇରାକ ଉପରେ ଆମେରିକାର ଧମକିକୁ ଅବଜ୍ଞା କରୁଛନ୍ତି। ଇରାକର ପକ୍ଷ ନେଉଛନ୍ତି। ଏହାର ଅର୍ଥ ନୁହେଁ ଯେ ତାଂକ ନିଜ ନିଜ ଭିତରେ କ୍ଷେତ୍ରୀୟତା ନାହିଁ, ବିବିଧତା ନାହିଁ। ଅନୈକ୍ୟ ଅଛି, ଐକ୍ୟ ବି ଅଛି।

ଭାରତର ବସ୍ତୁଗତ–ସ୍ଥିତି ମଧ୍ୟ ଠିକ ଏହା ଧରଣର। ରାଷ୍ଟ୍ର ଓ କ୍ଷେତ୍ରୀୟତା– ଉଭୟଂକର ଏଠି ଆଧାର ରହିଛି। ତାଠାରୁ ବଡ଼ କଥା ଉଭୟେ ପରିପୂରକ, ତେଣୁ ବିବିଧତା ମଧ୍ୟରେ ଏକତାର ଯୁକ୍ତିକୁ ସବୁସ୍ତରରେ ପ୍ରୋତ୍ସାହନ ମିଳେ। ମାତ୍ର ବର୍ତ୍ତମାନ ସ୍ଥିତିରେ କାୟମନୋବାକ୍ୟରେ ବିବିଧତାକୁ ସ୍ୱୀକାର କରିଯିବା ସେତେ ସହଜ ନୁହେଁ। କାରଣ ତାକୁ ଗ୍ରହଣ କରିବା ଅର୍ଥ ଅନ୍ୟ କ୍ଷେତ୍ରୀୟ ଭାଷା, ସାହିତ୍ୟ, ସଂସ୍କୃତି ଆଦିକୁ ନିଜର ସମତୁଲ ବିଚାରିବା। ଆଜିର ପ୍ରତିଯୋଗିତାମୟ ଦୁନିଆଁରେ ତାହା କି କମ ଆୟାସ ସାଧ୍ୟ ? ଖାଦ୍ୟପେୟ, ରହଣିସହଣି, କଥାବାର୍ତ୍ତା, ପାଖପଡ଼ୋଶୀ– ସବୁଥିରେ ଓ ସଭିଂକଠାରେ ଆମେ ଯେତେବେଳେ ପ୍ରତିଯୋଗିତାର ଆବଶ୍ୟକତା ଅନୁଭବ କରୁଁ, ଭାଷା–ସାହିତ୍ୟ–ସଂସ୍କୃତିରେ ବି ତାର ପ୍ରତିଫଳନ ଦେଖା ଯିବା ସ୍ୱାଭାବିକ ପରିଣାମସ୍ୱରୂପ, କାରପଟଦାର ମିଳିଲେ ଗୋଟାଏ କ୍ଷେତ୍ରୀୟତା ଅନ୍ୟ ଉପରେ ପ୍ରଭୁତ୍ୱ ଦେଖାଏ, 'ବଡ଼' ବୋଲି ହେକଡ଼ାମି ଦେଖାଏ ; ଅନ୍ୟମାନେ 'ସାନସଂସ୍କୃତି' 'ଅନାର୍ଯ୍ୟ' ଭାଷୀ ହୁଅନ୍ତି। ଦକ୍ଷିଣର ଭାଷା 'ଗୋଡ଼ି ପଥରର ଗୁଂଜରଣ' ପରି ଅବୁଝା ହୁଏ ; ଉତ୍ତରରେ ଭାଷା 'ଭାରତର ଭାଷା', ଅନ୍ୟ ପାଇଁ ଅନୁକରଣୀୟ' ହୁଏ। ପ୍ରତିଯୋଗିତା ନିମିତ୍ତ ଯେହେତୁ 'ବଡ଼', 'ସାନ' ଗୋଟାଏ ଲୋଖା ଆବଶ୍ୟକ ଉପାଦାନ, କ୍ଷେତ୍ର–କ୍ଷେତ୍ର ମଧ୍ୟରେ ତଥା ରାଷ୍ଟ୍ର–କ୍ଷେତ୍ର ମଧ୍ୟରେ ବାକବିତଣ୍ଡା ସୃଷ୍ଟି ହେବା ସ୍ୱାଭାବିକ। ଦେବଗୌଡ଼ାଂକ ମିଳିତ ସାମୁଖ୍ୟ ସରକାର ବା ବିଜେପି ମେଣ୍ଟ ଭଳି ଉପରଠାଉରିଆ ଭାବେ କ୍ଷେତ୍ରୀୟ ଶକ୍ତିମାନେ ଯଦି ଯୋଟ ହୁଅନ୍ତି, ନା ସେଥିରେ ପ୍ରତିଯୋଗିତାର ଅନ୍ତହେବ, ନା କ୍ଷେତ୍ରଗୁଡ଼ିକ ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇ ପାରିବ ? ଜଣେ ଅପରର ଅସ୍ମିତାକୁ ସ୍ୱୀକୃତି ଓ ସମ୍ମାନ ନ ଦେବା ଯାଏ ବିବିଧତା ପୂର୍ଣ୍ଣ ରାଷ୍ଟ୍ରର ଏକତା ରକ୍ଷା ଯେମିତି କଷ୍ଟକର, ଏକ ସୁସଂଗଠିତ ରାଷ୍ଟ୍ରୀୟ ରାଜନୈତିକ ଶକ୍ତି (ଦଳ)ର ଉଦ୍‌ଭବ ବି ସେମିତି ଅସଂଭବ। ଅନ୍ୟଥା ସଂକୀର୍ଣ୍ଣମନା, ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ବା ମୁଷ୍ଟିମେୟ ବ୍ୟକ୍ତି ପ୍ରଭୁତ୍ୱର ବିରୋଧ ଆଳରେ କ୍ଷେତ୍ରୀୟତାର ପ୍ରତିନିଧିତ୍ୱ କରି ନିଜେ ହିଁ ପ୍ରଭୁତ୍ୱର ଅଧିକାରୀ ହୋଇ ନିଜର ସ୍ୱାର୍ଥ ସାଧନ କରିବା ଓ ଜନ ସାଧାରଣଙ୍କୁ ପାଶୋରି ଯିବା ତଥା ସମାଜ ଓ ସଂସ୍କୃତିର ହତାଦର କରିବା ହିଁ ସାର ହେବ। (୧୯୯୮)

◆◆

Digitized by srujanika@gmail.com

# ଅତୀତ ଓ ବର୍ତ୍ତମାନ

ରଚନାର ବିଷୟବସ୍ତୁ ଯାହାହେଉ ନା କାହିଁକି, ରଚନାକାର ଉପରେ ତା ସମୟ ବା ସମସାମୟିକ ଯୁଗର ଏକ ପ୍ରଭାବ ରହିଥାଏ। ସମୟର ଅଂକୁଶକୁ ପ୍ରତ୍ୟାଖ୍ୟାନ ବା ଅବଜ୍ଞା କରି ସୃଜନଶୀଳତା ଅସଂଭବ ନ ହେଲେ ବି କଷ୍ଟକର। ସର୍ଜନା ଇତିହାସ ସଂବଂଧୀୟ ହେଉ ବା କଳା ବା ବିଜ୍ଞାନ, ପ୍ରାୟ ସବୁ କ୍ଷେତ୍ରରେ ତାହା ବର୍ତ୍ତମାନ ବା ସମସାମୟିକ ଦ୍ୱାରା ଖୁବ ପ୍ରଭାବିତ। ଉନବିଂଶ ଶତାବ୍ଦୀଠାରୁ ଆରଂଭ କରି ଏବେଯାଏଁ ଅର୍ଥାତ୍ ବିଂଶ ଶତାବ୍ଦୀର ଶେଷଯାଏଁ ଜାତୀୟତା ତତ୍ତ୍ୱ ବିଶ୍ୱସମାଜକୁ ଆଂଦୋଳିତ କରିଛି। ତେଣୁ ମୌର୍ଯ୍ୟ ଯୁଗର ଚାଣକ୍ୟ ଏବଂ ମହାଭାରତର ଭୀଷ୍ମ ପିତାମହଂକ ଚରିତ୍ର ବିଶ୍ଳେଷଣ ବେଳେ ଆମେ ସେମାନଂକୁ, ଗାଂଧି, ନେହେରୁ ଭଳି, ଜାତୀୟତାବାଦୀ ରୂପେ ଚିତ୍ରିତ କରୁଁ। ଏବେ ତ ଅନେକଂକ ମତରେ ରୁଷ ଏବଂ ଚୀନ ବିପ୍ଳବ ବି ଗୋଟାଏ ଗୋଟାଏ ଜାତୀୟତାବାଦୀ ଆଂଦୋଳନ। ସେଥିପାଇଁ ବୃହତ୍ତର ରୁଷ ସାମ୍ରାଜ୍ୟ ଗଠନରେ ବ୍ରତୀ ହୋଇଥିବା ଜାର ପିଟରଂକୁ ସାମ୍ୟବାଦୀମାନେ 'ମହାନ' (The Great)ବୋଲି କହନ୍ତି ଏବଂ ଜାର ନିକୋଲାସଂକୁ ଫାଶୀ ଦିଅନ୍ତି। ଚୀନର ତବ୍ବତ ଅଧିକାର ପଛରେ ସାମ୍ୟବାଦୀ 'ମୁକ୍ତି' ଅପେକ୍ଷା ବେଶି ଦେଖାପଡ଼େ ରାଷ୍ଟ୍ରବାଦୀ 'ଶକ୍ତି'ର। ଅତୀତର ଅଧ୍ୟୟନଠାରୁ ଆରଂଭ କରି ସାମ୍ୟବାଦ ଯାଏଁ– ସବୁଥିରେ ଜାତୀୟତାବାଦର ଏ ଯେଉଁ ଅଂକୁଶ ତାକୁ ଆମେ ଯୁଗର ପ୍ରଭାବ ବୋଲି କହୁଛୁଁ।

ଉନବିଂଶ ଶତାବ୍ଦୀରେ ୟୁରୋପରେ ଶିଳ୍ପ ବିପ୍ଳବ ସଂଘଟିତ ହେବା ଦିନରୁ ସାମାଜିକ ଉତ୍‌ଥାନ, ଆଧୁନିକତା ଓ ବିକାଶର ବିଶେଷ ଅର୍ଥ ହେଲା ଶିଳ୍ପ ସ୍ଥାପନ, କୃଷି ଉତ୍ପାଦନ ବୃଦ୍ଧି; ଜୈବିକ ସାରର ବ୍ୟବହାରକୁ ଏକ ଅପୂର୍ବ ବରଦାନ ରୂପେ ଆମେ ମଣିଲୁ। ରାଜନୈତିକ ଉନ୍ନତି ଅର୍ଥ ଧରି ନିଆଗଲା ଯେ ଭୋଟ ଦେବାର ଅଧିକାର ମିଳିବ, ପାର୍ଲାମେଣ୍ଟ ରହିଥିବ, ସଂବିଧାନ ଲିଖିତ ଆକାରରେ ଥିବ, ଇତ୍ୟାଦି, ଇତ୍ୟାଦି। ଜାତୀୟତାବାଦ– ବିକାଶର ଏ ଯେଉଁ ନିର୍ଦ୍ଧାରିତ ମାନଦଣ୍ଡ– ତାର ଏକ ଉପାଦାନ। ଆମ କଳ୍ପନାର ଜାତୀୟତାବାଦୀ ଶିଳ୍ପ ବିକାଶ ଚାହେଁ, କୃଷି ଉତ୍ପାଦନ ବୃଦ୍ଧି ପାଇଁ ଅବିରାମ ଚେଷ୍ଟାକରେ, ସାମାଜିକ ସଂସ୍କାର ପାଇଁ ବ୍ରତୀ ହୁଏ ଏବଂ ରାଜନୈତିକ ଉନ୍ନତି କଳ୍ପେ ଭୋଟଦେବାର ଅଧିକାର ମାଗେ, ପ୍ରଶାସନଠାରୁ

Digitized by srujanika@gmail.com

ନ୍ୟାୟ ପାଳିକାକୁ ଅଲଗା କରିବାକୁ ଚେଷ୍ଟାକରେ. ଇତ୍ୟାଦି। ବିକାଶର ଏହି ସ୍ଥିରୀକୃତ ମାନଦଣ୍ଡକୁ ଆଧାର କରି ଆମ ବୈଜ୍ଞାନିକ ଉଦ୍ଭାବନ କଲା, ସାହିତ୍ୟିକ ସର୍ଜନା କଲା ଏବଂ ଇତିହାସକାର ଅତୀତକୁ ଅଧ୍ୟୟନ କଲା। ଫଳରେ ଯେଉଁ ସମାଜର ଉପରଲିଖିତ ଚରିତ୍ରସବୁ ନାହିଁ, ତାକୁ ହେୟ ଦୃଷ୍ଟିରେ ଆମେ ଦେଖିଲେ। ଯେଉଁ ସମାଜକୁ ମହାନ ସିଦ୍ଧ କରିବାର ଅଛି, ସେଠି ଏସବୁ ଗୁଣ ବିଦ୍ୟମାନ ବୋଲି ପ୍ରମାଣ କଲେ। ଏହି କାରଣରୁ ଖ୍ରୀଷ୍ଟପୂର୍ବ ଷଷ୍ଠ/ପଂଚମ ଶତକରେ ଲିଚ୍ଛବୀ, ବୈଶାଳୀ ଆଦି ରାଜ୍ୟରେ ଆଧୁନିକ କିସମର ଗଣରାଜ୍ୟ ବିକଶିତ ହୋଇଥିବାର ଆମେ କୁହାହେଉଁ, ରାମରାଜ୍ୟରେ ଗଣତନ୍ତ୍ର ତଥା ସମାନତା ପ୍ରତିଷ୍ଠା ହୋଇଥିବାର ଶୁଣୁ ଓ ପ୍ରଚାର କରୁ ତଥା ସେଇଟା ଗୋଟାଏ ସ୍ୱପ୍ନିଳ ସମ୍ଭାବନାର ଶିଖର ବୋଲି ଧରି ନେଉ। ଅସଲ ଉଦ୍ଦେଶ୍ୟ ହେଲା, ଏକ ନିର୍ଦ୍ଦିଷ୍ଟ ସମାଜକୁ ମହାନ ବା ଶ୍ରେଷ୍ଠ ରୂପେ ଚିତ୍ରିତ କରିବାର ଐତିହାସିକ ଆକାଂକ୍ଷା। ଏହି କାରଣରୁ ଇତିହାସ ଅତୀତର ନଗ୍ନ ବାସ୍ତବିକତା ହେବା ପରିବର୍ତ୍ତେ ଇତିହାସକାରଦ୍ୱାରା ବର୍ତ୍ତମାନର ତୂଳିରେ ଅଂକା ଯାଇଥିବା ଅତୀତର ଏକ କଳ୍ପିତ ଚିତ୍ର ହୁଏ। ସମୟ ବଦଳିଲେ ସେହି ଏକା ଅତୀତ ଭିନ୍ନ ଭିନ୍ନ ରୂପେ ବିଶ୍ଳେଷିତ ହେବା କିଛି ବଡ଼ କଥା ନୁହେଁ। ପୁଣି ଏକା ସମୟରେ ଦୁଇଜଣ ଅଲଗା ଅଲଗା ବିଚାରର ଇତିହାସକାର ଦୃଷ୍ଟିରେ ଏକ ନିର୍ଦ୍ଦିଷ୍ଟ ଅତୀତ ଅଲଗା ଅଲଗା ରୂପେ ପରଷା ଯିବାରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ।

ଆମ ସମୟର ଅନ୍ୟ ଏକ ପ୍ରଭାବଶାଳୀ ବୌଦ୍ଧିକ ଚେତନା ହେଲା ସାମ୍ୟବାଦ ମାର୍କ୍ସବାଦ। ସମାଜରେ ଶିଳ୍ପ ବିକଶିତ ହେବ, କୃଷି ଉତ୍ପାଦନ ବଢ଼ିବ, କିନ୍ତୁ ଲୋକ ସାଧାରଣଂକ ସମୂହ ସାର୍ଥକଳ୍ପେ ତାହା ଯଦି ଉଦ୍ଦିଷ୍ଟ ନୁହେଁ, ସାମାଜିକ ବିକାଶ ବୋଲି ତାକୁ କହିବେ କେମିତି? କେବଳ ହାତାପାଆନ୍ତା କେତେଜଣ ପୁଂଜିପତି, ଜମିଦାର, ଆଦି ଶିଳ୍ପୋଦ୍ୟୋଗକୁ କରଗତ କଲେ, ଚାଷଜମିର ମାଲିକ ବନିଲେ, ପ୍ରତିଷ୍ଠିତ ପାର୍ଲ୍ୟାମେଣ୍ଟ, ଶାସନକୁ ହାତବାରିସି କରିନେଲେ, ଲୋକଂକର ତହିଁରେ କି ଲାଭ? ଲୋକେ ଏ ଭଳି ବିକାଶ ନିମିତ୍ତ କାୟମନୋବାକ୍ୟରେ ଲାଗି ପଡ଼ିବେ ବା କେମିତି? ସେମାନେ ବ୍ୟବସ୍ଥା ପ୍ରତି ବିତସ୍ପୃହ ହେଲେ ଉତ୍ପାଦନ ବୃଦ୍ଧି ହେବ ବା କେମିତି? ସମାଜ ମାନେ କି କେତେଜଣ ଧନୀ ଜମିଦାର, ପୁଂଜିବାଦୀ, ଉଚ୍ଚଜାତିର ଚଳାକ ଲୋକ? ଗୋଟାଏ ସମୟର ଇତିହାସ ଗଢ଼ିବାରେ ଯଦି ବାବର, ଆକବର, ଅଶୋକ, ଚଂଦ୍ରଗୁପ୍ତଂକ କିଛି ଅବଦାନ ଅଛି, ସେହି ସମୟର ରାମାଗଉଡ଼ ଓ ଶାମା ତେଲିର ବି କିଛି ଅବଦାନ ଅଛି, କାରଣ ସଭିଂକୁ ମିଶାଇ ତ ସମାଜ। ତେବେ ସେମାନଂକୁ ବାଦ ଦେଇ କି କେବେ ଆମେ ଇତିହାସର ପୂର୍ଣ୍ଣରୂପ ଅଧ୍ୟୟନ କଲେ ବୋଲି କହି ପାରିବା?

Digitized by srujanika@gmail.com

ସାଧାରଣ ମଣିଷକୁ ଅଧ୍ୟୟନର କେନ୍ଦ୍ର କରି ଏ ଯେଉଁ ମାର୍କ୍ସବାଦୀ ଦୃଷ୍ଟିଭଂଗୀ– ଇତିହାସ, କଳା, ସାହିତ୍ୟ, ସବୁଥିରେ ତାର ପ୍ରଭାବ ରହିଲା। ପୁଂଜିବାଦୀ ଜୀବନ ଦୃଷ୍ଟି ସାଂଗରେ ଏହାର ସାମଂଜସ୍ୟ ଏହି ଯେ, ଉଭୟେ ଯେନତେଣ ପ୍ରକାରେଣ ଶିଳ୍ପିକରଣ, ଲାଭ, ଉତ୍ପାଦନ ବୃଦ୍ଧିର ପକ୍ଷଧର। ପୁଣି ଦୁହିଁଙ୍କ ମଧ୍ୟରେ ପାର୍ଥକ୍ୟ ଏହି ଯେ, ମାର୍କ୍ସବାଦୀ ଚାହେଁ ଶିଳ୍ପିକରଣ, ଆଦି, ଯୋଗୁଁ ସାଧାରଣ ମଣିଷ ଲାଭବାନ ହେଉ। ହେଲେ ପୁଂଜିବାଦୀର ଉଦ୍ଦେଶ୍ୟ ପ୍ରତିଯୋଗିତା, ତେଣିକି ଯିଏ ଯେତେ ଭାଗ ପାଇଲା କାହାରି କିଛି କହିବାର ନାହିଁ। ସେ ଯାହାହେଉ, ଅସଲ କଥା ହେଲା ଯେ, ମାର୍କ୍ସବାଦୀ ଜୀବନଦୃଷ୍ଟିର ପ୍ରଭାବ ଯୋଗୁଁ ଏଣିକି ବୁଦ୍ଧିଜୀବି ପାଇଁ ସମାଜର ପରିଭାଷା ବଦଳିଲା। କଳା, ସାହିତ୍ୟ, ଇତିହାସର ଅଧ୍ୟୟନ ଆଦି (ସାଧାରଣ) ମଣିଷକେନ୍ଦ୍ରିକ ହେଲେ। ସମାଜମାନେ ଆଉ ଅମୂର୍ତ୍ତ, ଅବାସ୍ତବ, ଅପରିକଳ୍ପ କିଛି ନୁହଁ, ବରଂ ମଣିଷର ଏକ ସମଷ୍ଟିଗତ ବିବିଧତା ଓ ବୈଚିତ୍ର୍ୟର ସମୂହ। ସେହି ସମୂହର ସୁଖ–ଦୁଃଖ ଚର୍ଚ୍ଚାର ମୁଖ୍ୟ ପ୍ରସଂଗ ହେଲା। ଏହି ଦୃଷ୍ଟିଭଂଗୀର ଆଧାରରେ ଆମେ ମଧ୍ୟଯୁଗୀୟ କବି କବିରଂକୁ ମହାନ ମଣିଲୁ କାରଣ ସେ ସାଧାରଣ ଲୋକଂକ ବୁଝିବା ଭଳି ଭାଷାରେ, ସାଧାରଣ ଲୋକର ଦୁଃଖ ଦରଦକୁ ଚିତ୍ରିତ କରି ଭକ୍ତିଭାବରେ ଦୋହା ଲେଖିଥିଲେ; ତୁଳସୀ ଦାସଂକୁ ହେୟ ମଣିଲୁ, କାରଣ ତାଂକ ଚିତ୍ରିତ ସୀତା ବିପ୍ଳବିନୀ ନୁହନ୍ତି, ସ୍ୱାମୀର ସୁଖରେ ସୁଖୀ, ଦୁଃଖରେ ଦୁଃଖି, ସାଧାରଣ ଚରିତ୍ରଟିଏ। ଉପେଂଦ୍ର ଭଂଜଂକୁ ବି ଗୁରୁତ୍ୱର ସହ ଅଧ୍ୟୟନ ବା ଚର୍ଚ୍ଚା କରିବେନି, କାରଣ ତାଂକ ରଚନାରେ ମାନବିକ ବେଦନା ନାହିଁ! ଚାରିଶହ ବର୍ଷ ତଳେ ତୁଳସୀଂକୁ ଯଦି ଜଣାଥାନ୍ତା, ଆଜି ଆମେ ତାଂକର ଏହି ଧରଣର ପୋଷ୍ଟମର୍ଟମ କରିବୁ, ସେତେବେଳେ କି ଏବକୁ ସୁହେଇଲା ଭଳି ସର୍ଜନା କରି ନ ଥାନ୍ତେ? ତାଂକ ନିଜ ସମୟରେ କବୀର ଦାଂସକ ସାହିତ୍ୟର କେତେ ଓଜନ ଥିଲା କେଜାଣି, ଆମ ସମୟରେ ସେ ତ ବହୁତ ବଢ଼ିଛି, କାରଣ ଆମେ ବର୍ତ୍ତମାନର ଚଷମାରେ ଅତୀତକୁ ଦେଖୁଛୁ, ଅତୀତ ଉପରେ ବର୍ତ୍ତମାନକୁ ଲଦି ଦେଉଛୁ।

ଏବେ କିଛି ବର୍ଷ ହେଲା ବୁଦ୍ଧିଜୀବିଂକ ଚେତନାରେ ନୂଆ ଏକ ପରିବର୍ତ୍ତନ ଦେଖା ଦେଇଛି। ଭଲ କଥା। ବିଚାରରେ ସ୍ଥିରତା ଓ ସ୍ଥାଣୁତ୍ୱ ଆସିଲେ ସମାଜ ସ୍ଥାଣୁ ହୋଇଯାଏ। ଏହି ନୂଆ ଦୃଷ୍ଟିଭଂଗୀକୁ ପରିବେଶବାଦ କହିଲେ ଅନୁଚିତ ହେବ ନାହିଁ। ଇତିହାସର ଛାତ୍ର ତାକୁ ଫ୍ରାନ୍ସରୁ ଆରଂଭ ହୋଇଥିବା 'ଏନାଲ ସ୍କୁଲ' ଜୀବନ ଦୃଷ୍ଟି ସାଂଗରେ ତୁଳନା କରିପାରିବେ। ପରିବେଶବାଦର ପ୍ରଭାବରେ ପ୍ରଭାବିତ ହୋଇ ଆମେ ବିଚାର କଲେ, ଦେଶ ସମାଜ, ବିଶ୍ୱ ମାନେ କି କେବଳ ଲୋକ ସମୂହ? ଗଛଲତା, ପାଣି, ପବନ, ଜୀବ ଜନ୍ତୁ, ମାଟି ଗୋଡ଼ି କି ବିଶ୍ୱର, ସମାଜର ଅଂଗ ନୁହନ୍ତି? ସେମାନଂକୁ ବାଦ ଦେଇ କି ଆମେ କେବେ ଇତିହାସର ପରିବର୍ତ୍ତନକୁ ଅଧ୍ୟୟନର

Digitized by srujanika@gmail.com

କରି ପାରିବା, ସାହିତ୍ୟ ସୃଷ୍ଟି କରିପାରିବା ? ଇତିହାସକୁ ମୋଡ଼ ଦେବାରେ ଏମାନଙ୍କର କିଛି ଅବଦାନ ନାହିଁ? କେବଳ କେତେଗୋଟି ରାଜନୈତିକ ଘଟଣାକୁ ଆଧାର କରି କି କେବେ ଆମେ ସାମାଜିକ ପରିବର୍ତ୍ତନ ହେଲା ବୋଲି କହିବା ? ଗଛ, ଲତା, ଜୀବ ଜନ୍ତୁ, ପାଣି ପବନ ଭିତରେ ଗୋଟାଏ ମୋଡ଼ ନ ଆସିଲେ କି ଆମେ ଯୋର ଦେଇ ସଭ୍ୟତାରେ, ସମାଜରେ ମୋଡ଼ ଆସିଲା ବୋଲି କହି ପାରିବା ? ବା ଅନ୍ୟ ଅର୍ଥରେ କହିଲେ, ଏ ସମସ୍ତଙ୍କୁ ବାଦ ଦେଇ କ'ଣ କେବଳ ମଣିଷର ଉନ୍ନତିକୁ ସମାଜର ଉନ୍ନତି ବୋଲି କହିହେବ ? ମୋଟ କଥା ହେଲା, ସମଗ୍ର ପରିବେଶ ଏବେ ଅଧ୍ୟୟନର କେନ୍ଦ୍ର ବା ବିଷୟବସ୍ତୁ ହେଲା। ଆଗ ବି ଅଧ୍ୟୟନ ହେଉଥିଲା, କିନ୍ତୁ ମଣିଷର ଲାଭକ୍ଷତିକୁ ଦୃଷ୍ଟିରେ ରଖି। ଏବେ ସ୍ୱତନ୍ତ୍ରଭାବେ ପରିବେଶକୁ ପ୍ରସଂଗ କରାଗଲା।

ସବୁ ଯାକ ବୁଦ୍ଧିଜୀବି ଯେ ଜୀବନ ଦୃଷ୍ଟିର ଏହି କ୍ରମବିକାଶକୁ ମାନିବେ ତାର କିଛି ମାନେ ନାହିଁ। ଆଜି ବି ଅନେକ ଅଛନ୍ତି ଯେଉଁମାନଙ୍କୁ ଗାଂଧି, ନେହେରୁ, କ୍ଲାଇବ, ମାଉଣ୍ଟ ବେଟେନ, ଆକବର ଆଦିଙ୍କ ବ୍ୟକ୍ତିଗତ ଜୀବନ ହିଁ ଇତିହାସର ସଂପୂର୍ଣ୍ଣ ଅଧ୍ୟାୟ ଭଳି ଲାଗୁଥିବ; ଆଉ ଅନେକ ବୁଦ୍ଧିଜୀବି ପରିବେଶବାଦର ନାଁ ବି ଶୁଣି ନ ଥିବେ। ଶୁଣିଲେ ବି ସେମାନେ ତାକୁ ଗ୍ରହଣ କରିବେ ବୋଲି କିଛି ମାନେ ନାହିଁ। ସମୟର ଦୌଡ଼ରେ ସେମାନେ ପଛରେ ରହିଗଲେ ବୋଲି କହିବା ଆମର ଉଦ୍ଦେଶ୍ୟ ନୁହେଁ। ତା ସତ୍ତ୍ୱେ ଆମ ଯୁକ୍ତିର ପ୍ରାସଂଗିକତା ଊଣା ହୁଏ ନାହିଁ। ଯେଉଁମାନେ ସମୟ ସାଂଗରେ ତାଳ ଦେଇ ଦୃଷ୍ଟିଭଂଗୀ ନିର୍ମାଣ କରିଛନ୍ତି, ତାଂକୁ ଫେସନର ଦାସ ବୋଲି ମଧ ଆମେ କହୁ ନାହୁଁ। ଉପସ୍ଥିତ ସାମାଜିକ ସଂକଟର ସମାଧାନ ପାଇଁ ଆମେ ରାସ୍ତାର ଅନ୍ୱେଷଣରେ ଥିଲେ, ତେଣୁ ସାମ୍ୟବାଦ ଗଢ଼ିଲେ ବା ସମୟ ବିଶେଷରେ ପରିବେଶବାଦକୁ ଆପଣେଇ ନେଲେ।

କିନ୍ତୁ ପରିବେଶ ମୁଖ୍ୟଚର୍ଚ୍ଚାର ବିଷୟ ହେଲା ଉତ୍ତାରୁ ଆମ ସମୟର ଏହି ବେଗ ବା ଦାବୀକୁ ଅତୀତ ଉପରେ ଲଦିଦେବା ବା ସମସାମୟିକ ସବୁ ସମାଜରେ ସେ ମୁଖ୍ୟ ପ୍ରଶ୍ନ ହୋଇ ନାହିଁ ବୋଲି ଅଭିଯୋଗ କରିବାର କିଛି ଯଥାର୍ଥତା ନାହିଁ। ବର୍ତ୍ତମାନ ସମୟରେ ପରିବେଶବାଦ ଏକ ସାମାଜିକ ଆବଶ୍ୟକତା। ନୋହିଲେ ପ୍ରକୃତି ଧ୍ୱଂସ ପାଇବାର ଡର ରହିଛି। କାହା କାହା ପାଇଁ ଏହା ଫେସନ ହେବା ବି ବଡ଼ କଥା ନୁହେଁ। ପାଂଚ/ଛଅ ଶହ ବର୍ଷ ପୂର୍ବେ ଏହା ମୁଖ୍ୟ ସମସ୍ୟା ହୋଇ ନ ଥିଲା। ଏବେ ବି କାହିଁ କେଉଁଠି ମୁଖ୍ୟ ସମସ୍ୟା ହୋଇନଥିବାର ଦୃଷ୍ଟାନ୍ତ ଅଛି। ସେ କ୍ଷେତ୍ରରେ ଆମେ ଯାହା ବିଚାର କରୁଛେ ସମସ୍ତଂକଠାରେ ତାକୁ ଆଶା କରିବା କି ଉଚିତ ହେବ ? ଅତୀତର କଳାକାର, ସ୍ଥପତି, କବି ପରିବେଶବିତ୍ ନ ହୋଇ ସୁଦ୍ଧା ତାଂକ ସମୟର ଶ୍ରେଷ୍ଠ କଳାକାର ବୋଲାଉଥାଇ ପାରନ୍ତି। ଏବେ

Digitized by srujanika@gmail.com

ସେମାନଙ୍କୁ ଆମ ପରିବେଶବାଦୀ ଦୃଷ୍ଟିକୋଣରୁ କାଠଗଡ଼ାରେ ଠିଆ କରାଇବା କି ଉଚିତ ହେବ? ଯଦି ଜୀବଜନ୍ତୁ, ଗଛଲତା ପ୍ରତି ସେମାନେ ଆଦର ବି ଦେଖାଇଛନ୍ତି, ଏବକାର ପରିବେଶବାଦ ସାଂଗରେ ତାହା ତୁଳନୀୟ ନୁହେଁ। ଅନ୍ୟଥା ଆଦିବାସୀ ଲଳନାଂକ ଲୁଗା ନ ପିଂଧିବା ସାଂଗରେ ବିଶ୍ୱସୁଂଦରୀ ପ୍ରତିଯୋଗିତାର ନଗ୍ନତାକୁ ତୁଳନା କଲା ଭଳି ହେବ।

'ବର୍ତ୍ତମାନ' ଭିତରେ ଯେମିତି ଅନେକ ବିଚାର, ଦୃଷ୍ଟିକୋଣ ସମାନ୍ତରାଳ ଭାବେ ବିକଶିତ, ଅତୀତ ଓ ବର୍ତ୍ତମାନ ଭିତରେ ମଧ୍ୟ ସେମିତି ଅଲଗା ଅଲଗା ବୌଦ୍ଧିକ ଚେତନା ବିଦ୍ୟମାନ ଥିବାର ସଂଭାବନାକୁ ଅସ୍ୱୀକାର କରାଯାଇ ନ ପାରେ। ସବୁଗୁଡ଼ିକୁ ନିଜ ନିଜ ସ୍ଥାନରେ ରହିବା ପାଇଁ ସୁଯୋଗ ମିଳିବା କଥା। ଗୋଟାଏ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣକୁ– ସେ ଭାଷା ସଂସ୍କୃତି ଭିତ୍ତିକ ହେଉ ବା ସମାଜ ରାଜନୀତିକ ବିଷୟକ ହେଉ - ଅନ୍ୟ ଏକ ଦୃଷ୍ଟିକୋଣ ଉପରେ ଲଦି ଦେଲେ, ଉଭୟଂକୁ ସ୍ୱତନ୍ତ୍ର ରୂପେ ବିକଶିତ ହେବାର ସୁଯୋଗ ନ ମିଳିଲେ ଆଜି ଯେମିତି ବିଚ୍ଛିନ୍ନତାବାଦ, ଆଦି, ସମସ୍ୟା ଉପୁଜେ, 'ବର୍ତ୍ତମାନ'କୁ 'ଅତୀତ' ଉପରେ ଚାପିବା ଦ୍ୱାରା ଯଦି ସେଭଳି ସମସ୍ୟା ସୃଷ୍ଟି ହୁଅନ୍ତା ଏବଂ ତାହା ଆମ ସ୍ଥୂଳ ଦୃଷ୍ଟିରେ ଦେଖା ଯା'ନ୍ତା, ହୁଏତ ଆମେ ସତର୍କ ରହନ୍ତେ। ଯେହେତୁ ସେହିଭଳି ସମସ୍ୟା ନାହିଁ, ଆମ ସଂବେଦନଶୀଳତା ବ୍ୟାପକ ହୋଇ ପାରେନା। ଅନ୍ୟଥା, ଆମ ଅତୀତ ବି ତଦ୍ୱାରା କଷ୍ଟ ପାଉନଥିବ ବୋଲି କିଏ କହିବ? ଦିନ ଥିଲା (ବରଂ କିଛି ବର୍ଷ ପୂର୍ବେ), ଗଛ-ମାଛର ଦରଦକୁ ଆମ ବୁଦ୍ଧିଜୀବି ଅନୁଭବ କରି ପାରୁ ନ ଥିଲେ। ସଂବେଦନଶୀଳ କେହି ନିରାମିଷାଶୀ ରହିଲେ, ତାକୁ ରକ୍ଷଣଶୀଳ, ଧର୍ମଭୀରୁର ଆଖ୍ୟା ମିଳୁଥିଲା। ଆଜି ସେ ସ୍ଥିତି ନାହିଁ। ଆମ ସଂବେଦନଶୀଳତାର ପରିସର ବ୍ୟାପକ ହୋଇଛି; ନିରାମିଷାଶୀକୁ ଆମେ ପରିବେଶବାଦୀ କହି ସମ୍ମାନ ଦେଉଛେ। ଦିନ ଆସିପାରେ, ଆମେ ଅତୀତର କଷ୍ଟକୁ ବି ଅନୁଭବ କରିବା! ଅତୀତକୁ ଅତୀତର ଦୃଷ୍ଟିରେ ଦେଖିଲେ ହୁଏତ ଜଣାପଡ଼ିବ ଯେ, ଆମ ସମୟରେ ଯାହା ଦ୍ୱିଧାପୂର୍ଣ୍ଣ ବା ପରିପୂରକ, ଅତୀତରେ ତାହା ହୋଇ ବି ଥାଇ ନ ପାରେ। ଆମ 'ସମୟ'ର 'ନାୟକ' ଏକାଧାରରେ ଜାତୀୟତାବାଦୀ, ବ୍ରିଟିସ ବିରୋଧୀ, ସାମାଜିକ ସଂସ୍କାରକାମୀ, ନାରୀ ପୁରୁଷ ମଧ୍ୟରେ ସମାନତାର ପକ୍ଷଧର, ମାତୃଭାଷାର ପ୍ରଚାରକ, ପୁଣି ଆଧୁନିକ ଶିକ୍ଷାର ପ୍ରସାର କଳ୍ପେ କୃତସଂକଳ୍ପ; ସବୁ ସଦଗୁଣର ସେ ଅଧିକାରୀ! ଅତୀତର ନାୟକ ଏତେ ସବୁ ସଦଗୁଣର ଧାରକ ହୋଇ ବି ନ ପାରେ। ଅନ୍ୟ ପକ୍ଷରେ ସେତେବେଳର ଖଳନାୟକ ପାଖରେ ଏହି ସଦଗୁଣ ଭିତରୁ ଗୋଟାକେତେ ଥାଇ ବି ପାରେ। ଆଜି ବର୍ତ୍ତମାନ ତାକୁ କାଠଗଡ଼ାରେ ଠିଆ କରାଇ ନିଜ ନିକିତିରେ ମାପିବ ବୋଲି କି ସେ ସବୁ ବଦଗୁଣକୁ ମାଳା କରି ପିଂଧିଥିବ, ତାର କିଛି ମାନେ ନାହିଁ।

Digitized by srujanika@gmail.com

ଉଦାହରଣ ସ୍ୱରୂପ ଉନବିଂଶ ଶତାବ୍ଦୀର ବୁଦ୍ଧିଜୀବି ରାଜା ରାମମୋହନ, ଫକୀର ମୋହନ ସେନାପତି ଏବଂ ସତୀପ୍ରଥାର ପକ୍ଷଧର ରାଧାକାନ୍ତ ଦେବଂକୁ ନିଆଯାଇପାରେ। ରାମମୋହନ ଓ ଫକୀର ମୋହନ ଜାତୀୟବାଦୀ, ଦେଶ ଓ ଜନତାଂକ ମଧ୍ୟରେ ଏକତା ଆଣିବା ପାଇଁ ପ୍ରତିବଦ୍ଧ, ସାଂଗରେ (କିନ୍ତୁ) ବ୍ରିଟିସ ଶାସନର ସମର୍ଥକ ମଧ୍ୟ। ପ୍ରେମଚାଂଦଂକ ବହୁ ପୂର୍ବରୁ ଫକୀର ମୋହନ ଛ' ମାଣ ଆଠଗୁଣ୍ଠରେ ଜଣେ ଛୋଟ ଚାଷୀ, ଭଗିଆର ଦୁଃଖ ଦରଦକୁ ଚିତ୍ରିତ କରିଛନ୍ତି, କୃଷକ କନ୍ଦିତାନରେ ପ୍ରଜାର ଉତ୍ପୀଡ଼ନ ତଥା ଦୁରବସ୍ଥା ସକାଶେ ଦାୟୀ ସମାଜକୁ ଭର୍ତ୍ସନା କରିଛନ୍ତି। କିନ୍ତୁ ତା ସଂଗେ ସଂଗେ କେଉଁଝରେ ରାଜାର ମେନେଜର ପଦବୀରେ ଥାଇ ଉତ୍ପୀଡ଼ନ, ବେଠି ଯୋଗୁଁ ଆରଂଭ ହୋଇଥିବା ପ୍ରଜା ବିଦ୍ରୋହକୁ ଦୃଢ଼ ହସ୍ତରେ ଦମନ ମଧ୍ୟ କରିଛନ୍ତି। ଠିକ ସେହିଭଳି ରାଧାକାନ୍ତ ଦେବ ସତୀପ୍ରଥାର ପକ୍ଷଧର କିନ୍ତୁ ସମସାମୟିକ ଅନ୍ୟାନ୍ୟ ଜାତୀୟତାବାଦୀ ବୁଦ୍ଧିଜୀବିଂକ ପରି ବିଧବା ବିବାହ ଭଳି ସଂସ୍କାର ମୂଳକ କାର୍ଯ୍ୟର ଦୃଢ଼ ସମର୍ଥକ। ଅତୀତର ଚକ୍ଷୁରେ ଦେଖିବାକୁ ଚେଷ୍ଟାକଲେ, ଏସବୁ ହୁଏତ ଦ୍ୱିଧାପୂର୍ଣ୍ଣ ମନେହେବ ନାହିଁ। ଚରିତ୍ର ଗୁଡ଼ିକ ନା ଘୃଣ୍ୟ, ଖଳନାୟକ ଭଳି ଲାଗିବେ, ନା ଦେବାଦେବୀ ପରି ତାଂକୁ ପୂଜା କରିବାକୁ ହେବ। ମଣିଷ ଦୃଷ୍ଟିରେ ମଣିଷ ଭଳି ସେମାନଂକୁ, ତାଂକ ସମୟକୁ ଇତିହାସରେ ସ୍ଥାନ ମିଳିବ। କିନ୍ତୁ ପ୍ରଶ୍ନ ଉଠେ, ଅତୀତର ଚକ୍ଷୁରେ ଅତୀତକୁ ଦେଖିବେ କେମିତି ? ଆମେ ତ ବର୍ତ୍ତମାନର ଦାୟାଦ। ଅଜାଣତରେ ହେଉପଛେ, ବର୍ତ୍ତମାନ ତ ତା ଛାପ ଆମ ଉପରେ ଛାଡ଼ିବ ହିଁ ଛାଡ଼ିବ। ଯାହା କଲେ ବି ବର୍ତ୍ତମାନ ହିଁ ଆମର ଦ୍ରଷ୍ଟା ! ପ୍ରଶ୍ନଟିର ଉତ୍ତର ପାଇଁ ବରଂ ଭବିଷ୍ୟତ ଉପରେ ଭରସା କଲେ ହିଁ ଭଲ ହେବ।

(୧୯୯୭)

◆◆

Digitized by srujanika@gmail.com

# ସ୍ୱାଧୀନତା କେଉଁଠି ଅଟକିଗଲା ?

ସାଧାରଣ ବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକତା ପରିପୂରଣର ସାମୂହିକ ପ୍ରକ୍ରିୟା ଓ ପରିଚର୍ଯ୍ୟାକୁ ସ୍ୱାଧୀନତା ନାମରେ ପରିଭାଷିତ କରାଯାଇପାରେ। ଯଦି ସର୍ବନିମ୍ନ ମୌଳିକ ଆବଶ୍ୟକତା ପୂରଣ ହୋଇଛି, ତେବେ ସ୍ୱାଧୀନତା ମିଳିଛି, ଯଦି ହୋଇନାହିଁ, ଦାବୀକରିବୁ ସେବେ 'ସ୍ୱାଧୀନତା ଏ ଯାଏ ମିଳିନି।' ସ୍ୱାଧୀନ ଭାରତରେ ସାଧାରଣ ବ୍ୟକ୍ତିକୁ ମାନବିକ ସମ୍ମାନ ମିଳିବ, ଅଧିକାରୀ ନମ୍ରତା ସହକାରେ ତା ସହ କଥାଭାଷା କରିବେ, ଉଚିତ ମୂଲ୍ୟରେ ଆବଶ୍ୟକୀୟ ବସ୍ତୁ ବଜାରରେ ସୁଲଭ୍ୟ ହେବ, ଶିକ୍ଷାର ମାନ ବଢ଼ିବ, ରାସ୍ତାଘାଟରେ ନାରୀ ସମ୍ମାନ ଓ ମର୍ଯ୍ୟାଦାର ସହ ଆତଯାତ ହେବେ - ବେଶ ଏ ଭଳିଆ କିଛି ଆଶା, ଆକାଂକ୍ଷା, ସ୍ୱପ୍ନ ନେଇ ଭାରତବାସୀ ବ୍ରିଟିଶ ଉପନିବେଶବାଦ ବିରୁଦ୍ଧରେ ବର୍ଷ ବର୍ଷ ଧରି ସଂଗ୍ରାମ କରିଥିଲେ। ଏହି ସବୁ ଆଶା ପୂରଣ ହୋଇଥାନ୍ତା ଯଦି, ସମାଜବାଦ ଆସିଲା ବୋଲି ତ କହି ନ ଥାନ୍ତେ, ଏକ ସଭ୍ୟ ସମାଜ ଭାବରେ ଭାରତର ସ୍ଥାନ ରହିଥାନ୍ତା। ସ୍ୱାଧୀନତାର ପଚାଶ ବର୍ଷ ପରେ ସୁଦ୍ଧା ଯଦି ସେ ସବୁର ଅଭାବ ରହିଛି, ତେବେ ନିଶ୍ଚିତରୂପେ ଆମେ କହିବା - ସ୍ୱାଧୀନତା କେଉଁଠି ଅଟକି ଗଲା। ବ୍ରିଟିଶ ସରକାର ଗଲା; କିନ୍ତୁ ସେତେବେଳର ସମସ୍ୟା ସବୁର ମାତ୍ରା ଊଣା ହେଲା ନାହିଁ। ଭାରତୀୟମାନେ ଏକ ସଭ୍ୟ ସମାଜ ଗଢ଼ି ପାରିଲେ ନାହିଁ। ସ୍ୱାଧୀନତା ଆସିବା କଥା, କେଉଁଠି ଅଟକି ଗଲା।

କେବଳ ଭାରତ କାହିଁକି, ଉତ୍ତର-ଉପନିବେଶବାଦ ପର୍ଯ୍ୟାୟର ପ୍ରାୟ ସବୁ ସମାଜରେ ସ୍ୱାଧୀନତା କେଉଁଠି ଅଟକି ଯାଇଛି, କେତେକ ଦେଶରେ ତ ସାମରିକ ଶାସନ ଭଳି ଏକ ବଡ଼ ବିପତ୍ତି ମୁଣ୍ଡ ଟେକିଲାଣି। ଯଦିଓ ସେହିଭଳି ଦେଶ ତୁଳନାରେ ଭାରତର ସ୍ଥିତି ନିହାତି ମନ୍ଦ ନୁହଁ, ଆମର ବର୍ତ୍ତମାନ ସ୍ଥିତି ଯାହା, ସେଥିରେ ଖୁବ ବେଶି ଆନନ୍ଦିତ ହେବାର କିଛି ନାହିଁ, ଏକଛତ୍ରବାଦ, ସାମରିକ ଶାସନ ନ ଥିବା ସତ୍ତ୍ୱେ ଏଠି ଯେତେ ସବୁ ସମସ୍ୟା ରହିଛି ତାର ମାତ୍ରା କିଛି କମ୍ ନୁହେଁ। ତେଣୁ ସ୍ୱାଧୀନତା ଅଟକିବା ଜନିତ ସମସ୍ୟାକୁ ନେଇ ଚିନ୍ତିତ ରହିବା, ଆଶୁ ସମାଧାନ କଳ୍ପେ ଉପାୟ ପାଂଚିବା ପ୍ରକୃତ ସାମାଜିକ କର୍ମୀ ନିମନ୍ତେ ସ୍ୱାଭାବିକ; ବରଂ ଏକ ଗୁରୁ ଦାୟିତ୍ୱ !

ପ୍ରଶ୍ନଟିକୁ ବିଚାର କଲାବେଳେ, ଏହା କହିବା ହୁଏତ ଅପ୍ରାସଂଗିକ ମନେ ହେବ ନାହିଁ ଯେ, ଆଜି ଆମ 'ସ୍ୱାଧୀନ' ସମାଜରେ ଯିଏ ଯେତେ ସାଧାରଣ, ସ୍ୱାଧୀନତା ତା ପାଇଁ ସେତେ ଦୁଷ୍ପ୍ରାପ୍ୟ, ମହଂଗା। ବରଂ, କୁହାଯାଇପାରେ, ଜନଗଣଙ୍କୁ

Digitized by srujanika@gmail.com

ଦିନୁଦିନ ବେଶି କଷ୍ଟ ଦହଗଂଜ ମିଳିବାର ଅନ୍ୟ ନାଁ ହେଲା ସ୍ୱାଧୀନତା। ଅଫିସର ତୁଳନାରେ ଯଦି କିରାଣୀ ପାଇଁ ସ୍ୱାଧୀନତା ମହଂଗା, ପିଅନ ପାଇଁ ଏହା ଆହୁରି ମହଂଗା ଏବଂ ଅଫିସକୁ କାମ ପାଇଁ ଆସୁଥିବା ବାହାରର ସାଧାରଣ ବ୍ୟକ୍ତିପାଇଁ ପୁଣି ସବୁଠାରୁ ବେଶି ମହଂଗା। ଠିକ ସେହିଭଳି ସହର ଓ ଗାଁ ମଧ୍ୟରେ ଦେଖିଲେ, ଗାଁ ପାଇଁ ସ୍ୱାଧୀନତା ମହଂଗା। ପୁଣି ରାଜଧାନୀ ଓ ଅନ୍ୟ ସହର ମଧ୍ୟରେ ତୁଳନା କଲେ, ଅନ୍ୟ ସହର ପାଇଁ ଏହା ମହଂଗା। ଠିକ ଏକା ରକମର ଏକ ଲଂବା ସିଡ଼ି ଇଂରାଜୀ ପାଠୁଆ, ସାଧାରଣ ପାଠୁଆ, ଦର ପାଠୁଆ ଓ ଅପାଠୁଆଂକ ମଧ୍ୟରେ। ଅପାଠୁଆ ପାଇଁ ଯଦି ଏହା ଖୁବ ମହଂଗା, ଇଂରାଜୀ ପାଠୁଆ ପାଇଁ ସ୍ୱାଧୀନତା ହାତ ପାଆନ୍ତା କହିଲେ ବି ଚଳିବ।

ପ୍ରଶ୍ନ ଉଠେ, ସ୍ୱାଧୀନତାର ପଥରେ ପ୍ରତିବଂଧକ ସବୁ କିଏ, କେଉଁମାନେ? ପ୍ରାୟ ଗୋଟାଏ ସ୍ତରରେ ସମସ୍ତେ ସ୍ୱାଧୀନତାରୁ ବଂଚିତ, ପୁଣି ଅନ୍ୟ ଏକ ସ୍ତରରେ ଛୋଟଚାଷୀ, ଦିନମଜୁରିଆ ଆଦି କେତେକ ତଳି ତଳିଆଂକୁ ବାଦଦେଲେ ଅନ୍ୟ ସମସ୍ତେ ଅନ୍ୟକୁ ତା ସ୍ୱାଧୀନତାରୁ ବଂଚିତ କରିବାରେ କିଛି କିଛି ପରିମାଣରେ ଦାୟୀ, ସ୍ୱାଧୀନତାର ବାଟରେ ପ୍ରତିବଂଧକ। ଯଦି ପିଅନକୁ ସ୍ୱାଧୀନତା ମିଳିବାରେ କିଛି ପରିମାଣରେ କିରାଣୀ ଏକ ଅନ୍ତରାୟ, ତେବେ ଅଫିସକୁ କାମ ପାଇଁ ଆସୁଥିବା ଲୋକଂକ ସ୍ୱାଧୀନତା ପ୍ରାପ୍ତିରେ ପିଅନ ବି ଏକ ଅନ୍ତରାୟ। ପୁଣି ଏହି ଲୋକମାନେ ଆଉ କାହା ପାଇଁ ଆଉ କେଉଁଠାରେ ଗୋଟାଏ ଗୋଟାଏ ଅନ୍ତରାୟ। ଜାଣି, ସ୍ୱାଧୀନତାର ବାଟ ଦୁର୍ଗମ କରିବା ନିମନ୍ତେ ଆମେ ସମସ୍ତେ ନିଜ ନିଜ ସ୍ତରରେ କୃତସଂକଳ୍ପ! ସ୍ୱାଧୀନତାରୁ ବଂଚିତ ରହିଲାବେଳେ ବ୍ୟକ୍ତି ଯେତେ ପରିମାଣରେ ସାଧାରଣ, ନିରୀହ, ଦୟାର ପାତ୍ର ମନେ ହୁଏ, ଅନ୍ୟକୁ ତା ସ୍ୱାଧୀନତାରୁ ବଂଚିତ କଲାବେଳେ ପୁଣି ସେ ସମପରିମାଣରେ 'ଅସାଧାରଣ', 'ଅନମନୀୟ', 'ଖଳନାୟକ' ତୁଲ୍ୟ ବ୍ୟବହାର କରେ। ଆମେ ଅନ୍ୟକୁ ତା ସ୍ୱାଧୀନତାରୁ ବଂଚିତ କରିବା ନାହିଁ ବୋଲି ଯଦି ବ୍ୟକ୍ତିଗତ ସ୍ତରରେ ସଂକଳ୍ପଟିଏ ନେଇ ପାରନ୍ତେ, ତେବେ ସମସ୍ୟାଟି ଏକା ଦିନକେ ସମାହିତ ନ ହେଲେ ସୁଦ୍ଧା, ଏତେ ମାତ୍ରାରେ ବିକଟ ରୂପ ଧାରଣ କରନ୍ତା ନାହିଁ। ମାତ୍ର ଏହା ହୁଏ ନାହିଁ। କାରଣ ପ୍ରାୟ ସମସ୍ତେ ସାଧାରଣ ଅବସ୍ଥାରେ ଅସୁବିଧାରେ ପଡ଼ନ୍ତି, ଦହଗଂଜ ହୁଅନ୍ତି ଏବଂ ତାର ବିପରୀତ 'ଅସାଧାରଣ' ଅବସ୍ଥାରେ 'ସୁବିଧା' ଖୋଜନ୍ତି, ଅନ୍ୟକୁ ହନ୍ତସନ୍ତ କରନ୍ତି, କଷ୍ଟ ଦିଅନ୍ତି। ସେମାନେ ଏହି ଆଶାରେ କାଙ୍ଗାଳପାତ କରନ୍ତି ଯେ, ସ୍ଥାୟୀ ଭାବରେ ଜନ୍ମ ଜନ୍ମାନ୍ତର ପାଇଁ ଅସାଧାରଣ ହେବେ, ଅନ୍ୟକୁ ତା ସ୍ୱାଧୀନତାରୁ ବଂଚିତ କରିବେ। ନୋହିଲେ ଏତେ ସଂଖ୍ୟାରେ ଲୋକ 'ସାଧାରଣ' ସ୍ତରରେ ଥିବା ସତ୍ତ୍ୱେ ସ୍ୱାଧୀନତା ଅଟକି ରହନ୍ତା ବା କାହିଁକି?

ଆମେ ଜଣେ ଅନ୍ୟ ଜଣକର ସ୍ୱାଧୀନତା ନିମିତ୍ତ ଅନ୍ତରାୟ ହେବା ମୂଳରେ କାରଣ କ'ଣ ହୋଇପାରେ? ବୋଧହୁଏ ଗୋଟାଏ କାରଣ ହେବ ଆମର ଜାତିବାଦୀ ଦୃଷ୍ଟିକୋଣ।

Digitized by srujanika@gmail.com

ଜାତିପ୍ରଥାରେ ତଥାକଥିତ 'ତଳ' ଜାତି ଭାବେ 'ବଡ଼' ଜାତିର ଅନୁକରଣ କରି ସେ ବଡ଼ ବା ଉଚ୍ଚ ଜାତି ହେବ। ତା ସମସ୍ୟାର ସେଇଠି ସେ ସମାଧାନ ଖୋଜେ! ଜାତି ପ୍ରଥାର ଉଚ୍ଛେଦ ପାଇଁ ସେ ଚିନ୍ତା କରେନା, କାରଣ ତା ଆଗରେ ପାହାଚ ପାହାଚ ହୋଇ ଜାତିର ଏକ ଲଂବା ସିଡ଼ି। ସବା ଉପର ପାହାଚ ଚଢ଼ିବା ହୁଏତ ସଂଭବ ହୋଇ ନ ପାରେ, (ଯଦିଓ ସେ ତାକୁ ବି ଅସଂଭବ ମନେ କରେନା) କିନ୍ତୁ ଗୋଟାଏ ଅଧେ ପାହାଚ ଚଢ଼ିବା, ସେ ଶିକ୍ଷା ମାଧ୍ୟମରେ ହେଉ ବା ଶାରୀରିକ ବଳ ଅଥବା ଧନ ବଳରେ ହେଉ, ତାକୁ ଖୁବ କାଠିକର ମନେହୁଏ ନାହିଁ। ଏହି ଆଶା ତାକୁ ପରିସ୍ଥିତିର ବିକଳ୍ପ ଖୋଜିବା ପାଇଁ ତତ୍ପର କରେ ନାହିଁ; ଜାତିପ୍ରଥାର ମୂଳ ଗହୀରା ଓ ସବଳ ହୁଏ। ବ୍ୟକ୍ତି ସ୍ୱାଧୀନତା ବା ସର୍ବନିମ୍ନ ଆବଶ୍ୟକତା ଓ ମାନବିକ ଅଧିକାରରୁ ବଂଚିତ ହେଲା ବେଳେ ଏବଂ ଅନ୍ୟକୁ ତହିଁରୁ ବଂଚିତ କଲାବେଳେ ମଧ୍ୟ ଏହି ଦୃଷ୍ଟିକୋଣ କାମ କରେ। ଆଧ୍ୟାତ୍ମିକ ବା ସାଧାରଣ ମନସ୍ତାତ୍ତ୍ୱିକ ଦିଗରୁ ଦେଖିଲେ, ଏହା ଅନ୍ତରାଳରେ ରହିଛି ଅହମିକା ଓ ଔଦ୍ଧତ୍ୟ।

ହୁଏତ ଅନ୍ୟ ଏକ କାରଣ ହେବ ସାମଗ୍ରିକ ବିଶ୍ୱ ଦୃଷ୍ଟିକୋଣର ଅଭାବ। ପୁଂଜିବାଦୀ ବ୍ୟବସ୍ଥାରେ ବ୍ୟକ୍ତି ଏତେ ବ୍ୟକ୍ତିକୈନ୍ଦ୍ରିକ ହୋଇପଡ଼େ ଯେ, ତାର ପାଖ ପଡ଼ୋଶି ପ୍ରତି ମଧ୍ୟ ତାର ସଂବେଦନା ରହେ ନାହିଁ। ଗୋଟାଏ ପଟେ ଗମନାଗମନ ତଥା ଗଣମାଧ୍ୟମ ଆଦିର ବିକାଶ ଯୋଗୁଁ ସାରା ବିଶ୍ୱ ଆଜି ଏକ ଗାଁ ଭଳି ପ୍ରତେ ହେଉଛି, ବ୍ୟକ୍ତିର ଆଖି ଆଗରେ, କିନ୍ତୁ ଅନ୍ୟ ପଟେ ମହାନଗରୀର ସେହି ଏକା ଫ୍ଲାଟ୍‌ରେ ରହୁଥିବା ପଡ଼ୋଶି ବିଷୟରେ ବି ସେ ଅଜ୍ଞ, ସଂବେଦନାହୀନ। ନିଜ ଘର ବାତାନୁକୂଳିତ କରିବା ଫଳରେ ଅନ୍ୟମାନେ ଯେ ଶାରୀରିକ, ମାନସିକ ତଥା ସାମାଜିକ ସ୍ତରରେ ତାର ଦୁଷ୍ପରିଣାମ ଭୋଗିବେ, ଏ ଚିନ୍ତା ଆମେ କରିପାରୁନା। ସମାଜର ସୁଖ ସୁବିଧା ସବୁକୁ କେବଳ ଆମେ ଜାବୁଡ଼ି ଧରିଲେ ଅନ୍ୟମାନଙ୍କୁ ଯେ ଅସୁବିଧା ଭୋଗ କରିବାକୁ ପଡ଼ିବ - ଏହା ଆମ କଳ୍ପନାର ବାହାରେ। କେବେ ଯଦି କଳ୍ପନା କରାଯାଏ, ତେବେ ସୁଦ୍ଧା, ସଂବେଦନହୀନତା ଯୋଗୁଁ ତାର ଦରଦ ଅନୁଭବ କରି ପାରୁନା। ଫଳରେ କିରାଣୀ ଅଣ୍ଟାଗୁଂଜା ନେଲାବେଳେ କେବଳ ଫ୍ରିଜ, କଲରଟିଭି ବା ଝିଅକୁ ଯୌତୁକ ଦେବା କଥା ଚିନ୍ତା କରେ, ତା' ପଡ଼ୋଶିଠାରୁ ଦୁଇ ପାହାଚ ଆଗକୁ ମାଡ଼ି ଯିବାକୁ ଚେଷ୍ଟା କରେ, ଅଣ୍ଟାଗୁଂଜା ଦେବାକୁ ବାଧ୍ୟ ହେଉଥିବା ବ୍ୟକ୍ତିର ମନର ସ୍ଥିତି ଅନୁଭବ କରିପାରେନା। 'ବସୁଧୈବ କୁଟୁମ୍ବକମ୍'ର ଯେଉଁ ଶାଶ୍ୱତବାଣୀ ଆର୍ଯ୍ୟ ଋଷିମାନେ କରିଥିଲେ, ତାହା ଏଠାରେ ହାସ୍ୟାସ୍ପଦ, ନିହାତି ଅମୂଳକ ମନେହୁଏ।

ଦୁନିଆରେ ଏକ ସୁଖର ଭଣ୍ଡାର ରହିଛି। ମାତ୍ର ଲୋଭିବ୍ୟକ୍ତି ପରି ଯଦି କେବଳ ଆମେ ତାକୁ ଜାବୁଡ଼ି ବସିବା, ନାଁ ସେ ଭଣ୍ଡାର ରହିବ, ନା ଦୁନିଆଁ।

Digitized by srujanika@gmail.com

ପରିଶେଷରେ ଅବଶ୍ୟ ଲୋଭିବ୍ୟକ୍ତି ମଧ୍ୟ ତାର ଦୁଷ୍ପରିଣାମ ଭୋଗିବ। କିନ୍ତୁ ସବା ଆଗରେ ପାଖ ପଡ୍ରୋଶିମାନେ- ଗଛଲତା, ଜୀବଜନ୍ତୁ, ବାକୀ ଲୋକ- ଅନ୍ୟର ପାପର କୁଫଳ ଭୋଗିବେ। ସେମାନଙ୍କ ଦରଦକୁ ହୃଦୟଂଗମ କଲାଭଳି ବିଶ୍ୱ ଦୃଷ୍ଟିକୋଣ ନା ପୁଂଜିବାଦ ଦିଏ, ନା ମାର୍କ୍ସବାଦ। ଗାଂଧିବାଦୀ ଦୃଷ୍ଟିକୋଣରେ- ଶବ୍ଦ ଭିନ୍ନ ହୋଇପାରେ- ତାର ସ୍ୱରୂପ ରହିଛି। ହେଲେ ଆଂଗୁଠିରେ ଗଣି ହେଲା ଭଳି କେତେ ଜଣ ବୁଢ଼ା ଗାଂଧିବାଦୀଙ୍କୁ ଛାଡ଼ି, କେହି ସେକଥା ଆଜିର ପୀଢ଼ିକୁ କହିବାର ନାହିଁ। ତାକୁ ନେଇ ସାହିତ୍ୟ ଅଛି, କଳା ଅଛି, ଯୁକ୍ତିସଂଗତ ଆଧାର ଅଛି, କିନ୍ତୁ ବାଢ଼ିବା ସକାଶେ ଲୋକର ଅଭାବ; ତା'ଠାରୁ ଅଧିକ ଅଭାବ ମାଧ୍ୟମର। ପ୍ରଚଳିତ ଗଣମାଧ୍ୟମ ସବୁ ବହୁରାଷ୍ଟ୍ରୀୟ କଂପାନୀ ଓ ବିଶ୍ୱବେଂକର ପ୍ରଭାବରେ ମସ୍‌ଗୁଲ ତଥା ସଂକ୍ରମିତ; ଯାହା ଗାଂଧିବାଦୀ ଦୃଷ୍ଟିକୋଣର ସଂପୂର୍ଣ୍ଣ ବିରୋଧୀ। ତାର ଗୋଟାଏ ଆଦର୍ଶ - ନିଜେ, ସୁଖିତ ଜଗତ ସୁଖି! ବାକୀମାନଙ୍କୁ ଓ ଭବିଷ୍ୟତକୁ କିଏ ପଚାରେ ?

ଏଥିରୁ ଗୋଟାଏ କଥା ସ୍ପଷ୍ଟ ଯେ, ସ୍ୱାଧୀନତାର ବାଟ ସଫା କରିବା ପାଇଁ ଅର୍ଥାତ୍ ହକ ଦାବୀ ପାଇବା ପାଇଁ ବ୍ୟକ୍ତିକୁ ସ୍ରୋତର ପ୍ରତିକୂଳ ଗତିରେ ଯିବାକୁ ହୁଏ। ନା ଆମର ପୁରାତନ ଜାତିବାଦୀ ଆଦର୍ଶ ଏ କ୍ଷେତ୍ରରେ ସହାୟ ହୁଏ, ନା 'ଆଧୁନିକ' ଦୃଷ୍ଟିକୋଣ। ବରଂ ସେମାନେ ରାସ୍ତା ଅବରୋଧ କରନ୍ତି, ପ୍ରତିବଂଧକ ସୃଷ୍ଟି କରନ୍ତି।

ଏହି ପରିପ୍ରେକ୍ଷୀରେ ସାମାଜିକ କର୍ମୀର (ସଂଖ୍ୟା ଅବଶ୍ୟ ଖୁବ୍ କମ) ଦାୟିତ୍ୱ ଖୁବ ବେଶି। ବ୍ୟକ୍ତିଗତ ସଂଘର୍ଷକୁ ସେ ଗୋଷ୍ଠୀ ସ୍ତରକୁ ଆଣେ, ନ୍ୟାଯ୍ୟଦାବୀ ସକାଶେ ସମୟ ଓ ସ୍ରୋତର ବିପରୀତ ଗତିରେ ଯାଉଥିବା ବ୍ୟକ୍ତିକୁ ସେ ଅସହାୟ ହେବାକୁ ଦିଏ ନାହିଁ। ଗୋଟାଏ ସ୍ତରରେ ଭାରତର ସ୍ୱାଧୀନତା ସଂଗ୍ରାମକୁ ଏ ଭଳିଆ ସାମାଜିକ କର୍ମୀମାନଙ୍କର ଏକ ସମୂହ ସ୍ୱରୂପ, ପୁରାତନ ଜାତିବାଦୀ ଆଦର୍ଶ ଓ ଆଧୁନିକ ଉପନିବେଶବାଦ ବିରୁଦ୍ଧରେ ସ୍ରୋତର ବିପରୀତ ଦିଗରେ ଗତିଶୀଳ ଏକ ଗଣବିକ୍ଷୋଭ ରୂପେ ପରିଭାଷିତ କରାଯାଇପାରେ।

କିନ୍ତୁ ଦେଖା ଯାଉଛି ଯେ, ସ୍ୱାଧୀନତା ସଂଗ୍ରାମର ଲାଭ ଯାହାକୁ ମିଳିବା କଥା, ଯେଉଁ ରୂପେ ମିଳିବା କଥା ତାହା ମିଳିନି। ଆମେ କହୁଁ, ସ୍ୱାଧୀନତା କେଉଁଠି ଅଟକି ଗଲା। ଠିକ ସେହିଭଳି ଏବର ସାମାଜିକ କର୍ମୀର କଷ୍ଟୋପାର୍ଜିତ ଉପଲବ୍ଧ ଯେ ଉଚିତ ରୂପେ ସମାଜକୁ ମିଳିବ— ସେ ନେଇ ଆମେ ସଂଦିହାନ। ଏହାର ଅନେକ କାରଣ ଏବଂ ଅଧିକାଂଶ କାରଣଗୁଡ଼ିକ ଉପରେ ହୁଏତ ସାମାଜିକ କର୍ମୀଙ୍କ କାବୁ ନାହିଁ। ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ୧୯୪୨ ମସିହା ପରେ ଅତ୍ୟାଚାରୀ ରାଜା, ମହାରାଜା ତଥା ଶୋଷଣକାରୀ ପୁଂଜିପତି ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ ଏବଂ ୧୯୪୭ରେ ବ୍ରିଟିଶ ଗଲାପରେ, କ୍ଷମତା ତଥା କଂଗ୍ରେସର ପକ୍ଷଧର ସାଜିଲେ। ଆଂଦୋଳନ ସମୟରେ ସେମାନଙ୍କ ଆଗମନକୁ

Digitized by srujanika@gmail.com

କଂଗ୍ରେସର ପ୍ରକୃତକର୍ମୀ ବା ବିରୋଧ କରିବ କେମିତି ? ଜନ ଆଂଦୋଳନରେ ଯଦି ଅଧିକରୁ ଅଧିକ ଲୋକ ନ ଆସନ୍ତି, ଉପନିବେଶବାଦ ପରାହତ ହେବ କେମିତି ? ଦ୍ୱିତୀୟ କାରଣ ହେଲା, ଉପନିବେଶବାଦ ବିରୁଦ୍ଧରେ ସଂଗ୍ରାମ କାଳରେ ସାଂଗଠାନିକ ବ୍ୟୟ ପାଇଁ ଆବଶ୍ୟକ ପୁଞ୍ଜି ରାଜା, ଜମିଦାର ଓ ଧନିକ ବର୍ଗଙ୍କଠାରୁ ମିଳୁଥିଲା। ଠିକ ସେମିତି ଅନେକ ସ୍ଥିତି ଯେଉଁଥିରେ ସାମାଜିକ କର୍ମୀର ଦଖଲ ନ ଥାଏ। ଫଳରେ ସ୍ୱାଧୀନତା ଅଟକି ଯାଏ। ମାତ୍ର କେତୋଟି କାରଣ ତା ନିଜ ହାତଗଢ଼ା। ଉଦାହରଣ ସ୍ୱରୂପ କୁହାଯାଇ ପାରେ ଯେ, ପ୍ରାୟ କ୍ଷେତ୍ରରେ ଭୁଲ ଠିକ ନିଷ୍ପତ୍ତି ନେଲାବେଳେ, ସାମାଜିକ କର୍ମୀ ତଳସ୍ତରର ଭୁଲକୁ ଗୌଣ ପ୍ରତିପାଦିତ କରେ। ଭାଷା ଦେଇ, ତର୍କ ବାଢ଼ି, ଯୁକ୍ତିଯୁକ୍ତତା ଦର୍ଶାଇ କେବଳ ଉପର ସ୍ତରରେ ସେ ଦୋଷ ବାଛେ - ଯଦି ଉଭୟ ଅଫିସର ଓ କିରାଣୀ ଦୁର୍ନୀତିଗ୍ରସ୍ତ, କିରାଣୀର ଦୁର୍ନୀତିକୁ ଅଫିସର ସ୍ତରର ଦୁର୍ନୀତିର ଫଳ/ପରିଣାମ ବୋଲି ବିଚାରିବା। ଠିକ ସେହିଭଳି କିରାଣୀ ଓ ପିଅନ ମଧ୍ୟରେ ସର୍ବଦା ପିଅନର ଅପରାଧକୁ ଗୌଣ ମନେକରିବା। ଏହା ବାସ୍ତବିକତାର ସମୂହ ରୂପକୁ ଚିହ୍ନିବାରେ ପ୍ରତିବଂଧକ ସୃଷ୍ଟିକରେ। ଅନୀତିରେ ସାନ ବଡ଼ ବ୍ୟକ୍ତି ବିଶେଷର ମାତ୍ରା ରହିବା ଯେପରି ଗର୍ହିତ; ସେହିପରି ସାନ ଅନୀତି, ବଡ଼ ଅନୀତି ବୋଲି କିଛି ରହିବା ଅନୁଚିତ। ଅନ୍ୟ ପକ୍ଷରେ, କେବଳ ତଳ ସ୍ତରରେ ଦୋଷ ଦେଖୁଥିବା ପ୍ରତିକ୍ରିୟାବାଦୀ ତତ୍ତ୍ୱ ପରି ଏହା ସମ ମାତ୍ରାରେ ଅଯୌକ୍ତିକ ଏବଂ ଆଧାରବିହୀନ ମନେ ହୁଏ। ତା ଛଡ଼ା ଯେଉଁ ଯୁକ୍ତି ବଳରେ ତଳସ୍ତରର ଦୋଷକୁ ନ୍ୟୁନ ବା ହେୟ ଦୃଷ୍ଟିରେ ଆମେ ଦେଖୁଁ, ଠିକ ସେହି ଯୁକ୍ତି ସାହାଯ୍ୟରେ ଉପରସ୍ତରର ଦୋଷକୁ ବି ଘଣ୍ଟ ଘୋଡ଼ାଯାଇ ପାରେ। କେବଳ ଏତିକି ନୁହେଁ, ଯୁକ୍ତି ଭୁଲର ପୁନରାବୃତ୍ତି କରିବାରେ ସାହାଯ୍ୟ କରେ, ଅପରାଧବୋଧରୁ ମୁକ୍ତ କରେ। ଫଳରେ ତଳ ସ୍ତରରେ ଥିବା ଲାଲୁ ଯାଦବ ମାନେ ସୁଯୋଗ ପାଇଲେ ହଜାର କୋଟି ଟଂକାର ଦୁର୍ନୀତି କରନ୍ତି। ତେଣୁ ବାସ୍ତବିକତାର ସମୂହ ରୂପକୁ ଦେଖିବାର ସତସାହସ ସାମାଜିକ କର୍ମୀଠାରେ ହେବା ବାଂଛନୀୟ। ସ୍ୱାଧୀନତା ବାଟରେ ଅଟକିଛି, ଲୋକଂକ ନ୍ୟାୟୋଚିତ ଦାବୀ ପୂରଣ ହୋଇ ପାରୁନି- ତା ପାଇଁ ଉପରସ୍ତରରେ ଥିବା ନେତା, ଅଫିସର ଆଦି ଦାୟୀ, ସାଂଗରେ କିରାଣୀ, ପିଅନ, କୁଳିନେତା, ଏନ୍.ଜି.ଓ.ମାନେ ବି କିଛି କିଛି ଦାୟୀ। ସମସ୍ୟାର ପୂର୍ଣ୍ଣ ସ୍ୱରୂପକୁ ଦେଖିବା ପାଇଁ ଆମର ଯାହା ଆଖି ଖୋଲା ହେବା ଦରକାର। ଅନ୍ୟଥା ଭଗୀରଥ ସାଜି ଗଂଗାକୁ ମର୍ତ୍ତ୍ୟକୁ ଆଣିବା ନୋହିବ ! ସ୍ୱାଧୀନତା ସେମିତି ଯୁଗ ଯୁଗ ଧରି ବାଟରେ ପଡ଼ିରହିବ; ଲୋକଂକ ହାତ ପାଆନ୍ତା ହେବ ନାହିଁ।

(୧୯୯୭)

◆◆

Digitized by srujanika@gmail.com

# ସଦ୍‌ଭାବନା ଦିବସ

'ସଦଭାବନା'ର ଆକ୍ଷରିକ ଅର୍ଥ ଯାହା ହେଉ ନା କାହିଁକି, ବିଶେଷ ଅର୍ଥ ହେଲା ସାମାଜିକ ଶାନ୍ତି ଓ ମୈତ୍ରୀପୂର୍ଣ୍ଣ ସହାବସ୍ଥାନ; ବିନା କଳହ ଓ ରକ୍ତପାତରେ ଆପୋଷ ସହଯୋଗ ଓ ବିଚାର ଆଲୋଚନା ମାଧ୍ୟମରେ ସାମାଜିକ ସମସ୍ୟାଗୁଡ଼ିକର ସମାଧାନ କଳ୍ପେ ବିକଳ୍ପର ଅନ୍ୱେଷଣ। ବ୍ୟକ୍ତି-ବ୍ୟକ୍ତି, ଦେଶ-ଦେଶ ଏବଂ ସମାଜ ଓ ବ୍ୟକ୍ତି ମଧ୍ୟରେ 'ସଦ୍‌ଭାବନା' ପରସ୍ପର ପରିପୂରକତା ଦେଖେ। ପ୍ରକୃତିର ବିଭିନ୍ନ ସୃଷ୍ଟି ମଧ୍ୟରେ ଅର୍ନ୍ତବିରୋଧ ନାହିଁ, କେହି କାହାରି ତିଷ୍ଠି ରହିବାରେ ପରିପନ୍ଥୀ ନୁହନ୍ତି-ଏହି ତତ୍ତ୍ୱର ପରିପୋଷଣ କରେ ସଦ୍‌ଭାବନା।

କିଛି ବର୍ଷ ହେଲା ରାଜୀବ ଗାଂଧିଙ୍କର ଜନ୍ମ ଦିବସକୁ (୨୦ ଅଗଷ୍ଟ) ସରକାରୀ ଉଦ୍ୟମରେ ସଦ୍‌ଭାବନା ଦିବସ ରୂପେ ପାଳନ କରାଯାଉଛି। ଦୂରଦର୍ଶନ ଓ ସଂବାଦପତ୍ର ମାଧ୍ୟମରେ ସଦ୍‌ଭାବନା ଦୌଡ଼ର ଆୟୋଜନ କରାଯାଉଛି; ସଭା ସମିତି ହେଉଛି। ଲୋକଙ୍କ ମନରେ ଏକ ଦୃଢ଼ ଧାରଣା ସୃଷ୍ଟି କରି ଦିଆଗଲାଣି ଯେ, ରାଜୀବ ଗାଂଧି ହେଲେ ସଦ୍‌ଭାବନାର ପ୍ରତୀକ, ଶାନ୍ତିପୂର୍ଣ୍ଣ ଉପାୟରେ ସମାଜ ଓ ଜାତି ଗଠନ ନିମିତ୍ତ ଏକ ବିଶେଷ ଉଦ୍ୟମର ଉତ୍ସ! ତାଂକ ବଳିଦାନ ହେଲା ସଦଭାବନା ଇତିହାସର ଏକ ନୂଆ ଅଧ୍ୟାୟ! ସାଧାରଣ ସ୍ତରରେ ଲୋକ ତ ତାଂକୁ 'ସଦଭାବନା'ର ଜନ୍ମଦାତା ବୋଲି ବିଚାର କଲେଣି।

ପ୍ରକୃତରେ କ'ଣ ରାଜୀବ ଗାଂଧି 'ସଦ୍‌ଭାବନା'ର ପ୍ରତୀକ? କେତେ ମାତ୍ରାରେ ପ୍ରତିବଦ୍ଧତା ଥିଲା ତାଂକର 'ସଦ୍‌ଭାବନା' ପ୍ରତି? ବର୍ତ୍ତମାନ ପରିପ୍ରେକ୍ଷୀରେ ସଦ୍‌ଭାବନା ଦିବସର ପାଳନ କ'ଣ ସଦ୍‌ଭାବନା ସୃଷ୍ଟିରେ ସହାୟକ ହେବ? ପୁଣି, ସଦ୍‌ଭାବନା ଆଳରେ ରାଜୀବ ଗାଂଧି ଭଳି ଏକ ମୃତ ଆତ୍ମାର ସମାଲୋଚନାର କ'ଣ କିଛି ଯଥାର୍ଥତା ଅଛି?

ପଂଚଶୀଳ ନୀତି ସ୍ୱାଧୀନୋତ୍ତର ଭାରତର ଏକ ବିଶେଷ ଅଧ୍ୟାୟ। ଯୁଦ୍ଧ, ଧ୍ୱଂସ ଓ ହତ୍ୟାର ବିକଳ୍ପ ରୂପେ ଦେଶ ଦେଶ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ଉଦ୍ୟମ କରିବା ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ। ସଦ୍‌ଭାବନା ଉପରେ ଏହା ଆଧାରିତ ଏବଂ ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ତାର ଅନ୍ୟତମ ପ୍ରେରଣାର ଉତ୍ସ। କେତେ ପ୍ରତିବଦ୍ଧତା ଥିଲା ନୀତି ପ୍ରତି ପ୍ରେରଣାଦାତାମାନଙ୍କର-

Digitized by srujanika@gmail.com

ସେ ଭିନେ କଥା; ମାତ୍ର ରାଜୀବ ଗାଂଧୀଙ୍କ ରାଜନୈତିକ ଅଭ୍ୟୁଦୟର ବହୁ ପୂର୍ବରୁ 'ସଦ୍‌ଭାବନା' ତା ଦେଇ ବିକଶିତ ହୋଇ ସାରିଛି।

ସ୍ୱାଧୀନତା ଆଂଦୋଳନ ସମୟରେ ଦେଶର ଅନେକ ପ୍ରମୁଖ ବୁଦ୍ଧିଜୀବି ପୁଂଜିବାଦୀ ପ୍ରତିଯୋଗିତାକୁ ସାମାଜିକ ବିକାଶର ପ୍ରକୃତ ବିକଳ୍ପ ରୂପେ ଗ୍ରହଣ କରିଥିଲେ। ଏହି ଗୋଷ୍ଠୀରେ ଦାଦାଭାଇ ନାରୋଜୀଂଙ୍କ ଠାରୁ ଆରଂଭ କରି ନେହେରୁ ଯାଏ ସାମିଲ ଥିଲେ। କିନ୍ତୁ ଆଉ ଏକ ଜାତୀୟତାବାଦୀ ଗୋଷ୍ଠୀ ଥିଲେ ଯେଉଁମାନେ ସଦ୍‌ଭାବନାକୁ ଆଧାର କରି ସାମୂହିକ ବିକାଶ ଏବଂ ଏକ ସଭ୍ୟ ସମାଜର ଗଠନ କଥା ଚିନ୍ତା କରୁଥିଲେ। ମହାତ୍ମା ଗାଂଧି ଥିଲେ ଏହି ଗୋଷ୍ଠୀର ଜଣେ ଅଗ୍ରଗଣ୍ୟ ପୃଷ୍ଠପୋଷକ। ପୁଂଜିବାଦୀ ବିକାଶର ତୀବ୍ର ପ୍ରତିଯୋଗିତା ଏବଂ ସାମ୍ୟବାଦୀ ଶ୍ରେଣୀ ସଂଘର୍ଷର ଉର୍ଦ୍ଧ୍ୱରେ ରହି ସେ ଆବିଷ୍କାର କରିଥିଲେ, 'ସତ୍ୟାଗ୍ରହ', 'ଟ୍ରଷ୍ଟିସିପ', 'ଅହିଂସା ଆଂଦୋଳନ' ତଥା 'ପ୍ରକୃତି ଚିକିତ୍ସା' ଆଦି ଯାହାର ମୁଖ୍ୟ ଆଧାର ଥିଲା ସଦ୍‌ଭାବନା। ସମାଜର ବିକାଶ ନିମନ୍ତେ ଜଣେ ଅନ୍ୟର ପରିପନ୍ଥୀ ହୋଇ ନପାରେ - ସେ ଇଂରେଜ ହେଉ ବା ଅନ୍ୟ କେହି। ସମସ୍ତଂକର ପରସ୍ପର ସହଯୋଗରେ ହିଁ ସମାଜର ଓ ପ୍ରକୃତିର ସୁରକ୍ଷା ସଂଭବ। ତେଣୁ କୌଣସି ଏକ ଜାତି ବା ଶ୍ରେଣୀକୁ ପ୍ରତିଯୋଗିତା ଆଳରେ ହେଉ ବା ସଂଘର୍ଷ ବଳରେ ହେଉ ନିର୍ମୂଳ କରି ବିକାଶର ଧାରାକୁ ତ୍ୱରାନ୍ୱିତ କରାଯାଇ ନପାରେ। ଲକ୍ଷ ଲକ୍ଷ ବର୍ଷ ଧରି ବିଶ୍ୱ ବ୍ରହ୍ମାଣ୍ଡରେ ହଜାର କିସମର ପ୍ରାଣୀ ଓ ଉଦ୍ଭିଦ ତିଷ୍ଠି ରହିବା ମୂଳରେ ରହିଛି ପାରସ୍ପରିକ ନିର୍ଭରଶୀଳତା ବା ପରିପୂରକତା। ଗୋଟାଏ ଗୋଷ୍ଠୀର ପ୍ରତିଷ୍ଠା ପାଇଁ ଭିନ୍ନ ଏକ ଗୋଷ୍ଠୀର ବିନାଶ ଯଦି ଏକ ଅପରିହାର୍ଯ୍ୟ ଆବଶ୍ୟକତା ହୋଇଥାନ୍ତା, କେବେଠୁ ମରା କଟାରେ ଜୀବଜଗତ ଧ୍ୱଂସ ପାଇ ସାରନ୍ତାଣି। ଗାଂଧି ଆଦର୍ଶର ଏ ହେଲା ମୂଳମନ୍ତ୍ର।

ମାତ୍ର ପରସ୍ପର ପରିପୂରକତାକୁ ବୌଦ୍ଧିକତାର ମୂଳଭିତ୍ତ ବୋଲି ଗ୍ରହଣ କରିଥିବା ମହାତ୍ମା ଗାଂଧୀଙ୍କୁ ମଧ 'ସଦ୍‌ଭାବନା'ର ଜନ୍ମଦାତା ବୋଲି ଗ୍ରହଣ କରାଯାଇ ନ ପାରେ। ପ୍ରକୃତିର ଗତିରୀତିକୁ ସ୍ୱାଭାବିକ ଭାବେ ଅନୁଧାନ କରି ତଥା ନିଜର ପୂର୍ବସୂରୀମାନଂଙ୍କର ସୂକ୍ଷ୍ମ ଅନୁଭବ ପ୍ରସୂତ ଜ୍ଞାନକୁ ଆହରଣ କରି ଗାଂଧିଜୀ ସଦ୍‌ଭାବନାକୁ ଆଧାର ମଣିଛନ୍ତି।

ଏହି ପରିପ୍ରେକ୍ଷୀରେ ରାଜୀବ ଗାଂଧିଙ୍କର ଜନ୍ମ ଦିନକୁ 'ସଦ୍‌ଭାବନା ଦିବସ' ବୋଲି ଗଣନା କରିବା ଏବଂ ତା ମାଧମରେ ତାଂକୁ ଜାଣତରେ ହେଉ କିମ୍ବା ଅଜାଣତରେ - ଏକ ମହାନ ତତ୍ତ୍ୱର ମୁଖ୍ୟ ପ୍ରେରଣାଦାତା ବୋଲି ପ୍ରଚାର କରିବା କି ଯୁକ୍ତିଯୁକ୍ତ ? ଇତିହାସ ଏହାର ବିଚାର କରିବ।

Digitized by srujanika@gmail.com

ରାଜୀବ ଗାଂଧିଙ୍କର ପ୍ରଧାନମନ୍ତ୍ରୀତ୍ୱ କାଳରେ ଘଟିଥିବା କେତୋଟି ଘଟଣାର ଆଧାରରେ ତାଂକ ସମର୍ଥକମାନେ କହନ୍ତି ଯେ, 'ସଦ୍‌ଭାବନା' ଥିଲା ରାଜୀବଙ୍କ ଚିନ୍ତାଧାରାର ଏକ ମୌଳିକ ଅଂଗ। ଘଟଣାଗୁଡ଼ିକ ମଧ୍ୟରେ ପଂଜାବ ଚୁକ୍ତି, ଆସାମ ଚୁକ୍ତି, ମିଜୋରାମ ଶାନ୍ତିଚୁକ୍ତି ଓ ଗୋର୍ଖାଲେଣ୍ଡ ଚୁକ୍ତିନାମା ମୁଖ୍ୟ। ପଂଜାବରେ ଚାଲିଥିବା ରକ୍ତାକ୍ତ ସଂଘର୍ଷର ଅବସାନ ପାଇଁ ଶିଖ ନେତୃବୃନ୍ଦଙ୍କ ସହ ରାଜୀବ ଆପୋଷ ଆଲୋଚନା ଆରଂଭ କଲେ; ସ୍ୱାକ୍ଷରିତ ହେଲା ରାଜୀବ-ଲଂଗୱାଲ ଶାନ୍ତିଚୁକ୍ତି। ଅକାଳି ଦଳ ନିର୍ବାଚନରେ ଅଂଶ ଗ୍ରହଣ କରିବାକୁ ରାଜି ହେଲେ; ନିର୍ବାଚନ ହେଲା; କଂଗ୍ରେସ ବଦଳରେ ଅକାଳି ଦଳ କ୍ଷମତାକୁ ଆସିଲେ। ଅଳ୍ପଦିନ ପାଇଁ ହେଉ ପଛେ, ଦେଶର ଜନସାଧାରଣ ମନେକଲେ, ଆପୋଷ କଥାବାର୍ତ୍ତା ମାଧ୍ୟମରେ ପଂଜାବ ସମସ୍ୟାର ସମାଧାନ ହେଲା। ଏଥିପାଇଁ କଂଗ୍ରେସ ଦଳ କ୍ଷମତାଚ୍ୟୁତ ହେବାରୁ ଦଳର ସଭାପତି ଭାବରେ ରାଜୀବଙ୍କୁ ତ୍ୟାଗ ମଧ୍ୟ କରିବାକୁ ପଡ଼ିଲା। ଦେଶର ସାମୂହିକ ସ୍ୱାର୍ଥକୁ ଦଳର ତାତ୍କାଳିକ ସ୍ୱାର୍ଥରୁ ଉର୍ଦ୍ଧ୍ୱରେ ରଖି ସେ ଚୁକ୍ତି ପାଇଁ ହାତ ବଢ଼ାଇଲେ। ଆସାମ ଓ ମିଜୋରାମରେ ମଧ୍ୟ ଅନୁରୂପ ଶାନ୍ତିଚୁକ୍ତି ଅନୁସୃତ କରି ସେ ଦେଶର ଚାରିଆଡ଼େ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ପରିବେଶ ସୃଷ୍ଟି କରିବାର ଉଦ୍ୟମ କଲେ; ସଦ୍‌ଭାବନାର ପରିପୁଷ୍ଟି ହେଲା।

ରାଜୀବ ଗାଂଧି ଥିଲେ ଏକ ଦ୍ୱୈତ ବ୍ୟକ୍ତିତ୍ୱ। ବିଭିନ୍ନ ଚୁକ୍ତିନାମା ବଳରେ ସଦ୍‌ଭାବନାର ପୁଷ୍ଟି କରିବା ଯେମିତି ତାଂକ ବ୍ୟକ୍ତିତ୍ୱର ଏକ ରୂପ ଥିଲା, ଭିନ୍ନ ଏକ ରୂପ ଥିଲା ଆର୍ଥିକ ଉଦାରିକରଣ, କଂପୁଟର ଯୁଗର ସ୍ଥାପନ, 'ଏକବିଂଶ ଶତାବ୍ଦୀରେ ପ୍ରବେଶ', ଆଦି, ନାଁରେ ପୁଂଜିବାଦୀ ବିକାଶ ଓ ତାର ତୀବ୍ର ପ୍ରତିଯୋଗିତାର ଧାରାକୁ ପ୍ରୋତ୍ସାହନ ଦେବା। ଗୋଟାଏ ପକ୍ଷରେ ସଦ୍‌ଭାବନା ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ଉଦ୍ୟମରତ ଥିବାବେଳେ ଅନ୍ୟପକ୍ଷରେ ସେ ବ୍ୟକ୍ତି ସହ ବ୍ୟକ୍ତିର, ଦେଶ ସହ ଦେଶର ତୀବ୍ର ଓ ଅମାନବୀୟ ପ୍ରତିଯୋଗିତାକୁ ସାମାଜିକ ବିକାଶ ଓ ପ୍ରତିଷ୍ଠାର ଚାବିକାଠି ରୂପେ ସ୍ୱୀକୃତି ଦେଇଛନ୍ତି। ଅର୍ଥାତ୍ ରାଜୀବ ଗାଂଧି ହେଲେ ଦୁଇଟି ପରସ୍ପର ବିରୋଧୀ ଚିନ୍ତାଧାରାର ପୃଷ୍ଠପୋଷକ। ଏଥିରୁ ଆଗାମୀ ଦିନର ଇତିହାସ ସ୍ଥିର କରିବ 'ସଦ୍‌ଭାବନା' ପ୍ରତି ତାଂକ ପ୍ରତିବଦ୍ଧତାର ମାତ୍ରା।

କେବଳ ଆର୍ଥିକ ଉଦାରିକରଣ କିଂବା 'ହାଇ ଟେକନୋଲୋଜି' କ୍ଷେତ୍ରରେ ନୁହେଁ, ରାଜୀବ ଗାଂଧିଙ୍କର ଦ୍ୱୈତ ବ୍ୟକ୍ତିତ୍ୱର ଆଭାସ ମିଳେ ସାଧାରଣ ରାଜନୀତିରେ ମଧ୍ୟ। ନିଜ ପ୍ରଧାନମନ୍ତ୍ରୀତ୍ୱ କାଳରେ କେତେ ବିବାଦ ଓ କଳହର ସେ ସୂତ୍ରପାତ କରିଯାଇଛନ୍ତି, ତାର ଇୟତ୍ତା ନାହିଁ। ପ୍ରକୃତରେ ଦେଖିବାକୁ ଗଲେ ତାଂକ 'ସଦ୍‌ଭାବନା'ର ସମସ୍ତ ଉଦ୍ୟମକୁ ସ୍ୱକୃତ ବିବାଦ ଓ କଳହଗୁଡ଼ିକ ତଳିତଳାନ୍ତ କରିପକାନ୍ତି।

Digitized by srujanika@gmail.com

ଉଦାହରଣ ସ୍ୱରୂପ ଶ୍ରୀଲଂକା ପ୍ରଶ୍ନକୁ ନିଆଯାଇପାରେ। ଅନେକ ବର୍ଷ ହେଲା ସେଠି ତାମିଲମାନେ ଏକ ସ୍ୱତନ୍ତ୍ର ଦେଶ ଗଠନ ପାଇଁ ଆଂଦୋଳନ କରୁଛନ୍ତି। ଆଜି କାଶ୍ମୀର ଉଗ୍ରବାଦୀମାନଂକୁ ଯେମିତି ପାକିସ୍ଥାନ ସହଯୋଗ କରୁଛି, ଏହା ଅନସ୍ୱୀକାର୍ଯ୍ୟ ଯେ, ଅତୀତରେ ଭାରତ ସରକାର ମଧ ନିଜଗୁପ୍ତଚର ସଂସ୍ଥା ମାଧମରେ ତାମିଲ ଉଗ୍ରବାଦୀମାନଙ୍କୁ ଶ୍ରୀଲଂକାରେ ସାହାଯ୍ୟ କରିଛି। ୧୯୮୪ ମସିହାରେ ରାଜୀବ ଗାଂଧି କ୍ଷମତାସୀନ ହେବାପରେ ସ୍ଥିର କଲେ, ସ୍ୱତନ୍ତ୍ର ତାମିଲ ଦେଶ ଗଠନ ହେବା ଉଚିତ ନୁହେଁ। ଏଥିପାଇଁ କେବଳ ସରକାରୀ ସାହାଯ୍ୟ ଦେବା ବି ବଂଦ କରିଥିଲେ ଚଳିଥାନ୍ତା; ଆଇ.ପି.କେ. ଏଫ ନାମରେ ସୈନ୍ୟ ପ୍ରେରଣ କରି ସେ ତାମିଲ ଆଂଦୋଳନକୁ ଭଣ୍ଡୁର କରିବାର ଉଦ୍ୟମ କଲେ। 'ଶାନ୍ତି ରକ୍ଷକ' ଆଖ୍ୟା ପାଇଲେ କି ଆଧୁନିକ ଅସ୍ତ୍ର ଶସ୍ତ୍ରରେ ସୁସଜ୍ଜିତ ସାମରିକ ବାହିନୀ ଅତ୍ୟାଚାର ଓ ବଳତ୍କାର କରିବାରୁ ନିବୃତ୍ତ ହେବ? ତାମିଲ ଗଣହତ୍ୟା ଓ ବଳତ୍କାର ଚାଲିଲା ଶ୍ରୀଲଂକାରେ। ରାଜୀବ ହତ୍ୟା କରି ପ୍ରାଣବଳି ଦେଇଥିବା ନାରୀ ଜଣକ ଯେ ଏଭଳି ଗଣ ବଳତ୍କାରର ଶୀକାର ନୁହେଁ, କିଏ କହିବ ଏକଥା? ଏକ ସାର୍ବଭୌମ ରାଷ୍ଟ୍ରର ଆଭ୍ୟନ୍ତରୀଣ ମାମଲାର ସମାଧାନ ପାଇଁ ସୈନ୍ୟବଳ ପଠାଇବା କି କେବେ ସଦ୍‌ଭାବନା?

ଶାନ୍ତି ରକ୍ଷକ ସୈନ୍ୟ ପ୍ରେରଣ କରି କେବଳ ତାମିଲ ନୁହନ୍ତି, ଶ୍ରୀଲଂକା ସହ ମଧ ସେ ଭାରତର ରାଜନୈତିକ ସଂପର୍କକୁ ତିକ୍ତ କଲେ। ଶ୍ରୀଲଂକାର ସାର୍ବଭୌମତ୍ୱକୁ ଅସ୍ୱୀକାର କରି, ଜାତୀୟ ସ୍ୱାଭିମାନକୁ ତିରସ୍କାର କରି ଭାରତ କେତେବେଳେ ସେଠି ତାମିଲ୍‌ମାନଂକୁ ଅନ୍ନ, ବସ୍ତ୍ର ବାଣ୍ଟିଲା ତ, ଆଉ କେବେ ସୈନ୍ୟ ବଳରେ ତାର (ଶ୍ରୀଲଂକାର) ଅନ୍ତରୀଣ ମାମଲାରେ ଅଯଥା ହସ୍ତକ୍ଷେପ କଲା। ଶ୍ରୀଲଙ୍କାବାସୀଂକ ସମ୍ମାନ ଓ ସ୍ୱାଭିମାନରେ କ'ଣ ଏହା ପ୍ରଶ୍ନ ଚିହ୍ନ ନୁହେଁ? 'ବିଗ ବ୍ରଦର' ଭାବ ବା ଅନ୍ୟ ଶବ୍ଦରେ କହିଲେ ଦାଦାଗିରି ବ୍ୟତୀତ କ'ଣ ଭିନ୍ନ କିଛି ଥିଲା ରାଜୀବଂକ ଭାରତର ଉଦ୍ଦେଶ୍ୟ?

କେବଳ ଶ୍ରୀଲଂକା ନୁହେଁ, ମାଲଦ୍ୱିଭ ଓ ନେପାଳ ପରି ପଡ଼ୋଶି ସହ ମଧ ରାଜୀବଂକ ବିଦେଶ ନୀତି ଯୋଗୁଁ ଭାରତର ସଂପର୍କ ତିକ୍ତ ହେଲା। କେବେ ସୈନ୍ୟ ପଠାଇ ମାଲଦ୍ୱିଭରେ ଶାସକ ବିରୋଧୀ ଜନ ଆଂଦୋଳନକୁ ଆମେ ନଷ୍ଟ ବିନଷ୍ଟ କଲୁ, ତ ଆଉ କେବେ ନେପାଳକୁ ଲାଲ ଆଖି ଦେଖାଇ ଚାପ ପ୍ରୟୋଗ କଲୁ। ଏ ସବୁ ପଛରେ ଥିଲା ରାଜୀବ ଗାଂଧିଂକର ମହତ୍ତ୍ୱାକାଂକ୍ଷା, ବିଶ୍ୱର ଏକ ପ୍ରଖ୍ୟାତ ରାଜନେତା ଭାବରେ ତ୍ୱରିତ ପ୍ରତିଷ୍ଠିତ ହେବାର ତୀବ୍ରଇଛା। ଦେଶ୍ର ଦେଶର ଅଂଧ-ରାଷ୍ଟ୍ରବାଦ-ପ୍ରେମୀଂକୁ ଧରି ବିଶ୍ୱ ରାଜନୀତିରେ ଭାରତକୁ ଏକ ମହାଶକ୍ତି କରି ଗଢ଼ିବାର ସେ ସ୍ୱପ୍ନ ଦେଖୁଥିଲେ, ଯାହାକି ଦକ୍ଷିଣ ଏସିଆର ଛୋଟ ଛୋଟ ରାଷ୍ଟ୍ର

Digitized by srujanika@gmail.com

ଉପରେ ବିନା ଦାଦାଗିରିରେ ସଂଭବ ନ ଥିଲା ! ସଦ୍‌ଭାବନାର ଏହା କେଉଁ ରୂପ ? ନିଜକୁ ବିଗ୍‌ବ୍ରଦର ରୂପେ ପ୍ରତିଷ୍ଠିତ କରି କେବେ କ'ଣ ସଦଭାବନାର ପୁଷ୍ଟି ସାଧନ କରାଯାଇପାରେ ? ହୋଇପାରେ ଏହା ଏକ କଳ୍ପନା ବିଳାସ କେବଳ; ମାତ୍ର ଅନ୍ୟକୁ ସମସ୍କଂଧର ସମ୍ମାନ ନ ଦେଇ କି କେବେ ସମାଜରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କଥା ଚିନ୍ତା କରାଯାଇ ପାରେ ?

ରାଜୀବ ଗାଂଧି ଆଜି ଏକ ମୃତ ଆତ୍ମା । ଏହି ଆଲୋଚନା ପାଠ କରି କେବେ ସେ ନିଜ ଚିନ୍ତାଧାରା ପରିବର୍ତ୍ତନ କରିବେ ନାହିଁ। ତାଂକ ଜୀବିତାବସ୍ଥାରେ ମଧ୍ୟ ଏତେ ବଡ଼ ଏକ ଆଶା ପୋଷିବା ସହଜ ହୋଇ ନ ଥାନ୍ତା ! ତେବେ ଏ ଆଲୋଚନାର କ'ଣ କିଛି ଯଥାର୍ଥତା ଅଛି ? ହଁ, କାରଣ ରାଜୀବଂକ ଚିନ୍ତାଧାରାର ବିଷଦ ଆଲୋଚନା ମାଧ୍ୟମରେ ସଦ୍‌ଭାବନା ଦିବସବାଦୀମାନଂକୁ ଚର୍ଚ୍ଚାର ପରିସରକୁ ଆଣିବା ନିମନ୍ତେ ଏହା ଏକ ଉଦ୍ୟମ ମାତ୍ର। ସେମାନେ ଜାଣିବା ଉଚିତ ଯେ, ସଦଭାବନାର ଉତ୍ସ ଯିଏ କେହି ହୁଅନ୍ତୁ ନା କାହିଁକି, କେବଳ ଆଡ଼ଂବର ସହକାରେ ସଦ୍‌ଭାବନା ଦିବସ ପାଳନ କଲେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସଂଭବ ହେବ ନାହିଁ। ପୁଂଜିବାଦୀ ସାମାଜିକ ବିକାଶ, ଅମାନବୀୟ ବ୍ୟକ୍ତି ସଂଘର୍ଷ, ତୀବ୍ର ପ୍ରତିଯୋଗିତା, ପୁଣି ଦେଶ-ଦେଶ ମଧ୍ୟରେ 'ଯୁଦ୍ଧଂ ଦେହି'ର ଡାକରାକୁ ପ୍ରତିଷ୍ଠାର ମୂଳମନ୍ତ୍ର ରୂପେ ଗ୍ରହଣ କଲାପରେ ପରସ୍ପର ଭିତରେ ପରିପୂରକତା ସଂଭବ ନୁହେଁ। ଏହା 'ସଦଭାବନା' ବଦଳରେ କେବଳ ବ୍ୟକ୍ତିପୂଜା ପାଇଁ ସହାୟକ ହେବ - ଏ କଥା ଅନସ୍ୱୀକାର୍ଯ୍ୟ।

◆◆

Digitized by srujanika@gmail.com

# ସଂସ୍କୃତିରେ ସଂକଟ ଓ ଜଗତିକରଣ ସଂଦର୍ଭ

ଇଂରାଜୀ ଭାଷାରେ ନାମକରା ଲେଖକ ନିଜ ପାଣ୍ଡୁଲିପିର ରୟାଲଟି ବାବଦରେ ପ୍ରକାଶକଙ୍କଠାରୁ ଲକ୍ଷ ଗଣନାରେ ଟଙ୍କା ପାଆନ୍ତି। ଶୁଣିଲେ, ବିଶ୍ୱାସ ହୁଏନା। ତେଣୁ ଅଙ୍କର ସଠିକ ହିସାବ ମନେ ରହେନା। ତାର ବିପରୀତ, ଓଡ଼ିଆ ଲେଖକ-ଜଣା କେତେଙ୍କୁ ବାଦ ଦେଲେ - ପ୍ରକାଶକଙ୍କ ଉପରେ ପଡ଼ି ପାଣ୍ଡୁଲିପି ପ୍ରକାଶ କରାନ୍ତି। ରୟାଲିଟି କଥା କିଏ ପଚାରେ? ଇଂଲଣ୍ଡର ଆୟତନ ଓଡ଼ିଶାର ଦେଢ଼ଗୁଣ। ମୂଳ ଇଂରାଜୀ ଭାଷୀ ଲୋକଙ୍କ ସଂଖ୍ୟା ଓଡ଼ିଆ ଅପେକ୍ଷା ବେଶି, କିନ୍ତୁ ଦୁହିଁଙ୍କ ମଧ୍ୟରେ ଥିବା ଅନୁପାତରେ ବହୁତ ତଫାତ ହୋଇ ନ ପାରେ। ହେଲେ ଦୁଇ ଭାଷାର ଲେଖକ ମଧ୍ୟରେ ପାର୍ଥିବ ପାର୍ଥକ୍ୟର ମାତ୍ରା ଅନେକ ବେଶି। ଟିକେ ତଳକୁ ଯଦି ଯିବା, ପ୍ରାୟ ଏକା ଧରଣର ପାର୍ଥକ୍ୟ 'ଓଡ଼ିଆ' ଓ 'ସଂବଲପୁରୀ' ମଧ୍ୟରେ। ପ୍ରାୟ ସ୍ଥିତିରେ ପ୍ରକାଶକ ଓ ଲେଖକ ସଂବଲପୁରୀରେ ଦୁଇଜଣ ଭିନ୍ନ ବ୍ୟକ୍ତିତ୍ୱ ନୁହନ୍ତି। ଲେଖକ ପ୍ରତିଦାନର କୌଣସି ଆଶା ନ ରଖି ଟଙ୍କା ଖର୍ଚ୍ଚ କରନ୍ତି; ପ୍ରକାଶକ ସାଜନ୍ତି।

ଚତୁର୍ଦ୍ଦଶ ଶତାବ୍ଦୀରେ ଲିଖିତ ବଚ୍ଛ ଦାସଂକ କଳସ ଚୌତିଶା ବା ସାରଳା ଦାସଂକ ମହାଭାରତକୁ ଯଦି ଏବର ଓଡ଼ିଆର ଆରଂଭ କାଳ ବୋଲି ଗ୍ରହଣ କରାଯାଏ 'ଇଂରାଜୀ' ତା' ଅପେକ୍ଷା ପୁରୁଣା ନୁହେଁ। ସଂବଲପୁରୀ ନୂଆଁ। ଏହି କେତେ ବର୍ଷ ହେଲା ସ୍ୱତନ୍ତ୍ର ଭାଷା ରୂପେ ସ୍ୱୀକୃତି ପାଇବା ସକାଶେ ତହିଁରେ ଆଂଦୋଳନ ଆରଂଭ ହୋଇଛି। ୧୯୯୦ ମସିହାରେ ପ୍ରକାଶିତ ଧନପତି ମହାପାତ୍ରଂକ 'ବିଳାସିନି' ଉପନ୍ୟାସରେ ଲେଖାଥିଲା, ପ୍ରଥମ ସଂବଲପୁରୀ ଉପନ୍ୟାସ। ସଂବଲପୁରୀ ପଦ୍ୟର ଇତିହାସ ଅବଶ୍ୟ ପୁରାତନ। ମଧ୍ୟପ୍ରଦେଶସ୍ଥ ସଂବଲପୁରଭାଷୀଂକ ସଂଖ୍ୟା ମିଶିଲେ ମୂଳ ସଂବଲପୁରୀବାସୀଂକ ସଂଖ୍ୟା କୋଟିଏରୁ ବେଶି ହେବ; ଓଡ଼ିଆଠାରୁ ବହୁତ କମ ନୁହେଁ।

ଶଂସିତ ନିବଂଧରେ ଆମେ ଇଂରାଜୀ (ସୁବିଧା ପାଇଁ କେତେବେଳେ ହିଂଦୀ), ଓଡ଼ିଆ ଓ ସଂବଲପୁରୀରେ- ଦୁଇଟି ସମସାମୟିକ, ଗୋଟାଏ ନୂଆଁ; ଦୁଇଟି ପ୍ରତିଷ୍ଠିତ, ସ୍ୱୀକୃତି ପ୍ରାପ୍ତ, ଗୋଟାଏ ସ୍ୱୀକୃତି ପାଇଁ ଚେଷ୍ଟାରତ- ଭାଷାକୁ ଭାଷା ଭିତ୍ତିକ କେତୋଟି କ୍ଷେତ୍ରରେ ଯଥା ପ୍ରକାଶନ, ସାଂବାଦିକତା, ଚଳଚ୍ଚିତ୍ର ଶିଳ୍ପ- ରହିଥିବା ପାର୍ଥକ୍ୟ ସଂପର୍କରେ ଆଭାସ ଦେବା। କ୍ରମବର୍ଦ୍ଧିଷ୍ଣୁ ମନ ପାର୍ଥକ୍ୟ ସଂସ୍କୃତିରେ ଏକ ସଂକଟକୁ ଇଂଗିତ କରେ।

Digitized by srujanika@gmail.com

ଏଠି ଜଗତିକରଣ ସଂଦର୍ଭରେ ତାକୁ ଦର୍ଶାଇବା ଆମର ଉଦ୍ଦେଶ୍ୟ। ନିବଂଧର ଏକ ଦୁର୍ବଳତା ଏହି ଯେ, ପାର୍ଥକ୍ୟକୁ ପ୍ରାମାଣିକ କରିବା ପାଇଁ ପରିସଂଖ୍ୟାନର ସାହାଯ୍ୟ ନିଆଯାଇ ନାହିଁ। କାରଣ ଆମର ଧାରଣା, ବଢ଼ୁତି ପାର୍ଥକ୍ୟ ଓଡ଼ିଆ ପାଠକଂକ ନିମନ୍ତେ କୌଣସି ନୂଆ ତଥ୍ୟ ନୁହେଁ। ତେଣୁ ତାର ଆଭାସ ଦେବା ପାଇଁ ପରିସଂଖ୍ୟାନର ଆବଶ୍ୟକତା ନାହିଁ।

ଉଦ୍ଧୃତ ଭାଷାଗୁଡ଼ିକର ଲେଖକୀୟ ସ୍ଥିତିର ଅବିକଳ ପ୍ରତିଫଳନ ପ୍ରକାଶକଙ୍କଠାରେ ମଧ୍ୟ ଦୃଷ୍ଟି ଗୋଚର ହୁଏ। ଇଂରାଜୀ ପ୍ରକାଶକ ବ୍ୟବସାୟରୁ କୋଠା ତୋଳନ୍ତି, ତାଂକ ତଳକୁ ଓଡ଼ିଆ ପ୍ରକାଶକ ବହି ଦୋକାନୀ ସ୍ତରରେ ରହିଯାଚ୍ଛି; ସବା ତଳକୁ ସଂବଲପୁରୀ - ତହିଁରେ ନିୟମିତ ପ୍ରକାଶକ ଶ୍ରେଣୀଟିଏ ତିଆରି ହୋଇ ନାହାନ୍ତି। କୌଣସି ଲାଭ ଆଶାରେ ନୁହେଁ, ନିଜ କୃତିକୁ ଲୋକଲୋଚନକୁ ଆଣିବା ପାଇଁ ଲେଖକ ହିଁ ପ୍ରକାଶକ ସାଜେ ତହିଁରେ।

ଚଳଚ୍ଚିତ୍ର ଏକ ଅର୍ଥକାରୀ ଶିଳ୍ପ; କିନ୍ତୁ ସବୁ ଭାଷାରେ ନୁହେଁ। ହିଂଦୀରେ ଅଭିନେତା, ନିର୍ଦ୍ଦେଶକ, ପ୍ରଯୋଜକ, ସଂଳାପ ଲେଖକ ଆଦିଂକ ଆର୍ଥିକ ଅବସ୍ଥା ଅତି ସ୍ୱଚ୍ଛଳ। ଯେ କୌଣସି ଶିଳ୍ପର ମେନେଜର—ଏକ୍ସିକ୍ୟୁଟିଭ ଶ୍ରେଣୀ ଅପେକ୍ଷା ସେମାନେ କମ୍ ଟଂକାବାଲା ନୁହନ୍ତି। ତା ତଳକୁ ଓଡ଼ିଆର ଅଭିନେତା ଅଭିନେତ୍ରୀଂକ ଚଳଣି ଯୋଗ୍ୟ ରୋଜଗାର। ଶେଷରେ, ସଂବଲପୁରୀରେ ଚଳଚ୍ଚିତ୍ର (ଏ ଯାଏଁ ଗୋଟାଏ ମାତ୍ର, 'ଭୁଖା' ନିର୍ମିତ) ଶିଳ୍ପ ନୁହେଁ, ଏକ ସାମାଜିକ କାମ। ଅଭିନେତା, ନିର୍ଦ୍ଦେଶକ ସମସ୍ତେ ମିଶି ପ୍ରଯୋଜକ ସାଜନ୍ତି; ପାଣ୍ଠି ସଂଗ୍ରହ କରି ଚଳଚ୍ଚିତ୍ର ନିର୍ମାଣ କରନ୍ତି।

ତଦନୁରୂପ ଅବସ୍ଥା ସାଂବାଦିକତା କ୍ଷେତ୍ରରେ। ବିଶିଷ୍ଟ ଇଂରାଜୀ (ଏବଂ ହିଂଦୀ) ପତ୍ର ପତ୍ରିକାର ସଂପାଦକ ମୋଟା ଅଂକର ଦରମା ପାଆନ୍ତି, କାର କିଣନ୍ତି, ଓଡ଼ିଆ ସଂପାଦକ ସରକାରୀ କିରାଣୀ ସ୍ତରର ଦରମା ପାଏ (ଯିଏ ରାଜନୀତିରେ ସଫଳ, ତାଂକ କଥା ଅଲଗା।) ଏବଂ ସଂବଲପୁରୀର ସଂପାଦକ ସଂପାଦକି କରିବା ସାଂଗରେ ପ୍ରେସ କଂପୋଜିଟର ପେଶା ଧରିଥାଏ, ନୋହିଲେ କିରାଣୀଗିରି।

ଉପରୋକ୍ତ ଚିତ୍ରରୁ ପ୍ରତୀତ ହୁଏ ଯେ, ସାହିତ୍ୟ ଓ କଳାର କୌଣସି ଏକ ବିଭାଗରେ ପାର୍ଥିବ ସ୍ୱଚ୍ଛଳତା ଯଦି ରହେ, ଅନ୍ୟ ବିଭାଗରେ ମଧ୍ୟ ତାହା ପରିଦୃଷ୍ଟ ହେବ। ଅନ୍ୟପକ୍ଷରେ ଗୋଟାଏ କ୍ଷେତ୍ରର ଆର୍ଥିକ ଦୁଃସ୍ଥତା ଅନ୍ୟ କ୍ଷେତ୍ରଗୁଡ଼ିକୁ ପରିବ୍ୟାପ୍ତ ହେବ। ଅର୍ଥାତ ଇଂରାଜୀର ପ୍ରକାଶନ ଭାଗ ଯେହେତୁ ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ, ରଚନାକାର ମଧ୍ୟ ତାର ପ୍ରାପ୍ୟ ପାଏ, ଚଳଚ୍ଚିତ୍ର ଶିଳ୍ପ ଲାଭବାନ, ସାମ୍ବାଦିକତା 'ଉଚ୍ଚ'ରେ। ସବୁଗୁଡ଼ିକ ପରସ୍ପରର ପରିପୂରକ। ଏବଂ ଏହାର ଠିକ ବିପରୀତ ସଂକଟଜନକ ସ୍ଥିତି 'ଓଡ଼ିଆ' ଏବଂ 'ସଂବଲପୁରୀ'ର ବିଭିନ୍ନ କ୍ଷେତ୍ରରେ। ବିଚାର

Digitized by srujanika@gmail.com

ଦୃଷ୍ଟିରୁ ଦେଖିଲେ ନିବିଡ଼ ପରିପୂରକତା ରହିବା କଥା ବିଭିନ୍ନ ଭାଷା ମଧ୍ୟରେ ବା ଚଳଚିତ୍ର ଶିଳ୍ପ ଗୁଡ଼ିକରେ। କିନ୍ତୁ ସେମାନେ ପ୍ରତିଯୋଗୀ। ପୁଂଜିବାଦୀ ବ୍ୟବସ୍ଥାର ତଣ୍ଟିକଟା ପ୍ରତିଯୋଗିତା କଳା ଓ ସଂସ୍କୃତି, ଭାଷା ଓ ସାହିତ୍ୟରେ ମଧ୍ୟ ନିଜର ଗହୀରା ଛାପ ଛାଡ଼ିଛି।

ଯୁକ୍ତି ଯଦି ଆଗକୁ ବଢ଼େ, ଦେଖାଯିବ ଯେ, ଏକ ନିର୍ଦ୍ଦିଷ୍ଟ ବର୍ଗ ବା ସଂପ୍ରଦାୟର ରାଜନୈତିକ କ୍ଷମତା, ଆର୍ଥିକ ସ୍ଥିତି, କଳା, ସ୍ଥାପତ୍ୟ, କାରିଗରି, ଭାଷା ଓ ସାହିତ୍ୟ ମଧ୍ୟରେ ଏକ ନିବିଡ଼ ସଂପର୍କ ରହୁଛି। ସମସ୍ତଙ୍କ ମଧ୍ୟରେ ଏକ ଅନୁପୂରକତା। ରାଜନୈତିକ କ୍ଷମତାଧାରୀ ବର୍ଗଙ୍କ ହାତରେ ଅର୍ଥନୈତିକ କ୍ଷମତା ବି ମହଜୁଦ; ତାଂକ ଭାଷା, ସଂସ୍କୃତି, ଆଦି ମଧ୍ୟ 'ଉଚ୍ଚ'ରେ, ଅନୁକରଣୀୟ। ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ବର୍ଗ ରାଜନୈତିକ କ୍ଷମତାଶୂନ୍ୟ ନୁହନ୍ତି, କି ଭାଷା, ସାହିତ୍ୟ, କଳା, ସ୍ଥାପତ୍ୟ ତାଂକର ନ୍ୟୁନ ମାନର ହୋଇ ନ ପାରେ। (ଏହାର ଅର୍ଥ ନୁହେଁ ଯେ, ଉକ୍ତ ବର୍ଗର ସମାଜ ଶ୍ରେଣୀବଦ୍ଧ ନୁହେଁ; ସେଠି ବି 'ଉଚ୍ଚ' 'ନୀଚ' ରହିଥାନ୍ତି।) ଏହା ବୋଧହୁଏ ଗୋଟାଏ ବଡ଼ କାରଣ ଯେଉଁଥିପାଇଁ କି ଛୋଟ, ବାଂଗରା ଆକୃତିର, କିନ୍ତୁ ହିଂଦିଭାଷୀ ଲାଲୁ–ଶରଦ ଯାଦବ ବିରାଟକାୟ, କିନ୍ତୁ ଓଡ଼ିଆଭାଷୀ ବିଜୁ ପଟ୍ଟନାୟକଙ୍କୁ ଦଳୀୟ କ୍ଷମତା ଦୌଡ଼ରେ ଟପିଯାଆନ୍ତି; ସଂବଲପୁରୀ ଭାଷୀ, ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ହେମାନଂଦ ବିଶ୍ୱାଳ ଓଡ଼ିଆ ଭାଷୀ (କଟକି) ମନ୍ତ୍ରୀ ବସନ୍ତ ବିଶ୍ୱାଳଂକ ପଛରେ ପଡ଼ି ରହନ୍ତି; ଯଦିଓ କଂଗ୍ରେସ ଦଳରେ ବସନ୍ତଙ୍କ ଅନୁପ୍ରବେଶ ଢେର୍ ପଛରେ, ଶିକ୍ଷା ଓ ସାଂଗଠାନିକ ଦକ୍ଷତା ମଧ୍ୟ ତଦ୍ରୂପ।

ଜାଗତିକରଣ ନାଁରେ ଜଗତର ସବୁ ରାଜନୈତିକ ଓ ଅର୍ଥନୈତିକ କ୍ଷମତା ଯେମିତି ଠୁଳ ହୁଏ, କ୍ଷମତାର କେଂଦ୍ର ସ୍ଥିରୀକୃତ ହୁଏ, ଭାଷା ଓ ସଂସ୍କୃତିର ବି ସେମିତି 'ରାଜଧାନୀ' ନିର୍ମାଣ ହେବାରେ ଲାଗିଛି। 'ରାଜଧାନୀ' ବିବିଧ ଭାଷା ଓ ସଂସ୍କୃତି ମଧ୍ୟରେ ସମନ୍ୱୟ ରଖେନାହିଁ, ସଂଯୋଜନା କରେ ନାହିଁ; ନିର୍ଦ୍ଦେଶନା ଦିଏ। କେଂଦ୍ର ଆଖପାଖର ଲୋକଂକ ଭାଷା ଓ ସଂସ୍କୃତି ହୁଏ କେଂଦ୍ରର ଭାଷା-ସଂସ୍କୃତି, ଜଗତର ଭାଷା-ସଂସ୍କୃତି, ଅନ୍ୟ ଭାଷା-ସଂସ୍କୃତିର ଅନୁକରଣୀୟ। ଆଂଚଳିକ ସାଂସ୍କୃତିକ ସ୍ୱାତନ୍ତ୍ର୍ୟସବୁକୁ ସଂଖୋଳିବାରେ ନା ତାର ଅନୁରକ୍ତି ରହିଛି, ନା ଆଗ୍ରହ! ଗୋଟାଏ ପକ୍ଷରେ ସବୁକୁ ପ୍ରତିଫଳିତ କରିବା ସଂଭବ ବି ନୁହେଁ। ପରିଣାମ ସ୍ୱରୂପ କେଂଦ୍ର-ଭାଷାର ଏବଂ ତା ଜରିଆରେ ଉପକଣ୍ଠର ସମସ୍ତ ଭାଷା ଓ ସଂସ୍କୃତିର ବ୍ୟାକରଣ, ଶବ୍ଦାବଳୀ, ସଂସ୍କୃତିର ସଂଜ୍ଞା, ରୂପରେଖ ଆଦି କେଂଦ୍ର ନିର୍ଦ୍ଧାରଣ କରେ। ଭାଷା–ସଂସ୍କୃତିଗତ ନୀତି, ନିୟମ ନିର୍ଦ୍ଧାରିତ ହେବାବେଳେ 'ଗ୍ୟାଟ' ଚୁକ୍ତି ସ୍ୱାକ୍ଷରିତ ହୁଏନା, ତେଣୁ ଗୋଟାଏକୁ 'ଉଚ୍ଚ', ଅନ୍ୟମାନଂକୁ 'ନୀଚ' ଏବଂ ଆଉ କାହାକୁ ସବୁଠାରୁ 'ନୀଚ' ମନେ କଲାବେଳେ ଅଧିକ ଯୁକ୍ତିତର୍କର ଆବଶ୍ୟକତା ହୁଏନା।

Digitized by srujanika@gmail.com

ଭାଷା-ସଂସ୍କୃତିରେ ଜଗତିକରଣେ ବା କେନ୍ଦ୍ର ନିର୍ମାଣ ହେବା ଫଳରେ ପରିଣାମ କିଛି କମ ଭୟାବହ ହେବନାହିଁ। ଉପଭାଷାରେ (ଶଂସିତ ନିବଂଧରେ 'ସଂବଲପୁରୀ') କେହି ଲେଖିବାକୁ ନଥିବେ, ସଂସ୍କୃତି ଲୋପ ପାଇଯିବ। କିଛି ବର୍ଷର ଅନ୍ତରାଳରେ 'ଓଡ଼ିଆ' ବି ଏଭଳି ସାଂସ୍କୃତିକ ସଂକଟର ସମ୍ମୁଖୀନ ହେବା ବିଚିତ୍ର ନୁହେଁ।

ଦୃଢ଼ତାର ସହ ଏହି ଧରଣର ଯୁକ୍ତି କଲାବେଳେ ଆମ ପାଖରେ ଅରୁଣାଚଳର ଉଦାହରଣ ରହିଛି। ଅରୁଣାଚଳରେ ୨୬ଟି ମୁଖ୍ୟ ଉପଭାଷା। ଯେଉଁ ଯୁକ୍ତି ବଳରେ ଆଜି ସଂବଲପୁରୀକୁ ଏକ ସ୍ୱତନ୍ତ୍ର ଭାଷା ବୋଲି ଦାବୀ କରାଯାଏ, ସେହି ସବୁ ଯୁକ୍ତି ସାହାଯ୍ୟରେ, ପକ୍ଷଧର ମିଳିଲେ, ୨୬ଟି ଯାକ ଉପଭାଷା 'ଭାଷା'ର ମର୍ଯ୍ୟାଦା ପାଆନ୍ତେ। ତନ୍ମଧ୍ୟରୁ 'ଖାମତି' 'ବୋଲି'ର ସ୍ୱତନ୍ତ୍ର ଲିପି ମଧ୍ୟ ଅଛି। ଅନ୍ୟ ବୋଲିଗୁଡ଼ିକ 'ରୋମାନ' ଲିପିକୁ ଆଦରିଛନ୍ତି। କିନ୍ତୁ ଆଜି ସ୍ଥିତି ଏଭଳି ଯେ, ଆକାଶବାଣୀ ଓ କେସେଟ ଦୟାରୁ ଲିଖିତ କେତୋଟି ଗୀତକୁ ଛାଡ଼ିଦେଲେ (ତନ୍ମଧ୍ୟରୁ ଅନେକ 'ହିଂଦୀ'ର ଅନୁକରଣ।), ଅରୁଣାଚଳର କୌଣସି 'ବୋଲି'ରେ ଲିଖିତ ସାହିତ୍ୟ ନାହିଁ, ଯଦିଓ ପରଂପରାଦତ୍ତ ମୌଖିକ ସାହିତ୍ୟର ଭଣ୍ଡାର ଖୁବ୍ ବିଶାଳ। ଅରୁଣାଚଳର ଜଣେ ସୃଜନଶୀଳ ଲେଖକ ଅହମିଆ ଭାଷାରେ ଦୁଇଟି ଉପନ୍ୟାସ ଲେଖି ସାରିଲେଣି ; ନିଜ ଭାଷାରେ ଲେଖି ନାହାନ୍ତି। ସଂସ୍କୃତିର ସଂକଟ ଏତେ ଭୟାବହ ଯେ, କାନ୍ଥ-ବାଡ଼ରେ ଷ୍ଟିକର ଲାଗିଲାଣି, 'ଲସ ଅଫ୍ କଲଚର, ଲସ ଅଫ ଆଇଡେଣ୍ଟିଟି'। ଭାଷାର ସଂକଟକୁ ତାଂକ ନିଜ ଭାଷା ଓ ଲିପିରେ ଲେଖିବା ପାଇଁ ମଧ୍ୟ ଇଂରାଜୀ ସେଠି ମଉକା ଦେଇନି।

ଅରୁଣାଚଳୀ ଉପଭାଷାଗୁଡ଼ିକରେ ସଂକଟର ଏକ ବଡ଼ କାରଣ ହେଲା ଇଂରାଜୀର ଅନୁପ୍ରବେଶ। ସେଠି ପ୍ରଥମ ଶ୍ରେଣୀରୁ ଇଂରାଜୀ ମାଧ୍ୟମ। ବିଦ୍ୟାଳୟରେ ଦ୍ୱିତୀୟ ଭାଷା ହିଂଦୀ। ସମସ୍ତେ ଯେତେବେଳେ ମାତୃଭାଷା ଜ୍ଞାନରୁ ବଂଚିତ, ଭାଷାଭିତ୍ତିକ ସ୍ୱାଭିମାନ ଆସିବ କେମିତି? ସ୍ଥାନୀୟ ଭାଷାଗୁଡ଼ିକୁ ପ୍ରୋତ୍ସାହିତ ନ କଲାବେଳେ, ଯୁକ୍ତି ଦିଆଯାଏ ବିଶ୍ୱ ପରିପ୍ରେକ୍ଷୀରେ ତାର ଭବିଷ୍ୟତ କ'ଣ? ସାଂସ୍କୃତିକ ସାମ୍ରାଜ୍ୟବାଦ କେତେମାତ୍ରାରେ ଆମ ଅନ୍ତଃମନକୁ ଆକ୍ରାନ୍ତ କରି ରଖିଛି – ତାହା ଏଥିରୁ ପ୍ରମାଣିତ ହୁଏ। ସାଂପ୍ରତିକ ବିଶ୍ୱ ପରିପ୍ରେକ୍ଷୀରେ ଆଂଚଳିକ ଭାଷାର ଭବିଷ୍ୟତ ଅଂଧକାରମୟ!

ଯେଉଁମାତ୍ରାରେ ଇଂରାଜୀ ମାଧ୍ୟମ ସ୍କୁଲର ସଂଖ୍ୟା ବଢ଼ିଛି, କିଛି ବର୍ଷ ପରେ ଓଡ଼ିଆ ଓ ଓଡ଼ିଶାରେ ମଧ୍ୟ ଏଭଳି ଏକ ସଂକଟକୁ ଏଡ଼ାଯାଇ ନ ପାରେ। ସେତେବେଳେ ପାରୁ ନ ଥାନ୍ତୁ ପଛେ, ସଭିଏଁ ଇଂରାଜୀରେ କବିତା ଲେଖୁଥିବେ, ଭାଇ ଭାଇକୁ ଡରେଇବା ବେଳେ ଅସ୍ତଭଳି ଇଂରାଜୀ କାମରେ ଆସୁଥିବ। ସଂବଲପୁରୀରେ ତ ଏବେ ବି ସଂକଟର ମାତ୍ରା ତୀବ୍ର! ଉଭୟ ଇଂରାଜୀ ଓ ଓଡ଼ିଆର ଚାପ ତା ଉପରେ। ପ୍ରମାଣ ପାଇଁ ସ୍ୱୟଂ ଲେଖକର ଅନୁଭୂତି ଶୁଣିଲେ ଯଥେଷ୍ଟ ହେବ।

Digitized by srujanika@gmail.com

ପଶ୍ଚିମାଂଚଳର ଅଧିବାସୀ ହେବା ସତ୍ତ୍ୱେ, ସଂବଲପୁରୀ ଲେଖିବାରେ ତାର ଅସୁବିଧା ଅନୁଭୂତ ହୁଏ; ଓଡ଼ିଆ ଲେଖକ ହୋଇ ଅନେକ ସମୟରେ ସଂବଲପୁରୀ ଶବ୍ଦର ଓଡ଼ିଆ ପ୍ରତିଶବ୍ଦ ଖୋଜିବାରେ ଧଂନ୍ଦି ହୁଏ; ପୁଣି ଇଂରାଜୀ ମାଧ୍ୟମରେ ସର୍ବୋଚ୍ଚ ଡିଗ୍ରୀ ପାଇଲା ପରେ ବି ଶୁଦ୍ଧ ଇଂରାଜୀ ଲେଖିବାର ସାହସ ନ ଥାଏ। ଏ ଅସହାୟତା କେବଳ ଜଣେ ବ୍ୟକ୍ତିର, ନା ଏକ ନିର୍ଦ୍ଦିଷ୍ଟ ଭାଷା—ଭାଷୀ ବର୍ଗ ସମୂହର – ତାହା ଇତିହାସ ନିର୍ଣ୍ଣୟ କରିବ।

ସ୍ଥାପତ୍ୟ, କଳା, ସାହିତ୍ୟ ଆଦି ଏକ ପାରଂପରିକ ସମାଜର ସାଂପ୍ରତିକ ଚିତ୍ର ପ୍ରଦାନ କରନ୍ତି। ନଗ୍ନ, ଅଶ୍ଳୀଳ କଳା ଓ ରଚନା ମଧ୍ୟ ଏ ଦାୟିତ୍ୱରୁ ମୁକ୍ତ ନୁହନ୍ତି। ବିବିଧ ରୂପରେ ସାଂପ୍ରତିକ ସମାଜର ଚିତ୍ର ରହିବା କଥା। ଭବିଷ୍ୟତ ପାଇଁ ସେ ସଂପତ୍ତି ହୁଏ। ଅତୀତର ଏଭଳି ବିବିଧ ଚିତ୍ରକୁ ଆଧାର କରି ଆମେ ଇତିହାସ ଲେଖୁ, ସଂସ୍କୃତିର ସଂଜ୍ଞା ଦେଉ, ଭବିଷ୍ୟତ ନିର୍ମାଣ ସକାଶେ ବ୍ରତୀ ହେଉ। ଚିତ୍ର ଯେତେ ବହୁଧା, ଅତୀତକୁ ଜାଣିବା, ବଖାଣିବା ସେତେ ସହଜ, ସେତେ ଆମୋଦପୂର୍ଣ୍ଣ। କେବଳ ଦୁଇ ଚାରୋଟି ଚିତ୍ରର ସଂପଦ ଭିତ୍ତିରେ ସମଗ୍ର ଅତୀତ ଓ ସମାଜକୁ ବ୍ୟାଖ୍ୟା କରିବା ଅସଂଭବ; ସେ କ୍ଷେତ୍ରରେ ବ୍ୟାଖ୍ୟା ଭ୍ରମାତ୍ମକ ହେବାର ଆଶଂକା ଅଧିକ, ଛବି ଅସଂପୂର୍ଣ୍ଣ ମନେ ହେବା ସ୍ୱାଭାବିକ।

କହିବାର ତାତ୍ପର୍ଯ୍ୟ ହେଲା, ଯଦି ଅଧିକ ଲୋକ ସାହିତ୍ୟ ଲେଖନ୍ତି, ଅନେକ ଭାଷାରେ ସାହିତ୍ୟ ସୃଷ୍ଟି ହୁଏ, ସଂସ୍କୃତି କର୍ମୀଂକ ସଂଖ୍ୟା ଖୁବ ବେଶି, ତେବେ ଭବିଷ୍ୟତର ବଂଶଧରମାନେ ଏବର ବର୍ତ୍ତମାନ ଏବଂ ସେତେବେଳର ଅତୀତକୁ ଅଧ୍ୟୟନ କରି ସମାଜରେ ମୌଳିକ ଚିତ୍ରଟିଏ ନିର୍ମାଣ କରିବାରେ ସଫଳ ହେବେ। ଯଦି ସାହିତ୍ୟ ଓ ସଂସ୍କୃତିର ଏକ ସୀମିତ ନିର୍ଦ୍ଧାରିତ ରୂପକୁ ମୌଳିକ ସତ୍ୟ ବୋଲି ଗାର ଟାଣି ଦିଆଯାଏ ତେବେ ତାହା କତିପୟ ବ୍ୟକ୍ତିର ଛବିମାତ୍ର ହେବ, ସାମାଜିକ ଛବି ହେବ ନାହିଁ।

ତା ଛଡ଼ା, ସାଂପ୍ରତିକ ସ୍ଥିତିରେ ମଧ୍ୟ ସାଂସ୍କୃତିକ ଜଗତିକରଣର ପରିଣାମ କମ ଭୟାବହ ନୁହେଁ। ଭାଷା-ସଂସ୍କୃତିର ପରିସର କେନ୍ଦ୍ରିଭୂତ ନ ହୋଇ ବ୍ୟାପକ ହେଲେ ଏକ ମାନବୀୟ, ସଂବେଦନଶୀଳ ସମାଜ ଗଠନର ପ୍ରକ୍ରିୟା ତ୍ୱରାନ୍ୱିତ ହୁଏ। ଗ୍ରାମ୍ୟ କବି, ନ ହେଉ ପଛେ ସେ 'ବିଶ୍ୱ' ସ୍ତରର, କିନ୍ତୁ ତା କବିତାର ପ୍ରଭାବ ଗାଁରେ ଯୁଗାନ୍ତକାରୀ। ତହିଁରେ ଗାଁ ପ୍ରକୃତି ଓ ପରିବେଶର ପ୍ରତିଛବି ଥାଏ। ତେଣୁ ନିବିଡ଼ ଭାବରେ ଲୋକ ନିଜକୁ ତା ସାଂଗରେ ଯୋଡ଼ିପାରନ୍ତି। କୌଣସି ବିଶ୍ୱସ୍ତରର କଳା ସେଠାରେ ଏତେ ମାତ୍ରାରେ ପ୍ରଭାବଶାଳୀ ହୋଇ ପାରେନା। ଏହା ସ୍ରଷ୍ଟାକୁ ଆତ୍ମସନ୍ତୋଷ ଦିଏ, କଳା ରଚିବାକୁ ପ୍ରେରଣା ଦିଏ; 'ବିଶ୍ୱ' ସ୍ତରର ନ ହେବା ସତ୍ତ୍ୱେ ସେ କଳାକାର ସାଜେ। ସାଂସ୍କୃତିକ ଜଗତିକରଣ ଆଳରେ 'ବିଶ୍ୱ'ଭାଷାର ଏବଂ

Digitized by srujanika@gmail.com

'ବିଶ୍ୱ'ସ୍ତରୀୟ କବି-କଳାକାର ଗଢ଼ିବା ଆଶାରେ ଯଦି ଏଭଳି ଶହ ଶହ ଗ୍ରାମ୍ୟ ବା ସ୍ଥାନୀୟ କବି-କଳାକାରଙ୍କ ଗଳାରୁଦ୍ଧ ହୁଏ, ସମୂହର କଥା କହିବା ପାଇଁ କତିପୟ ଲୋକ ବା ଏକ ନିର୍ଦ୍ଦିଷ୍ଟ ବର୍ଗ ସାଂସ୍କୃତିକ ଠିକାଦାର ସାଜନ୍ତି, ସମାଜ କି ଚେତନା-ଶୂନ୍ୟ ହେବନାହିଁ ? ଜନ ସମୂହକୁ ପଙ୍ଗୁ ବା ମୂକ କରି ଏକ ସଂବେଦନଶୀଳ, ମାନବିକତାପୂର୍ଣ୍ଣ ସମାଜ ଗଠନର ଦାୟିତ୍ୱ କି କେବେ ମୁଷ୍ଟିମେୟ ବୁଦ୍ଧି-ବୈଶ୍ୟ ବୋହି ପାରନ୍ତି ? ପୁଣି, ଯେଉଁ ସମାଜରେ ଅନେକ କଳାକାର, ଅସଂଖ୍ୟ ସ୍ରଷ୍ଟା, ହୁଅନ୍ତୁ ପଛେ ସମସ୍ତେ ଆଂଚଳିକ ସ୍ତରର, ସେଠି ମହାନ ଜଣେ ଉଭୁରିବାର ସଂଭାବନା ରହେ । ବନ୍ଧ୍ୟା ଭୂଇଁରେ ମହାଦ୍ରୁମ ଭଳି ବ୍ୟତିକ୍ରମଟିଏ ଗଜୁରିବା କି କମ୍ କଠିନ ?

ଏଠାରେ ହୁଏତ ସ୍ପଷ୍ଟ ହେବା ଉଚିତ ଯେ, ଜଗତିକରଣ ପ୍ରକ୍ରିୟାରେ ସବୁ ଭାଷା—ସଂସ୍କୃତିର ଅଳ୍ପ କେତୋଟି ମୁଖ୍ୟ କେଂଦ୍ର ସୃଷ୍ଟି ହେଲା ପରି, 'ଓଡ଼ିଆ', 'ସଂବଲପୁରୀ' ଆଦିର ମଧ କେଂଦ୍ରସ୍ଥଳୀ ରହିବା ବିଚିତ୍ର ନୁହେଁ। ସେ କ୍ଷେତ୍ରରେ 'ମୁଖ୍ୟକେଂଦ୍ର'ର 'ତରା' ବା ଉପକଣ୍ଠର ଭାଷା—ସଂସ୍କୃତି ସଂଗେ ସଂବଂଧ ଯାହା, 'ଓଡ଼ିଆ', 'ସଂବଲପୁରୀ'ର ନିଜ ନିଜ 'ତରା' ସାଂଗରେ ସଂପର୍କ ସେମିତି ଏକ ପାଖିଆ। ଏହି କାରଣରୁ ଓଡ଼ିଶାର ଉପକୂଳ ଭିନ୍ନ ଅନ୍ୟ ଅଂଚଳରେ 'ଓଡ଼ିଆ'କୁ 'କଟକି' ବୋଲି ଆରୋପ କରାଯାଏ। ଠିକ ସେହି ରୀତିରେ ବଲାଂଗୀର, କଳାହାଣ୍ଡିରେ 'ସଂବଲପୁରୀ' ସ୍ଥାନରେ 'କୋଶଲୀ' ନାଁ ପାଇଁ ଯୁକ୍ତି ବଢ଼ାଯାଏ। ଏ ସବୁ ବିରୋଧର ସ୍ୱର ମାତ୍ର 'କଟକି', 'ସଂବଲପୁରୀ' ଯାଏଁ ସୀମିତ ନ ରହି ସାଂସ୍କୃତିକ ଜଗତିକରଣ ବିରୁଦ୍ଧରେ ଉଦ୍ଦିଷ୍ଟ ଓ ଉଦ୍‌ବେଳିତ ହୋଇପାରିଲେ ସାଂସ୍କୃତିକ ବିବିଧତାକୁ ବଳ ମିଳିବ — ଏହା ନିଃସଂଦେହ।

(୧୯୯୬)

Digitized by srujanika@gmail.com

# ଆଧୁନିକତାର ବେଳାଭୂମି ଓ

# ଗାଁର ଏକ ରେଖାଚିତ୍ର

କଲିକତା—ମୁମ୍ବାଇ ଛ'ନଂବର ରାଜପଥରେ ବରଗଡ଼ ସହରରୁ ୨୦ କି.ମି. ଆଗକୁ ବଢ଼ିଲେ ଆମ ଗାଁ—ଗର୍ଭଣା। ଲୋକସଂଖ୍ୟା ତିନି ହଜାର ପ୍ରାୟ। ରାଜପଥରେ ଆଉ ଚାରି କି.ମି. ଗଲେ ସୋହେଲା। ଛୋଟ ସହରଟିଏ। ସହର ଆଖ୍ୟା ପାଇବା ପାଇଁ ସେଠି ସରକାରୀ ଉଚ୍ଚ ବିଦ୍ୟାଳୟ, ବେସରକାରୀ କଲେଜ, ଥାନା, ବ୍ଲକ୍ ଏବଂ ତହସିଲ ଅଫିସ। ରାଜପଥରେ ଓଡ଼ିଶାରୁ ମଧ୍ୟପ୍ରଦେଶ ରାସ୍ତାରେ ସୋହେଲା ହିଁ ସୀମାନ୍ତ ସହର। ତେଣୁ ସେଠି ରାଜ୍ୟ କମର୍ସିଆଲ ଟେକ୍ସ ବିଭାଗର ଚେକ୍‌ଗେଟ୍‌ଟିଏ। ରାଜପଥରେ ଦିନକୁ ୧୨ ରୁ ୧୫ ଶହ ମାଲବୋଝେଇ ଟ୍ରକ୍‌ର ଯାତାୟତ। ଗର୍ଭଣା ପାଇଁ ସୋହେଲା ହିଁ ପ୍ରଥମ ସହର, ଆଧୁନିକତାର ଏରୁଣ୍ଡି ବନ୍ଧ, ଦୁଆର ମୁହଁ। ତେଣୁ ସହର ହିସାବରେ ସୋହେଲାର ପ୍ରଭାବ ଗର୍ଭଣାରେ ପଡ଼ିବା ସ୍ୱାଭାବିକ; ଗର୍ଭଣାର ସ୍ଥିତି ଜାଣିବା ନିମିତ୍ତ ସୋହେଲାର ଉଲ୍ଲେଖ ଜରୁରୀ।

ଗର୍ଭଣାରେ ବହୁବର୍ଷର ପୁରୁଣା ମଂଦିରଟିଏ। ମାଟିର ଘର, ଭାଂଗିବା ଅବସ୍ଥାରେ। ଦିଅଁଙ୍କ ଆସ୍ଥାନ ବ୍ୟତୀତ, ଅନ୍ୟ ସାମାଜିକ ଉପଯୋଗିତା ନ ଥିଲା ତାର ଆଉ କିଛି। ନା ସଭାସମିତି ବସୁଥିଲା, ନା ପୁରାଣ ପାଠ ହୋଇ ପାରୁଥିଲା ସେଠି। ଗାଁରେ ଏମିତି କାହାର ଅଗଣା କିଂବା ବାରଣ୍ଡା ନାହିଁ ଯେଉଁଠି ପାଂଚ ସାତ ଜଣଂକର ତାସ ଖେଳିବା, ଖୁସିଗପ କରିବା ପାଇଁ ପ୍ରଶସ୍ତ ଓ ପର୍ଯ୍ୟାପ୍ତ ଯାଗା ଅଛି। ଠିକ ସେମିତି ଗାଁରେ ବାସଯୋଗ୍ୟ ସ୍ଥାନର ଅଭାବ। ଅନେକଂକର ନିଜ ଘରେ ଶୋଇବା ପାଇଁ ଯାଗାନାହିଁ। ତଳ ସ୍ତରରେ ଏ ସମସ୍ୟା ଖୁବ ବେଶି। ଏଭଳି ସ୍ଥିତିରେ ମଂଦିର ଅଗଣା ଓ ବାରଣ୍ଡା ଏକ ସାମୁଦାୟିକ କେନ୍ଦ୍ର, ବେଚଲେର୍ସ ଡର୍ମିଟୋରିର କାର୍ଯ୍ୟ କରିବା କଥା। ଏସବୁ ଯେତେବେଳେ ଆଉ ମଂଦିରର ଭଗ୍ନାବସ୍ଥା ଯୋଗୁଁ ସଂଭବ ହେଲା ନାହିଁ, ତାକୁ ନୂତନଭାବେ ନିର୍ମାଣ କରିବା ଆବଶ୍ୟକ ହୋଇ ପଡ଼ିଲା। ମଂଦିରର ସାମାଜିକ ଆବଶ୍ୟକତା ଏତେ ଅଧିକ ଯେ, ସବୁ ଲୋକ ଏ କାମରେ ମନ ଦେଲେ।

Digitized by srujanika@gmail.com

ବାଧ ନ ହେଲା ଯାଏଁ ଆଜିକାଲି ଆଉ କେହି ମାଟି ଘର ତିଆରୁ ନାହାନ୍ତି। ଅତି ଗରିବ ଲୋକର ମଧ ଇଟା ପକ୍କା ଘର ଅଛି। ପକ୍କା ଘର (କଂକ୍ରିଟ ଛାତ, ପୋଡ଼ା ଇଟା ଓ ସିମେଣ୍ଟର କାନ୍ଥ) କରି ନ ପାରିଲେ ଅତି କମରେ ପୋଡ଼ାଇଟାର କାନ୍ଥ, ସିମେଣ୍ଟ ସ୍ଥାନରେ ମାଟି ଯୋଡ଼ାଇ, କଂକ୍ରିଟ ଛାତ ବଦଳରେ ଖପରିଲ କିମ୍ବା ସ୍ଥାନୀୟ ଭାବେ ଉପଲବ୍ଧ ଏକ ବିଶେଷ ଧରଣର ପଥରର ଛାତରେ ଘର କରୁଛନ୍ତି। ପକ୍କାଘର ତିଆରିବାର ମୋହରେ କେତେ ପରିବାର ଯେ ନିମ୍ନ ମଧ୍ୟବିତ୍ତରୁ ନିମ୍ନ ସ୍ତରକୁ ଖସି ପଡୁଛନ୍ତି ତାର ଇୟତ୍ତା ନାହିଁ। ଏହାର କାରଣ ଅନେକ। ମାଟିଘର ନିର୍ମାଣରେ ଶ୍ରମ ଏକ ମୁଖ୍ୟ ଅଂଶ, ମାତ୍ର ପକ୍କାଘର ନିର୍ମାଣରେ ଶ୍ରମ ଏକ ଗୌଣ ଅଂଶ। ଚାଷୀ ନିଜ ବ୍ୟକ୍ତିଗତ ଶ୍ରମରେ ନା ସିମେଣ୍ଟ ତିଆରି କରି ପାରିବ, ନା ଲୁହାଛଡ଼, ନା ପୋଡ଼ା ଇଟା! ବଜାରରୁ ସବୁ କିଣିବାକୁ ପଡ଼ିବ। ମିସ୍ତ୍ରୀକୁ ମଜୁରୀ ଦେଇ ଆଣିବାକୁ ପଡ଼ିବ। ଛାତ ଢଳେଇ ସମୟରେ ଏପରି କି କାନ୍ଥ ତିଆରି ସମୟରେ ମଧ ମଜୁରିଆ ନିଯୁକ୍ତ କରିବାକୁ ପଡ଼ିବ। ଦ୍ୱିତୀୟରେ ଗ୍ରାମରେ ପକ୍କା ଘରର କୌଣସି ଅର୍ଥକାରୀ ଉପଯୋଗ ନାହିଁ – ନା ଭଡ଼ାରେ ଦେଇ ହେବ, ନା ଦୋକାନ ଖୋଲି ପୁଂଜି ଅର୍ଜନ କରିହେବ।

କେବେ କେବେ ବ୍ୟବହାର ଉପଯୋଗୀ ମାଟିଘରକୁ ଭାଂଗି ପକ୍କା କରିବା ପଛରେ ଆଧୁନିକ ଫେସନ କାମ କରୁଛି ତାହା ସତ। କିନ୍ତୁ କେବଳ ଫେସନ ପାଇଁ ଲୋକ ପକ୍କା ଘର କରନ୍ତି ବୋଲି କହିବା ଠିକ୍ ହେବ ନାହିଁ। ପକ୍କାଘରର ଏକ ସାମାଜିକ ଆବଶ୍ୟକତା ଅଛି। ପ୍ରଥମ, ଏହା ପରିବାରର ସାମାଜିକ ସ୍ତର ବୃଦ୍ଧିରେ ସାହାଯ୍ୟ କରେ। ଦ୍ୱିତୀୟ, ଗାଁର ଭୌଗୋଳିକ ସ୍ଥିତି ଏଭଳି ଯେ, କିଣିବା ପାଇଁ ବାସ ଉପଯୋଗୀ ଜମି ମିଳିବା କଷ୍ଟ ଓ ମହଂଗା। ନୂଆ ଜମି ଖଣ୍ଡିଏ କିଣିବା ଅପେକ୍ଷା ପୁରୁଣା ଘରକୁ ଭାଂଗି ପକ୍କା କଲେ (ଦୁଇ-ତିନି ମହଲା କଲେ) ସଂକୁଚିତ ସ୍ଥାନରେ ଆବଶ୍ୟକ ମାତ୍ରାରେ ବାସୋପଯୋଗୀ ସ୍ଥାନ ମିଳିବାର ସଂଭାବନା ରହେ। ଅବଶ୍ୟ ଅନେକ କ୍ଷେତ୍ରରେ ଦୁଇ ତିନି ମହଲାର ଯୋଜନା ପ୍ରଥମ ମହଲାରୁ ଆଗକୁ ଉଠି ପାରେନା। ତୃତୀୟ, ମାଟି ଘରକୁ ଦୁଇ ତିନି ମହଲା କରି ରହଣି ଯୋଗ୍ୟ ସ୍ଥାନ ବୃଦ୍ଧି ସଂଭବ ନୁହେଁ। ମାଟିଘର ଅତୀତର ଏକ ସୀମିତ ଆବଶ୍ୟକତାକୁ ଦୃଷ୍ଟିରେ ରଖି ତିଆରି ହୋଇଥିଲା। ଏବର ଆବଶ୍ୟକତା (ବିଶେଷ କରି ପରିବାରର ସଭ୍ୟ ସଂଖ୍ୟା ବୃଦ୍ଧି ହେଲା ଉତ୍ତାରୁ) ମେଣ୍ଟାଇବା ପାଇଁ ତାହା ଯଥେଷ୍ଟ ନୁହେଁ। ଚତୁର୍ଥ ପକ୍କା ଘର ଦୀର୍ଘସ୍ଥାୟୀ ହେବାର ବିଶ୍ୱାସ ଏବଂ ଘର ଲିପାପୋଛା କାମଟି ଏଠାରେ ସହଜ।

କହିବାର ତାତ୍ପର୍ଯ୍ୟ ହେଲା, ଲୋକ ନିଜ ଘର ଯେତେବେଳେ ମାଟିରେ ତିଆରିବା ବିରୁଦ୍ଧରେ, ମଂଦିର ଭଳି ସାମୁଦାୟିକ ଗୃହଟିକୁ ପକ୍କା ନ କରିବେ ବା କେମିତି।

Digitized by srujanika@gmail.com

ପକ୍କା ମଂଦିର ନିର୍ମାଣ ଯୋଜନା ପଛରେ ମଧ୍ୟ ଉପରୋକ୍ତ ଯୁକ୍ତିଗୁଡ଼ିକ ପ୍ରଯୁଜ୍ୟ। ତେଣୁ ସ୍ଥିର ହେଲା, ମାଟିଘର ବଦଳରେ ପକ୍କା ମଂଦିରଟିଏ ନିର୍ମାଣ ହେବ।

ଆମ ଅଂଚଳରେ ଦୁଇଟି ବଡ଼ ଗାଁ ସୋହେଲା ଓ ଗର୍ଭଣା। ସୋହେଲା ସହର ହେଲାରୁ ଅନ୍ୟ ଗାଁଗୁଡ଼ିକ ତାର ପ୍ରାଧାନ୍ୟ ସ୍ୱୀକାର କରିବାସତ୍ତ୍ୱେ, ଗର୍ଭଣା ତା କରିନାହିଁ। ବଡ଼ ଗାଁ ହେବା ବ୍ୟତୀତ ଯାର ଅନ୍ୟ ଏକ କାରଣ ହେଲା, ଗର୍ଭଣା ରାଜପଥ କଡ଼ରେ ସ୍ଥିତ। ସୋହେଲା ସଂଗେ ସମାନ ପରିମାଣରେ ଆଧୁନିକତାର ନିକଟବର୍ତ୍ତି ସେ! ତେଣୁ ଆରଂଭରୁ ଉଭୟ ଗାଁ ମଧ୍ୟରେ ପ୍ରତିଯୋଗିତା ଧରଣର ଏକ ପରିବେଶ। ସୋହେଲାରେ ରଥଯାତ୍ରା ହେବ; ଗର୍ଭଣାରେ ମଧ୍ୟ ହେବ। ସୋହେଲାରେ ଦୂର୍ଗାପୂଜା ହେବ; ଗର୍ଭଣାରେ ବି। କୌଣସି କ୍ଷେତ୍ରରେ ସୋହେଲାଠାରୁ ଗର୍ଭଣା ପଛରେ ରହି ନ ପାରେ! କିଛି ବର୍ଷ ହେଲା, ସୋହେଲାରେ କେତୋଟି ଭବ୍ୟ ମଂଦିର ନିର୍ମିତ ହୋଇଛି। ଗର୍ଭଣାରେ ମଂଦିର ନିର୍ମାଣ ଯୋଜନା ବେଳେ ବର୍ତ୍ତମାନ ଉକ୍ତ ମଂଦିରଗୁଡ଼ିକର ସମକକ୍ଷ ହେବା ହିଁ ଲକ୍ଷ୍ୟ ରହିଲା। ଅବଶ୍ୟ ଏ ସଂପର୍କରେ କୌଣସି ଲିଖିତ ପ୍ରସ୍ତାବ ପାସ ହୋଇ ନାହିଁ, କିନ୍ତୁ ଗାଁର ସର୍ବସମ୍ମତ ମତ ହେଲା ସୋହେଲା ଭଳି ଭବ୍ୟ ମଂଦିର ନିର୍ମିତ ହେବ।

ଗର୍ଭଣା ସୋହେଲାକୁ ନିଜ ପ୍ରତିଦ୍ୱଂଦୀ ମନେ କଲେ କ'ଣ ହେବ, ପରିବର୍ତ୍ତିତ ପରିସ୍ଥିତିରେ ସୋହେଲା ଆଉ ଗାଁ ହୋଇ ରହିନାହିଁ। ଏହି କେତୋଟି ବର୍ଷରେ ତାହା ଏକ ବ୍ୟବସାୟିକ ତଥା ପ୍ରଶାସନିକ କେଂଦ୍ର ଭାବେ ଗଢ଼ି ଉଠିଲାଣି। ଗତ ୨୫/୨୭ ବର୍ଷରେ ସୋହେଲାର ଏଭଳି ସହରୀକରଣ ସ୍ଥିତିର ଅନୁକୂଳ ଦିଗ ହେଲା ମଂଦିର ନିର୍ମାଣ (କିଂବା ଦୂର୍ଗାପୂଜା ଇତ୍ୟାଦି ସାମୂହିକ କାର୍ଯ୍ୟ) ପାଇଁ ସେଠି ପାଣ୍ଠିର ଅନେକ ସ୍ରୋତ। ଚେକ୍‌ଗେଟ୍‌ରେ ଟ୍ରକ ସବୁ ଅଟକୁଛନ୍ତି। ଆୟର ସେ ଏକ ବଡ଼ ସ୍ରୋତ। ଏକ ସଂପନ୍ନ ବ୍ୟବସାୟୀ ଗୋଷ୍ଠୀ ଅଛନ୍ତି, କାରଣ ସୋହେଲା ପ୍ରଦେଶର ସୀମାନ୍ତ ସହର। ଚାଂଦା ଦେବାର ସାମର୍ଥ୍ୟ ସେମାନଂକର ଅଛି। ପୁଣି ଅଛନ୍ତି କେତେଜଣ ସରକାରୀ ପଦାଧିକାରୀ। ତାଂକଠାରୁ ଏବଂ ତାଂକ ଜରିଆରେ ପାଣ୍ଠି ସଂଗ୍ରହ କରାଯିବାରେ ଅସୁବିଧା ନାହିଁ। ଅର୍ଥାତ୍ ସାଧାରଣ ଅଧିବାସୀଂକ ଉପରେ ପୁଞ୍ଜି ପାଇଁ ବିଶେଷ ନିର୍ଭର ନ କରି ସୁଦ୍ଧା, ସୋହେଲାର ମଂଦିର ଭବ୍ୟ, ଦର୍ଶନୀୟ!

ଭବ୍ୟ ମଂଦିରଟିଏ ପାଇଁ ଗର୍ଭଣାରେ ପାଣ୍ଠିର ସ୍ରୋତ ଖୁବ ସୀମିତ। ଗାଁର ପ୍ରାୟ ଅଧିକାଂଶ ଲୋକ ଚାଷୀ ମୂଲିଆ। ଚାଂଦା ଦେବାର ସାମର୍ଥ୍ୟ ଖୁବ କମ। ବାଡ଼ି (ବେଠି)ରେ କେବଳ ପରିଶ୍ରମ ଆକାରରେ ଯାହା ଚାଂଦା ଦେଇ ପାରିବେ ଏବଂ ତା'ବି ଚାଷ କାମର ଭୀଡ଼ ନ ଥିବା ସମୟରେ। ମଂଦିର ନିର୍ମାଣ ନିମିତ୍ତ

Digitized by srujanika@gmail.com

ଅବଶ୍ୟ ଶ୍ରମ ଓ ଇଚ୍ଛାଶକ୍ତି ଏକ ବଡ଼ ଆବଶ୍ୟକତା, ମାତ୍ର ସବୁ କିଛି ନୁହଁ। ଅଭିଜ୍ଞ ମହାରଣା (କାରିଗର)ର ମଜୁରୀ, ସିମେଣ୍ଟ ଲୁହାଛଡ଼ ପୋଡ଼ାଇଟା କିଣିବା ପାଇଁ ଟଙ୍କା ଆବଶ୍ୟକ।

ମଂଦିର ପାଣ୍ଠିର ଏକ ମୁଖ୍ୟ ସ୍ରୋତ ହେଲା ଜବାହର ଯୋଜନା, ଇଂଦିରା ଆବାସ ଯୋଜନା ଆଦିରୁ ନିର୍ମାଣ କାର୍ଯ୍ୟ ପାଇଁ ମିଳୁଥିବା ଠିକା। ଗ୍ରାମର ସ୍କୁଲଗୃହ, ପ୍ରୌଢ଼ଶିକ୍ଷା କେଂଦ୍ର, ରାସ୍ତା ମରାମତି/ନିର୍ମାଣ ଇତ୍ୟାଦି ପାଇଁ ଉକ୍ତ ସରକାରୀ ଯୋଜନା ଗୁଡ଼ିକରୁ ଟଙ୍କା ମିଳେ। ଗ୍ରାମସଭାରେ ଗଠିତ 'ଭିଲେଜ କମିଟୀ' ଜଣେ 'ଲିଡ଼ର'ଙ୍କ ନେତୃତ୍ୱରେ କାର୍ଯ୍ୟଗୁଡ଼ିକୁ ସ୍ୱ ତତ୍ତ୍ୱାବଧାନରେ କରେ ଏବଂ ପ୍ରାପ୍ତ ଲାଭକୁ ମଂଦିର କମିଟୀକୁ ଦିଏ। ଏଥିପାଇଁ ପ୍ରାରଂଭିକ ପୁଂଜି ନିବେଶ ଗ୍ରାମ୍ୟ ପାଣ୍ଠୀରୁ ହେବା କଥା। କିନ୍ତୁ ପାଣ୍ଠୀର ଅଭାବ ଯୋଗୁଁ ଅନେକ ସମୟରେ ଲିଡ଼ରଂକୁ ପୁଂଜି ଜୁଟେଇବାକୁ ପଡ଼େ।

ଠିକାଦାରୀ ବ୍ୟବସ୍ଥାକୁ ଦୂର କରିବା ପାଇଁ ଭିଲେଜ କମିଟୀ ଏକ ସୁଂଦର ବିକଳ୍ପ ହେବା କଥା, ମାତ୍ର ଦୁଃଖର କଥା ତା'ହୋଇ ପାରିନାହିଁ। ଏହାର ଏକ ସଂକ୍ଷିପ୍ତ ପରିଚର୍ଚ୍ଚା ହେବା ଦରକାର।

ଭିଲେଜ କମିଟୀର ଲିଡ଼ର ହେବା ନିମିତ୍ତ ବ୍ୟକ୍ତିର ଆର୍ଥିକ ସଂପନ୍ନତା ରହିବା ବାଂଛନୀୟ। ସେ ପୁଂଜି ଅଭିନିବେଶ କରିବେ; ତାଂକ ନାମରେ ଠିକା କାମରେ ଅର୍ଡ଼ର ଓ ବିଲ ତିଆରି ହେବ; କାମ ପାଇଁ ସେ ସରକାରଂକ ଠାରେ (ବ୍ଲକ ଅଫିସ) ଉତ୍ତରଦାୟୀ ରହିବେ। ପ୍ରତିବଦଳରେ ଲାଭର ଏକ ମୁଖ୍ୟ ଅଂଶ ତାଂକ ହାତକୁ ଯିବା ଏବଂ କାମରେ ତାଂକ ଏକଚାଟିଆ ଅଧିକାର ରହିବା ସ୍ୱାଭାବିକ। ପ୍ରକୃତରେ ଦେଖିଲେ 'ଲିଡ଼ର' ହେଲେ ଭିଲେଜ କମିଟୀର ସର୍ବେସର୍ବା ଏବଂ ସଭ୍ୟମାନେ ହେଲେ ତାଂକର ପ୍ରତିକୃତି, ଅନୁଗାମୀ ଅଥବା ନୀରବ ଦ୍ରଷ୍ଟା।

ଗାଁରେ ଭିଲେଜ ଲିଡ଼ର ନାଁରେ ଏକ ନୂଆଁ ଠିକାଦାର ସୃଷ୍ଟି ହେଲା। ଏବେ ଦେଖିବା କଥା ଯେ, ଅନ୍ୟ ଠିକାଦାର ଠାରୁ ସେ କମ ଲାଭଖୋର ନୁହନ୍ତି। ଲାଭ ଯେହେତୁ ମଂଦିର ନିର୍ମାଣ ସକାଶେ ଖର୍ଚ୍ଚ ହେବ (!), ଗାଁରେ ମଧ ଲାଭଖୋରୀକୁ ସ୍ୱୀକୃତି ମିଳିଛି। ଫଳରେ ବାସ୍ତବିକତା ହେଲା, 'ଭିଲେଜ କମିଟୀ' ଦ୍ୱାରା ନିର୍ମିତ ସମସ୍ତ ନିର୍ମାଣ କାର୍ଯ୍ୟ ଶେଷ ନ ହେଉଣୁ, ଛାତରୁ ପାଣି ଗଳୁଛି, କାନ୍ଥ ଭୁଷୁଡ଼ିବା ଉପରେ; ରାସ୍ତା ଓ ପୋଖରୀର ମାଟି କାମ ନ ହୋଇ ବିଲ୍ ଗୃହୀତ। କାର୍ଯ୍ୟଗୁଡ଼ିକ ଗ୍ରାମ ସଭାର ତତ୍ତ୍ୱାବଧାନରେ ସଂପନ୍ନ ହୋଇଥିବାରୁ ସଂପୃକ୍ତ ଅଧିକାରୀ ତାର ଗୁଣାତ୍ମକ ମାନ ତଦାରଖ କରିପାରୁନାହାନ୍ତି; ଡରୁଛନ୍ତି। ଠିକାଦାରୀ କାର୍ଯ୍ୟରେ ମାନ ହ୍ରାସ ହେଲେ ଗାଁଲୋକ ଠିକାଦାରକୁ ଗାଳି ଦେଇ ପାରନ୍ତି, ଅଧିକାରୀଂକଠାରେ ଫେରାଦ ହୁଅନ୍ତି, କାରଣ ଠିକାଦାର ବାହାର ଲୋକ, ପୁଣି ବ୍ୟକ୍ତି ବିଶେଷ ମାତ୍ର। ଏବେ କାର୍ଯ୍ୟ 'ସମୂହ'ର ତତ୍ତ୍ୱାବଧାନରେ। କାହାକୁ ଗାଳି ଦେବେ ?

Digitized by srujanika@gmail.com

ବିରୋଧ ହୁଏ କେବଳ ଭିଲେଜ କମିଟୀର ବା ତା' ଲିଡ଼ରଂକ ବିରୋଧୀ ଗୋଷ୍ଠୀ ପକ୍ଷରୁ। ବିରୋଧର ପ୍ରକୃତ କାରଣ– ପ୍ରାୟ କ୍ଷେତ୍ରରେ ଏଭଳି ଠିକାରେ ଅର୍ଥଲାଭର ଉଜ୍ଜଳ ସଂଭାବନା; ଲକ୍ଷ୍ୟ– ଭିଲେଜ କମିଟୀକୁ କବାୟତ୍ତ କରିବା। ଫଳରେ ଗ୍ରାମରେ ଗୋଷ୍ଠୀ କଂଦଳ ବୃଦ୍ଧି ପାଉଛି।

ଗର୍ଭଣାର ଏକ ବୈଶିଷ୍ଟ୍ୟ ଥିଲା– ଗ୍ରାମ୍ୟ ଏକତା। ତାକୁ ନେଇ ଗାଁରେ ଅନେକ ଶ୍ରୁତି, କିଂବଦନ୍ତୀ। ଗାଁ ବଡ଼ ହେଲେ ସାଧାରଣତଃ ଏକତା ରହେନି। କିନ୍ତୁ କିଂବଦନ୍ତୀଗୁଡ଼ିକର ତାକତ ଏତେ ଅଧିକ ଯେ, ଏବେ ଯାଏଁ ଗର୍ଭଣାରେ ଏକତା ରହିଥିଲା। ଏକତା ଯୋଗୁଁ ସୋହେଲା ସହ ପ୍ରତିଯୋଗିତା କରିବାର ତାର ସାମର୍ଥ୍ୟ ଥିଲା। ମାତ୍ର ଏହି କିଛିବର୍ଷ ମଧ୍ୟରେ ସେ ନଷ୍ଟ ପ୍ରାୟ ସ୍ଥିତିରେ। ତାର ବଡ଼ କାରଣ– ଭିଲେଜ କମିଟୀ, 'ଗ୍ରାମ୍ୟ ବିକାଶ' ନିମନ୍ତେ ସରକାରୀ ଅନୁଦାନ, ପଂଚାୟତ ନିର୍ବାଚନ, ଇତ୍ୟାଦି। ଆଜିକାଲି ଗାଁ ଦୁଇଟି ଗୋଷ୍ଠୀରେ ବିଭକ୍ତ।

ସଂକ୍ଷେପରେ କହିଲେ, ମଂଦିରର ପାଣ୍ଠି ବୃଦ୍ଧି ପାଇଁ ଗ୍ରାମ୍ୟ ବିକାଶ ସକାଶେ ପ୍ରାପ୍ତ ସରକାରୀ ଅନୁଦାନର ଅର୍ଥକାରୀ ଉପଯୋଗ (ଲାଭଖୋରୀ) ଏକ ଆବଶ୍ୟକତା। ଫଳରେ ନିର୍ମାଣ କାର୍ଯ୍ୟର ଗୁଣାତ୍ମକମାନ ହ୍ରାସ ପାଉଛି, ସରକାରୀ ଅନୁଦାନ ବିକାଶ ବଦଳରେ ଗାଁରେ ଗୋଷ୍ଠୀ କଂଦଳ ବୃଦ୍ଧି କରୁଛି ତଥା ଠିକାଦାର ଭଳି ଏକ ଉଚ୍ଚ ବର୍ଗ ସୃଷ୍ଟି କରିଛି; ବାଟ ମାରଣା ଯୋଗୁଁ ଏହି ସୂତ୍ରରୁ ମଂଦିର ସକାଶେ ଯେତେ ମାତ୍ରାରେ ଲାଭ ମିଳିବା କଥା ତାହା ମିଳିନାହିଁ।

ମଂଦିର ପାଣ୍ଠିର ଅନ୍ୟ ଏକ (ଏବଂ ମୁଖ୍ୟ) ସ୍ରୋତ ହେଲା ଗ୍ରାମର ପୋଖରୀ। ମାଛ ମାରିବା ପାଇଁ ପୋଖରୀକୁ ଠିକାରେ ଦେଇ ଆଦାୟ ଅର୍ଥକୁ ମଂଦିର ପାଣ୍ଠିରେ ଜମା କରାଯାଏ। ମଂଦିର ନିର୍ମାଣ ନିମନ୍ତେ ଅଜସ୍ର ଅର୍ଥ ଲୋଡ଼ା, ତେଣୁ ପୋଖରୀର ଅର୍ଥକାରୀ ଉପଯୋଗ ଏକ ଆବଶ୍ୟକତା। ପୋଖରୀ ଠିକାରୁ ଯେତେ ଅଧିକ ଟଂକା ମିଳିଲା, ସେତେ ଭଲ।

ଗାଁରେ ସର୍ବସାଧାରଣ ପୋଖରୀ ପାଂଚୋଟି। ଗ୍ରାମ ପଂଚାୟତ ସେଗୁଡ଼ିକର ମାଲିକ। ବର୍ଷେ ତଳେ ପଂଚାୟତଠାରୁ ସାମାନ୍ୟ କିଛି ଟଂକାରେ ଠିକାରେ ଆଣି ମଂଦିର କମିଟୀ ପୋଖରୀଗୁଡ଼ିକୁ ଲକ୍ଷେ ତେଇଶ ହଜାର ଟଂକାରେ ଠିକାରେ ଦେଇଛି। ପୂର୍ବରୁ ଠିକା ବର୍ଷକ ପାଇଁ ଏବଂ ଟଂକା ୩୦/୪୦ ହଜାରରେ ସୀମିତ ରହୁଥିଲା। ଠିକାଦାର ଜଣେ ଗାଁ ବାହାରର ନବ୍ୟ ସଂପନ୍ନ ବ୍ୟକ୍ତି। ଠିକାରେ ମାଛ ମାରିବା ତାର କେତୋଟି ଧଂଦା ମଧ୍ୟରୁ ଗୋଟାଏ।

ଗାଁରେ ପ୍ରାୟ ୨୬/୨୭ଟି ତିଅର (ମାଛୁଆ) ପରିବାର। ମାଛ ମାରିବା ହେଲା ସେମାନଂକ ମୁଖ୍ୟ ବେଉସା। କେହି ସଂପନ୍ନ ସୂଚୀରେ ନାହାନ୍ତି; ଅନ୍ୟ ନିମ୍ନଜାତିର ଭୂମିହୀନ ବା ଅତିକ୍ଷୁଦ୍ର ଚାଷୀ ଭଳି ସ୍ଥିତି ତାଂକର। ଗାଁକୁ ଲାଗି

Digitized by srujanika@gmail.com

କୌଣସି ନଦୀ, ହ୍ରଦ ନାହିଁ। ସଂପୂର୍ଣ୍ଣ ରୂପେ ପୋଖରୀ ଉପରେ ନିର୍ଭରଶୀଳ ସେମାନେ। ଗାଁର ସେମାନେ ସ୍ଥାୟୀ ବାସିନ୍ଦା; ଚାଷ ଜମି ଏମାନଙ୍କର ଅତି ଅଳ୍ପ; ସରକାରୀ ହିସାବରେ ଅନୁସୂଚିତ ଜାତି, କିନ୍ତୁ ଅଛୁଆଁ ନୁହନ୍ତି; ଏସବୁ ସତ୍ତ୍ୱେ ପିଲାଟି ଦିନରୁ ମୁଁ ଲକ୍ଷ୍ୟ କରିଛି, ତିଅରମାନେ ଅନ୍ୟର ମଜୁରୀ ଖଟନ୍ତି ନାହିଁ। ସ୍ୱତନ୍ତ୍ର ଭାବରେ ଚାଷ ନ ଥାଇ ତଥା କ୍ଷେତ ଉପରେ ପ୍ରତ୍ୟକ୍ଷଭାବେ ନିର୍ଭର ନ କରି ଗାଁରେ କେବଳ ସେମାନେ ହିଁ ବୋଧେ ଜୀବିକା ନିର୍ବାହ କରନ୍ତି।

ପୂରା ବର୍ଷ ପାଇଁ ଠିକାବ୍ୟବସ୍ଥା ଆରଂଭ ପୂର୍ବରୁ ତିଅରମାନେ ନିଜ ତିଆରି ମାଛଧରା ଉପକରଣ ସବୁରେ (ଯଥା– ଧଉଁର, ବେଂଦା, ଥପା, ଥୁପି, ଜାଲ) ମାଛ ଧରନ୍ତି। ସେଥିପାଇଁ ପୋଖରୀର ପାଣିକୁ ଶୁଖାଇବାକୁ ପଡ଼େ ନାହିଁ। ସେଥିରେ ଏକ ସମୟରେ ଅଧିକ ପରିମାଣର ମାଛ ମଧ ମାରିହୁଏ ନାହିଁ। ଗୋଟାଏ ପରିବାର ଦିନକୁ ଅଧ କି.ଗ୍ରା/କି.ଗ୍ରାରୁ ଅଧିକ ମାଛ ଧରି ପାରେ ନାହିଁ। ବର୍ଷସାରା ଏ ପ୍ରକ୍ରିୟା ଚାଲେ– ମାଛ ମିଳେ, ପୋଖରୀର ପାଣି ରହେ। ସବୁଠାରୁ ବଡ଼ କଥା ମାଛ ଗାଁରେ ବିକ୍ରୀ ହୁଏ। ସୀମିତ ପରିମାଣର ମାଛ ବିକ୍ରୀ ପାଇଁ ସହର ଯିବାର ଆବଶ୍ୟକତା ପଡ଼େ ନାହିଁ। ଗାଁରୁ ବଳିଲେ ଯାଇଁ ସହର ଯିବ। ଲୋକ ଧାନ, ଚାଉଳ, ପିଢ଼ିଆ (ମାଛ ଚରାଭାବେ ବ୍ୟବହୃତ ହୁଏ।) ବଦଳରେ ମାଛ କିଣନ୍ତି। ସାଧାରଣ ପରିବାର ମଧ ମାଛ କିଣିବାର ସାହସ ରଖେ। କିଲେ/ଅଧକିଲେ ମାଛ ନ କିଣିଲେ ଗ୍ରାହକର ଇଜ୍ଜତ ଯିବାର ଭୟ ନଥାଏ। ମୋଟ କଥା ହେଲା କେବଳ ସଂପନ୍ନ ଲୋକ ପାଇଁ ନିରାମିଷ ଭୋଜନ ଆରକ୍ଷିତ ନଥାଏ। ଅନ୍ୟମାନେ ମଧ ସାମାନ୍ୟ ଖର୍ଚ୍ଚରେ ଆମିଷ ଖାଇ ପାରନ୍ତି।

ଖରା ଦିନେ ପାଣି ଶୁଖିବାର ଆଶଂକା ଥିଲେ ବା କୋଉ ପୋଖରୀର ପଂକୋଦ୍ଧାର/ମାଟି କାମ ଯୋଜନା ଥିଲେ, ସେଥିରୁ ପାଣି ଯେତେ ସଂଭବ ଅନ୍ୟ ଏକ ପୋଖରୀକୁ ନେଇ, ତାକୁ ଠିକାରେ ଦିଆଯାଏ। ତିଅରମାନେ ମିଶି ଠିକା ନିଅନ୍ତି। ସେହି ସମୟରେ ମାଛ ପାଖ ପଡ଼ୋଶି ଗାଁ ଏବଂ ବରଗଡ଼ ସହରରେ ବିକ୍ରୀ ହୁଏ। ବଳକା ଶୁଖା ମାଛକୁ ସାଇତି ରଖନ୍ତି। ବର୍ଷସାରା ତିଅର ଘରେ ତାଜା ନ ହେଲେ, ଶୁଖୁଆ କିଣିବାକୁ ମିଳେ। ଠିକାରୁ ଆଦାୟ ଟଂକା ଗାଁ ପାଣ୍ଠିକୁ ଯାଏ, ସାମୁଦାୟିକ କାର୍ଯ୍ୟରେ ଖର୍ଚ୍ଚ ହୁଏ। ଗ୍ରାମ ଉନ୍ନୟନ ଗାଁ ପାଣ୍ଠିରେ, ଗାଁର ଅର୍ନ୍ତଶକ୍ତି ବଳରେ ପୂରାହୁଏ। ଗ୍ରାମର ବିକାଶ ପାଇଁ ବାହାର ପାଣ୍ଠିର ଆବଶ୍ୟକ ହୁଏ ନାହିଁ।

ମଂଦିର ଯୋଜନା ଯୋଗୁଁ ଅନ୍ୟୂନ ବର୍ଷକ ପାଇଁ ପୋଖରୀ ଠିକା ଦେବା ସ୍ଥିର ହେଲା। ମାଛ ଚାଷ ହେବ; ଅଧିକ ଟଂକାରେ ଠିକା ଦିଆଯିବ; ପୋଖରୀର ଅର୍ଥକାରୀ ଉପଯୋଗ ହେବ।

Digitized by srujanika@gmail.com

ନୂଆଁ ଠିକା ବ୍ୟବସ୍ଥା ଅନୁଯାୟୀ ଠିକାଦାର ହାତରେ ଅଧିକ ପୁଂଜି ଥିବା କଥା। ସରକାରୀ ଠିକାଦାର ପରି ମୋଟ ଟଂକାର କିଛି ଅଂଶ ଆଗତୁରା ଜମା ଦେବାକୁ ହେବ। ମାଛ ଜାଆଁଳ ଛାଡ଼ିବାକୁ ହେବ; ମାଛ ମାରିବା ପାଇଁ ଘରୋଇ ଉପକରଣ ବଦଳରେ ଫୁଟବଲ ଜାଲ (ବଡ଼ ଜାଲ) ବରଗଡ଼ ବା ସଂବଲପୁର ସହରରୁ ଭଡ଼ାରେ ଆଣିବାକୁ ହେବ। ସହରରେ ମାଛ ବିକ୍ରୀ କରିବାକୁ ବାହନ ଭଡ଼ାରେ ଆଣିବାକୁ ହେବ। ମାଛ ପେକିଂ ପାଇଁ ବରଫ କିଣିବାକୁ ହେବ। ଏ ସବୁ କରିବା ପାଇଁ ଗାଁ ତିଅରର ନା ପୁଂଜି ଅଛି, ନା ସହରିଆ ଯୋଗାଯୋଗ।

ପୋଖରୀର ଅର୍ଥକାରୀ ଉପଯୋଗ ଆରଂଭ ହେଲା ଦିନରୁ ତିଅରମାନଂକର ଭଣାଅଧିକେ ବେଉସା ବଂଦ। ଠିକାଦାରର ମାଛମରା ବେଳେ କେବଳ ଦିନ ମଜୁରିଆର କାମ ତାଂକ ଦେଇ ହେବ। କିନ୍ତୁ ତା'ବି ବର୍ଷରେ ମାତ୍ର କେତୋଟି ଦିନ। ଫଳରେ ଏହି କିଛି ବର୍ଷରେ ଅଧାରୁ ଅଧିକ ତିଅର ପରିବାର ଗାଁ ଛାଡ଼ି ହିରାକୁଦ ବଂଧ ବା ଆଉ କୁଆଡ଼େ ଚାଲି ଗଲେଣି। ଭିଟା ମାଟିର ଆକର୍ଷ କେତୋଟି ପରିବାର ଯାଇ ପାରି ନାହାନ୍ତି। ଭାରି ଅଭାବୀ, ଦୁଷର ଚଳଣି ତାଂକର। କିଏ ଇଟାଭାଟିରେ ଯାଇ କାମ କରୁଛି, ତ କିଏ ସୋହେଲାର କେଉଁ ଦୋକାନରେ କାମ କରୁଛି, ତ ପୁଣି କିଏ କେଉଁ ବ୍ୟବସାୟୀର ଘରୋଇ ସୁରକ୍ଷା କର୍ମୀ ପାଇଟିଛି। ସବୁଠାରୁ ବଡ଼ କଥା– ଏ ସମସ୍ତ କାମରେ ମଜୁରୀ କ୍ଷେତ ମଜୁରିଆରୁ ଅଧିକ ନୁହେଁ, ବରଂ କମ।

ଗାଁରେ ଚାଷୀଠାରୁ ତିଅରର ସ୍ଥିତି ଭିନ୍ନ। ଏକ ନିର୍ଦ୍ଦିଷ୍ଟ ପରିମାଣର ଜମିରେ ଚାଷୀର ପୂର୍ଣ୍ଣ ଅଧିକାର। ତାକୁ ସେ ଚାଷକରୁ ବା ବିକ୍ରୀ। ମାତ୍ର ସମଗ୍ର ଗାଁ ଉପରେ ନିର୍ଭର କରି ବଂଚୁଥିବା ତିଅରର ଗାଁ ବା ସେଠିକା ପୋଖରୀ ଉପରେ କୌଣସି ଔପଚାରିକ ଅଧିକାର ନାହିଁ। ଗାଁରେ ଯଥାସ୍ଥିତି ବଜାୟ ରହିଲେ ହିଁ ତାର ଅନୌପଚାରକ ଅଧିକାର କାଏମ ରହିବ। ପରିବର୍ତ୍ତିତ ପରିସ୍ଥିତିରେ ସେ ନିଜ ଅଧିକାରୁ ବଂଚିତ। ତେଣୁ ଗାଁରେ ତା ପାଇଁ ଆଉ ସ୍ଥାନ ନାହିଁ।

ଠିକା ଯୋଗୁଁ ଗାଁରେ ଏବେ ମାଛ ମିଳିବା ମୁସ୍କିଲ। ଗାଁ ମାଛ ଦୂର ସହରରେ ମିଳିବ। ଏହାର କାରଣ ଅନେକ। କେଜି/ଦୁଇକେଜି ପରିମାଣରେ କିଣିବାର ସାମର୍ଥ୍ୟ ଗ୍ରାମ୍ୟ ଗ୍ରାହକର ନାହିଁ। ପୁଣି କିଣିବା ପାଇଁ ଟଂକା ଦରକାର। ଚାଉଳ, ଧାନ, ପିଡ଼ିଆ ବଦଳରେ ମାଛ ମିଳିବା ନୋହିବ। ତେଣୁ ଗାଁର ସାଧାରଣ ଲୋକପାଇଁ ମାଛ ହେଲା ସପନ। ପୂର୍ବେ କାମ ପାଇଟି ନଥିଲେ ବା ବେବେ ସଉକିଆ ଲୋକ ବନିଶି ପକେଇ, ପାଣିରେ ପଶି ଦୁଇ ଚାରୋଟି ମାଛ ଧରି ପକାନ୍ତି। ପରିଶ୍ରମ କଲେ ବିନା ପଇସାରେ ଯେ କେହି ଲୋକ ମାଛ, କଂକଡ଼ା କେତୋଟି ଯୋଗାଡ଼ କରିପାରେ।

Digitized by srujanika@gmail.com

ଏବେ ମାଛ ଉଦ୍ଦେଶ୍ୟରେ ପୋଖରୀକୁ ଓହ୍ଲାଇଲେ, ଚୋରୀ ଆଖ୍ୟା ମିଳିବ। ଦିନରାତି ଠିକାଦାରର ଜଗୁଆଳି ଜଗିଛି।

ବର୍ଷା ଦିନେ ପୋଖରୀ ବ୍ୟତୀତ କ୍ଷେତଖଳାରେ ବି ମାଛ। ସବୁଗୁଡ଼ିକ ପୋଖରୀର ନୋହିଲେ ବଢ଼ିପାଣିରେ ବାହାରୁ ଚଢ଼ି ପୋଖରୀ ଦେଇ ଆସିଥାନ୍ତି। ବଢ଼ି ପାଣିରେ ସଉକିଆ ଲୋକ ଅନେକ ମାଛ ଖେତ ଖଳାରେ ଧରି ପକାନ୍ତି। ମାଛଧରା ଗୋଟାଏ ଖେଳ କଉତୁକ। ଲାଭକ୍ଷତିର ତରାଜୁ ସେଠି କାମ କରେନି। ତିଅରଠାରୁ ମାଛଧରା ଉପକରଣଟିଏ କିଣି ରଖିଥିଲେ ଚାଷୀ ଲୋକ ବି ଦୁଇ ଚାରି କେଜି ମାଛ ମାରି ପକାଏ। ବଳକା ମାଛକୁ ଶୁଖେଇ ରଖିଲେ, ପରେ ବଡ଼ି, ଆଚାର ପରି ବ୍ୟବହାର କରେ। ଅବଶ୍ୟ ଏବେ ବି କ୍ଷେତବାହାଳି ସବୁ ଠିକାଦାରର ଅଧିକାର ବାହାରେ। କିନ୍ତୁ ଠିକାଦାର ପୋଖରୀ ମୁହଁରେ ବାଉଁଶ ଜାଲି ଲଗାଇଛି। ଏଣିକି ବଢ଼ି ପାଣିରେ ମାଛ ପୋଖରୀ ଭିତରକୁ ପଶି ପାରିବେ; ପୋଖରୀରୁ ଆସି ପାରିବେ ନାହିଁ। ତେଣୁ ପୋଖରୀ ବାହାରେ ମଧ ବାକୀ ଲୋକଂକ ପାଇଁ ମାଛ ନାହିଁ। ଦେଖୁ ଦେଖୁ ଏହି କେତୋଟି ବର୍ଷରେ ସମସ୍ତଂକ ଜାଣତରେ ଆମିଷ ଭୋଜନ ସାଧାରଣ ଚାଷୀ ମୂଲିଆର ଖାଦ୍ୟ ସୂଚିରୁ, ରୁଚିରୁ ଦୂରେଇ ଗଲା। ନୂଆଁ ଭାବେ ଏକ ସ୍ଥିତି ସୃଷ୍ଟି ହେଲା ଯେଉଁଥିରେ କେବଳ ଥିଲାବାଲା ଲୋକ ମାଛ ଖାଇବ ଏବଂ ସେ ପୁଣି ସହରରୁ କିଣି ଆଣି।

ପୋଖରୀର ଅର୍ଥକାରୀ ଉପଯୋଗର ପରିଣାମ ଗାଁର ସାଧାରଣ ସ୍ୱାସ୍ଥ୍ୟ ଉପରେ କିଭଳି ଭାବେ ପଡ଼ିଲା ତା'ବି ଲକ୍ଷ୍ୟ କରିବା କଥା।

ତିଅର ପରି ଠିକାଦାର ଅଳ୍ପ ମାଛ ମାରେ ନାହିଁ, ତା ପାଇଁ ମଜୁରିଆ ନିଯୁକ୍ତ କରେ। ମଜୁରିର ଉଚିତ ଲାଭ ଉଠାଇବା ପାଇଁ ପୁରାଦିନ/ ଲଗାତର ମାଛ ମାରିବା ତା ଲାଗି ଏକ ଅର୍ଥକାରୀ ଆବଶ୍ୟକତା। ମାଛମରା ଉପକରଣ ସହରରୁ ଭଡ଼ାରେ ଆସିବ। ତାର ପ୍ରକୃତ ଉପଯୋଗ ସକାଶେ ଅଧିକ ମାତ୍ରାରେ ମାଛ ମରା ହେବା ଉଚିତ ଏବଂ ତା'ବି ବର୍ଷା ଆରଂଭ ହେବାର ଯଥେଷ୍ଟ ପୂର୍ବରୁ। ଗାଁରେ ମାଛର କେବଳ ଖୁଚୁରା ଗ୍ରାହକ। ତେଣୁ ଜିପ/ଟ୍ରେକରରେ ବରଫ ଦେଇ ମାଛକୁ ତାଳଚେର, ରାଉରକେଲା, ବୁର୍ଲା ଭଳି ଶିଳ୍ପ ନଗରୀର ବଜାରକୁ ଯୋଗାଏ। ସେଠି ମାଛର ଗ୍ରାହକ ବେଶି, ଦର ଅଧିକ।

ଅଳ୍ପ ଦିନରେ ମାଛ ମରା ଯୋଗୁଁ ପୋଖରୀର ପାଣି ଶୁଖିବା ଜରୁରୀ। ନୋହିଲେ ମାଛ ମାରି ହେବ ନାହିଁ। ଫଳରେ ଖରାମାସ ସାରା ବିନା ପୋଖରୀର ପାଣିରେ ଗାଁ ଚଳିବ। ପ୍ରାୟ ତିନି ହଜାର ଲୋକ ଏବଂ ତା'ଠାରୁ ଅଧିକ ସଂଖ୍ୟକ ଗାଈ ଗୋରୁ କେବଳ ବୋରିଂ ଟିଉବେଲ ତଥା କୂଅ ଉପରେ ଆଶ୍ରା କରି ଚଳିବେ।

Digitized by srujanika@gmail.com

ଗାଁରେ ୫ଟି ପଂଚାୟତର ଏବଂ ୩ଟି ବ୍ୟକ୍ତିଗତ କୂଅ। ଯାହାରି ଗଭୀରତା ୩୫/୪୦ ଫୁଟରୁ କମ ନୁହେଁ। ୧୫/୧୬ ବର୍ଷ ପୂର୍ବରୁ ସବୁ ବ୍ୟବହାର ଉପଯୋଗୀ ଥିଲେ। କିନ୍ତୁ ଏହି କିଛି ବର୍ଷ ହେଲା ଗୋଟାକରେ ସୁଦ୍ଧା ଖରା ଦିନେ ପାଣି ରହୁ ନାହିଁ। ଏହାର ମୁଖ୍ୟ କାରଣ ହେଲା, ପୋଖରୀର ପାଣି ଶୁଖିଲାରୁ କୂଅର ପାଣି ସ୍ତର ତଳକୁ ଚାଲିଯାଏ।

ପୋଖରୀ ଓ କୂଅ ଶୁଖିଲା ପରେ ବୋରିଂ ୱେଲ ହିଁ ପାଣିର ଏକମାତ୍ର ବିକଳ୍ପ। ୧୯୭୯ରେ ଗୋଟାଏରୁ ଆରଂଭ ହୋଇ ଆଜି ୧୯୯୬ରେ ୮ଟି ବୋରିଂୱେଲ ବା ନଳକୂଅ। କୂଅ ଅପେକ୍ଷା ନଳକୂଅରୁ ପାଣି କାଢ଼ିବା ସହଜ; କୂଅ ଓ ପୋଖରୀ ଠାରୁ ପାଣି ତାର ପରିଷ୍କାର। କିନ୍ତୁ ସେଥିରୁ ପାଣି କାଢ଼ିବା ସମୟ ସାପେକ୍ଷ। ତା'ଠୁ ବଡ଼ ସମସ୍ୟା କୂଅ ବା ପୋଖରୀ ପରି ନଳକୂଅରୁ ଏକା ସମୟରେ ଅନେକ ଲୋକ ପାଣି କାଢ଼ି ପାରିବେ ନାହିଁ। ତେଣୁ ପାଣି ପାଇଁ ନଳକୂଅ ଆଗରେ ଧାଡ଼ିରେ ଛିଡ଼ା ରହିବାକୁ ହୁଏ। ଏହା ବ୍ୟକ୍ତିକୁ ଆବଶ୍ୟକ ମାତ୍ରାରେ ପାଣି ସଂଗ୍ରହ କରିବାରୁ ବଂଚିତ କରେ। ତୃତୀୟରେ, ପରିବାରରେ ସ୍ତ୍ରୀର (ପାଣି ସଂଗ୍ରହ ସାଧାରଣତଃ ସ୍ତ୍ରୀର କାମ) କାମ ବଢ଼ିଯାଏ।

ଦିନେ ମାଛ ଯେମିତି ସଭିଂକ ଖାଦ୍ୟ ସୂଚୀରେ ସାମିଲ ଥିଲା, ପାଣିରେ ମଧ କାହାରି ସର୍ବସତ୍ୱ ଆରକ୍ଷିତ ନ ଥିଲା। ନଳକୂଅ ପାଣିର ଏକମାତ୍ର ସ୍ରୋତ (ଖରାଦିନ) ହେଲା ପରେ ନୂଆଁଭାବେ ଏ ସମସ୍ୟା ମଧ ଦେଖିବାକୁ ମିଳୁଛି। ଉଣାଅଧିକେ ସହର ଭଳି ସ୍ଥିତି! ଘଣ୍ଟା ଘଣ୍ଟା ଧରି ପାଣି ପାଇଁ ଛିଡ଼ା ହେବା ଅପେକ୍ଷା ପଇସା ଦେଇ କାହା ହାତରେ ପାଣି ଅଣେଇବା ସହଜ। ନୋହିଲେ ପାଣି ସଂଗ୍ରହରେ ଅନେକ ସମୟ ଯିବ। ଦ୍ୱିତୀୟରେ, ଯଦି ପାଣି ସଂଗ୍ରହ ବି ହୁଏ, ଗାଧୋଇବା ପାଇଁ ସମସ୍ତଂକର ବାଥରୁମ ବା ବାଡ଼ିପଟ କାହିଁ? ପୋଖରୀରେ ଘାଟ ଅଛି। ନଳକୂଅ କଡ଼େ, ଗାଁ ଦାଣ୍ଡରେ ସେ ସୁବିଧା କାହିଁ?

ପୁରୁଷଠାରୁ ସ୍ତ୍ରୀ ପାଇଁ ଏ ସମସ୍ୟା ଅଧିକ ଗୁରୁତର। ପୁରୁଷମାନେ ଅଧା ଲଂଗୁଳା ଅବସ୍ଥାରେ ବା ରାତି ଅଧରେ ନଳକୂଅରେ ଭିଡ଼ ନଥିବା ବେଳେ ବା ଗାଁ ବାହାରେ କ୍ଷେତ ବାହାଲିକୁ ଯାଇ ଏବଂ କଷ୍ଟ କଲେ ଗାଧେଇ ପାରିବେ। କିନ୍ତୁ ସ୍ତ୍ରୀ ପାଇଁ ଏ ବିକଳ୍ପ ନାହିଁ। ଖରାଦିନ, ପୋଖରୀ ଶୁଖିବାରୁ ସାଧାରଣ ଉଷ୍ଣତା ବୃଦ୍ଧିପାଏ; ତହିଁରେ ସ୍ତ୍ରୀ (ଏବଂ ବୁଢ଼ା ବୁଢ଼ୀ) ଦିନ ଦିନ ଧରି ଅଗାଧୁଆ ରହେ ବା କାଦୁଅ ପାଣି ଗାଧାଏ। ଘରର ବିଛଣାପତ୍ର, କପଡ଼ାଲତା ସଫା ରହେନି। ପରିଣାମ ଡାକ୍ତରଖାନା ରିପୋର୍ଟ ଅନୁସାରେ ଗର୍ଭଣାର ଅନେକ ପରିବାର କୁଷ୍ଠ ବା ଯକ୍ଷ୍ମା ବା ଉଭୟ ରୋଗରେ ଆକ୍ରାନ୍ତ। ଏକ ଜନାକୀର୍ଣ୍ଣ ଗାଁରେ ପାଣିର ଅଭାବ ଯୋଗୁଁ ଏହି ରୋଗସବୁ ବୃଦ୍ଧି ପାଇବା ସ୍ୱାଭାବିକ।

Digitized by srujanika@gmail.com

ମଣିଷଠାରୁ ଅଧିକ ସମସ୍ୟା ଗାଈ ଗୋରୁଙ୍କର। ଏକ ଅଣଜଳସେଚିତ, କୃଷି ଅନୁନ୍ନତ ଗାଁରେ ମଣିଷଠାରୁ ଗାଈ ଗୋରୁଂକର ସଂଖ୍ୟା ଅଧିକ। ଖରାଦିନେ ପୋଖରୀ ଶୁଖିବାରୁ ସବୁଜଚାରା ମିଳିବା ଦୁଷର। ତେଣିକି ପାନୀୟ ଜଳର ବି ଅଭାବ। ଲୋକ ନଳକୂଅରୁ ପାଣି ନିଜ ବ୍ୟବହାର ପାଇଁ ଯଥେଷ୍ଟ ମାତ୍ରାରେ ସଂଗ୍ରହ କରିପାରୁ ନାହାନ୍ତି ଯେତେବେଳେ, ଗାଈଗୋରୁଂକ ପାଇଁ କ'ଣ ବା କରିବେ? ଗୋଟାଏ ଗାଈକୁ ଦୁଇ ବାଲ୍‌ଟି ପରିମାଣରେ ପାଣି ଦରକାର। ଫଳରେ ଖାଦ୍ୟ କଥା ପରେ, ଗୋରୁଂକୁ ଖରାଦିନ ପେଟପୂରା ପାଣି ଦେଲାଭଳି ଚାଷୀ ମଧ ଗାଁରେ ଖୁବ କମ।

ପାଣିର ସମସ୍ତ ସଂଭାବ୍ୟ ସ୍ରୋତକୁ ଉପଯୋଗ କଲା ପରେ ସୁଦ୍ଧା ମଂଦିର ନିର୍ମାଣର ଗତି ଯାହା, ଶେଷ ହେବା ପାଇଁ ଆଉ ଅନେକ ବର୍ଷ ଲୋଡ଼ା। ମଂଦିର ଶେଷ ହେଲାବେଳକୁ ଭିନ୍ନ କୌଣସି ଏକ କ୍ଷେତ୍ରରେ ସହର ସାଂଗରେ ଗାଁର ପ୍ରତିଯୋଗିତା ଓ ତା'ସକାଶେ ଗାଁର ଅର୍ଥକାରୀ ଉପଯୋଗ ଏକ ଆବଶ୍ୟକତା ହୋଇ ପଡ଼ିଥିବ– ଏକଥା ନିଶ୍ଚିତ। ଯେତେବେଳେ ଅର୍ଥକାରୀ ବ୍ୟବହାରର ହାଓ୍ୱା ଚାରିଆଡ଼େ, ମଂଦିର ତ ଏକ ଉପଜୀବ୍ୟ ମାତ୍ର! ମଂଦିର ପରେ ନୂଆଁ କିଛି ଲକ୍ଷ୍ୟ ନ ରହିବ ବୋଲି କିଏ କହିବ? ପରିଣାମ ସ୍ୱରୂପ ସ୍ୱାଧୀନଭାବେ ଜୀବିକାନିର୍ବାହ କରୁଥିବା 'ତିଅର'ପରି କେତେଲୋକ ଯେ, ଦିନ ମଜୁରିଆ ସ୍ତରକୁ ଖସି ପଡ଼ିବେ ଏବଂ ଅଧୁନା ବିନା ପଇସାରେ ମିଳୁଥିବା କେତେକ ଦ୍ରବ୍ୟ ଯେ ବଜାରରେ ବିକ୍ରୀ ଯୋଗ୍ୟ ସାମଗ୍ରୀ ପାଲଟିବ – ତାହା କଳନା କରିହେବ ନାହିଁ। ପ୍ରଶ୍ନ ଉଠେ, ତା ସତ୍ତ୍ୱେ ଗାଁ କ'ଣ ସହର ହୋଇପାରିବ, ଦେଶ କ'ଣ ବିଦେଶ ହୋଇପାରିବ, ଭାରତ କ'ଣ ଆମେରିକା ହୋଇପାରିବ? ପୁଣି, ଏସବୁ ଯଦି ସମସ୍ୟା ତା ପାଇଁ କେବଳ କ'ଣ ଗାଁବାଲା ଦାୟୀ? 'ଆଧୁନିକତା', 'ପ୍ରତିଯୋଗିତା' ଓ 'ଅର୍ଥକାରୀତା'ର ଅନୁକୂଳ ସ୍ରୋତରେ ସାମିଲ ନ ହୋଇ ତାର ବିପରୀତ ଦିଗରେ ଦୌଡ଼ିବା କ'ଣ ସହଜ? ଯଦି ହଁ, ତେବେ କେତେ ସହଜ ତାହା?

(୧୯୯୬)

◆◆

Digitized by srujanika@gmail.com

# ସଂବଲପୁରୀ ଭାଷା ଆଂଦୋଳନ

ବିବିଧ ସଂସ୍କୃତିରେ ସ୍ୱୟଂ ସଂପୂର୍ଣ୍ଣା ଓଡ଼ିଶାରେ ପଶ୍ଚିମ ଓଡ଼ିଶାର ସ୍ଥାନ କମ୍ ମହତ୍ତ୍ୱପୂର୍ଣ୍ଣ ନୁହେ। ସଂବଲପୁରୀ ନାମରେ ପରିଚିତ ପଶ୍ଚିମ ଓଡ଼ିଶା ସଂସ୍କୃତି ଗତ କେତେ ବର୍ଷ ହେଲା ଭାଷା ସାହିତ୍ୟ, କଳା, କାରିଗରୀ, ଆଦି ବିଭିନ୍ନ କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ଦାବୀ କରୁଥିବାର ଲକ୍ଷ୍ୟ କରାଯାଉଛି। ୧୯୮୦ ଦଶକର ପ୍ରାରଂଭରେ ମଣିଭଦ୍ର ବଂଧ ବିରୋଧୀ ଆଂଦୋଳନ, ନିକଟ ଅତୀତରେ ସଂବଲପୁରୀ ଭାଷା ସମ୍ମେଳନ, କୋଶଳ ପ୍ରଦେଶ ଦାବୀ, ସଂବଲପୁରୀ ଚଳଚ୍ଚିତ୍ର, ସଂବଲପୁରୀ ଭାଷାରେ ଉପନ୍ୟାସ, ଗଳ୍ପ, ଆଦି ଲେଖା, ଏ ସବୁ ସାଂଗକୁ ଯୋଜନାବଦ୍ଧ ଭାବେ ପଶ୍ଚିମ ଓଡ଼ିଶାର ବିଭିନ୍ନ ଐତିହାସିକ ଚରିତ୍ରଙ୍କର ପ୍ରତିଭା ପୂଜା (ଯଥା ସୁରେଂଦ୍ର ସାଏ, ଗଂଗାଧର ମେହେର) ସ୍ୱାତନ୍ତ୍ର୍ୟ ଦାବୀର ଗୋଟାଏ ଲେଖା ଉଦାହରଣ ମାତ୍ର। ବିଭିନ୍ନ ସାମାଜିକ ତଥା ରାଜନୈତିକ କାରଣରୁ ସଂଘଟିତ ଏହି ଉଦ୍ୟମ ଯେ ଏକ ବିଧିବଦ୍ଧ ଆଂଦୋଳନର ରୂପ ନେଲାଣି, ତାହା ଅନସ୍ୱୀକାର୍ଯ୍ୟ। ଆଂଦୋଳନର କାରଣ ବିଶ୍ଳେଷଣ ଅବଶ୍ୟ ଆମର ଉଦ୍ଦେଶ୍ୟ ନୁହେ। ପଶ୍ଚିମ ଓଡ଼ିଶା ସାଂସ୍କୃତିକ ଆଂଦୋଳନ ଏକ ଐତିହାସିକ ସତ୍ୟ ଏବଂ ତାକୁ ବିଚାର ଆଲୋଚନାର ପରିସର ଭିତରକୁ ଆଣିବା ଏକ ସାମାଜିକ ଆବଶ୍ୟକତା। ସେହି ସାମାଜିକ କର୍ତ୍ତବ୍ୟ ପାଳନ ଦିଗରେ ଅଗ୍ରସର ହେବା ଏହି ନିବଂଧର ମୁଖ୍ୟ ଉଦ୍ଦେଶ୍ୟ।

ଉଦାର ଦୃଷ୍ଟିକୋଣରୁ ବିଚାର କଲେ ସ୍ୱାତନ୍ତ୍ର୍ୟତା ଦାବୀର ଏହି ଉଦ୍ୟମକୁ ଜାତୀୟତାବାଦ ଏବଂ ସଂକୀର୍ଣ୍ଣ ଦୃଷ୍ଟିକୋଣରୁ ଆଂଚଳିକତା ବୋଲି ହିଁ କୁହାଯିବ। ଆଂଦୋଳନର ପ୍ରବକ୍ତାମାନେ ଏହାକୁ ଜାତୀୟତା ବୋଲି ଅଭିହିତ କଲାବେଳେ, ଅନ୍ୟମାନେ ତାକୁ ଆଂଚଳିକତାର ଆଖ୍ୟା ଦେବା ସ୍ୱାଭାବିକ। ସଚେତ ଭାବରେ, ଖୋଲା ମନୋଭାବରେ ପୁଣି ନିଜକୁ ଅନ୍ୟ ଗୋଷ୍ଠୀର ସ୍ଥାନରେ ରଖି ପ୍ରସଂଗଟିକୁ ବିଚାରକୁ ନ ନେଲେ, ବୁଦ୍ଧିଜୀବି ଗୋଷ୍ଠୀ କୌଣସି ନା କୌଣସି ପୂର୍ବାଗ୍ରହର ଯେ ଶିକାର ହେବେ ଏଥିରେ ସଂଦେହ ନାହିଁ। ଅତୀତର ଓଡ଼ିଆ ବଂଗଳା-ଭାଷା ବିବାଦ ଓ ଅହମିଆ-ବଂଗଳା ଭାଷା ବିବାଦ ବେଳେ ଏହା ସ୍ପଷ୍ଟ ହୋଇଛି। ଅନ୍ୟଥା ପ୍ରଖ୍ୟାତ ବୁଦ୍ଧିଜୀବିମାନେ ନିଜ ନିଜ ଯୁକ୍ତିରେ ଏଭଳି ପୂର୍ବାଗ୍ରହର ଶିକାର ହୋଇଛନ୍ତି। ଏହି ପରିପ୍ରେକ୍ଷୀରେ ଆଂଦୋଳନର ପ୍ରକୃତ ମୂଲ୍ୟାଂକନ ଯେତିକି କଷ୍ଟସାଧ୍ୟ, ସେତିକି ପରିମାଣରେ ଆବଶ୍ୟକ ମଧ୍ୟ। ଲେଖକ ଏହି ନିବଂଧରେ ଆଂଦୋଳନର ସମସ୍ତ ଦିଗକୁ – ସଂସ୍କୃତି, କଳା,

Digitized by srujanika@gmail.com

ଭାଷା, ସାହିତ୍ୟ, ରାଜନୀତି, ଇତ୍ୟାଦି – ଆଲୋଚନାର ପରିସରକୁ ନ ଆଣି, କେବଳ ଭାଷା ଓ ସାହିତ୍ୟ ସଂବଂଧୀୟ କେତୋଟି ପ୍ରଶ୍ନରେ ସୀମିତ ରଖି, ଏହି ମୂଲ୍ୟାଂକନ ପାଇଁ ପ୍ରୟାସ କରିଛି।

ଆଜି ପର୍ଯ୍ୟନ୍ତ ସଂବଲପୁରୀ (ନିକଟରେ ତାକୁ 'କୋଶଲୀ' ନାମରେ ନାମିତ କରିବା ପାଇଁ ମଧ ଉଦ୍ୟମ ହେଉଥିବାର ଲକ୍ଷ୍ୟ କରାଯାଉଛି। ସଂବଲପୁରୀ ଓ କୋଶଲୀର ବାଦ ବିସଂବାଦରୁ ଦୂରରେ ରହି ଆମେ ନିବଂଧରେ ନିଜ ସୁବିଧା ନିମନ୍ତେ 'ସଂବଲପୁରୀ' ଶବ୍ଦ ବ୍ୟବହାର କରିଛୁ।) ଓଡ଼ିଆର ଏକ ଉପଭାଷା ରୂପେ ହିଁ ସ୍ୱୀକୃତି ପାଇ ଆସିଛି। ଏକ କଥିତ ବା ଉପଭାଷାରୁ ସଂବଲପୁରୀ ଏକ ସ୍ୱୟଂ ସଂପୂର୍ଣ୍ଣ ଭାଷାରେ ପରିଣତ ହେବା ଅବସରରେ ତା ସହିତ ସଂଶ୍ଳିଷ୍ଟ ବ୍ୟକ୍ତିଂକର ମନରେ କିଛି ଆଶା, କିଛି ଆଶଂକା ସୃଷ୍ଟି ହେବା ସ୍ୱାଭାବିକ। ଅଯଥା ଅଧିକ ଆଶାବାନ ହୋଇ ସଂବଲପୁରୀ ଏବେ ଓଡ଼ିଆ ସହ ତାର ସାମଂଜସ୍ୟକୁ ଅସ୍ୱୀକାର କରି ନ ପାରେ। ବରଂ ପ୍ରାରଂଭିକ ସ୍ତରରେ ତାକୁ ଓଡ଼ିଆରୁ ଶିକ୍ଷା କରିବାର ଅଛି ଯେତିକି, ଓଡ଼ିଆକୁ ଶିକ୍ଷା ଦେବାର ବି ଅଛି ସେତିକି। ସଂବଲପୁରୀର ସ୍ୱାତନ୍ତ୍ର୍ୟ ଦାବୀ ଓଡ଼ିଆ ପାଇଁ, ଅନ୍ୟ ପକ୍ଷରେ, କ୍ଷତିକାରକ ବୋଲି ଆଶଂକା କରିବା ମଧ ଅମୂଳକ। ଉଭୟ ଭାଷା ମଧରେ ଆଦାନ ପ୍ରଦାନର ଧାରା ସୁଚାରୁ ରୂପେ ପ୍ରବାହିତ ହେଲେ ତଥା ଗୋଟାଏ ଭାଷା ଅନ୍ୟର ପରିପୂରକ (ପ୍ରତିଯୋଗୀ ନୁହେଁ) ହୋଇ ପାରିଲେ ହିଁ ଉଭୟଂକର ଉତ୍ତରୋତ୍ତର ଉନ୍ନତି ସାଧିତ ହେବ।

ସଂବଲପୁରୀ ଭାଷାର ଏକ ବଡ଼ ବିଶେଷତ୍ୱ ହେଲା 'ହଲନ୍ତ' ଏବଂ ଚଂଦ୍ରବିଂଦୁ। ହିଂଦୀ ଓ ଛତିଶଗଡ଼ି ଲୋକଭାଷାର ପ୍ରଭାବ ଯୋଗୁଁ ହୁଏତ, ପ୍ରାୟ ସଂବଲପୁରୀ ଶବ୍ଦରେ 'ହଲନ୍ତ' ଏବଂ ଉଚ୍ଚାରଣ ବେଳେ ନାସିକୀକରଣ ଯୋଗୁ ଚଂଦ୍ରବିଂଦୁ ରହିଥାଏ। କଥିତ ଭାଷା ଗୁଡ଼ିକରେ ଏପରି ବୈଶିଷ୍ଟ୍ୟ ସବୁ ରହିବା ଅସ୍ୱାଭାବିକ ନୁହେଁ। କିନ୍ତୁ ଲିଖିତ ଭାଷାରେ ଏହାର ଆଧିକ୍ୟ ସମସ୍ୟା ସୃଷ୍ଟି କରିପାରେ। ସାଧାରଣତଃ ଏକ ନିର୍ଦ୍ଦିଷ୍ଟ ଶବ୍ଦ ବା ମାତ୍ରାର ବାରଂବାର ବ୍ୟବହାର ଲେଖା-ପଢ଼ାର ସାବଲୀଳ ଗତିରୋଧ କରେ। ଅନେକ ସମୟରେ ଏଥିଯୋଗୁଁ ପଢ଼ା ଲେଖା ଅସହଜ ହୁଏ। ସଂବଲପୁରୀ ଭାଷୀ ଅନେକ ସଂବଲପୁରୀ ସ୍ଥାନରେ ଓଡ଼ିଆ ବ୍ୟବହାର କରିବାକୁ ସହଜ ଅନୁଭବ ତଥା ପସଂଦ କରୁଥିବାର ଏକ ମୁଖ୍ୟ କାରଣ ହେଲା ହଳନ୍ତ ଓ ଚଂଦ୍ରବିଂଦୁର ବାରଂବାର ପ୍ରୟୋଗ। ଏତଦ୍‌ବ୍ୟତୀତ ଏକ ନିର୍ଦ୍ଦିଷ୍ଟ ଅକ୍ଷର ବା ମାତ୍ରାର ବାରଂବାର ପ୍ରୟୋଗ ମୁଦ୍ରଣ ସମୟରେ ମଧ ଅସୁବିଧା ସୃଷ୍ଟି କରିବା ସ୍ୱାଭାବିକ। ଏହିଭଳି ବ୍ୟବହାରିକ ସମସ୍ୟାଗୁଡ଼ିକୁ ଏକ ଲୋକପ୍ରିୟ ଭାଷା ଅବା ସାହିତ୍ୟରେ କଳ୍ପନା କରାଯାଇ ପାରେନା। ଯଦିଓ ପ୍ରଚଳିତ ହାତ କଂପୋଜିଂର ପ୍ରଭାବ ନିକଟ ଭବିଷ୍ୟତରେ ସଂପୂର୍ଣ୍ଣ ରୂପେ ଊଣା ହେବାର ଆଶା ଦେଖାଯାଉ ନାହିଁ, ତଥାପି ଅତ୍ୟାଧୁନିକ

Digitized by srujanika@gmail.com

କାରିଗରୀ ଜ୍ଞାନର ଉପଯୋଗ ହୁଏତ ମୁଦ୍ରଣ ଜନିତ ସମସ୍ୟାକୁ ଦୂର କରି ଦେବ। କିନ୍ତୁ ପଢ଼ା-ଲେଖାର ଗତିକୁ ତ୍ୱରାନ୍ୱିତ କରିବା କଷ୍ଟ। ତେଣୁ କହିଲା ବେଳେ ହଳନ୍ତ ଓ ଚଂନ୍ଦ୍ରବିଂନ୍ଦୁକୁ ଅତୁଟ ରଖି, ଲେଖା ବେଳେ ସେଗୁଡ଼ିକୁ ଯଥା ସଂଭବ ହ୍ରାସ କରିବା କଥା ସଂବଲପୁରୀ ଭାଷାବିଦମାନଂକୁ ଚିନ୍ତା କରିବାକୁ ପଡ଼ିବ।

ଶବ୍ଦରେ ହଳନ୍ତର ଆଧିକ୍ୟ ବିଶେଷ ଭାବେ ହିଂଦୀର ପ୍ରଭାବ ଯୋଗୁଁ। ମାତ୍ର ଅଧୁନା ହିଂଦୀରେ ମଧ ଉଚ୍ଚାରଣ ଥିବା ସ୍ଥଳେ ଲେଖିବା ବେଳେ ଅନେକ ସମୟରେ ତାର ପ୍ରୟୋଗ ଆଉ ଦୃଷ୍ଟିଗୋଚର ହେଉ ନାହିଁ। ଓଡ଼ିଆରେ ମଧ ତଦନୁରୂପ ସ୍ଥିତି। ନିମ୍ନୋକ୍ତ କେତୋଟି ହିଂଦୀ ଓ ଓଡ଼ିଆ ଶବ୍ଦର ଉଦାହରଣରୁ ଏହା ସ୍ପଷ୍ଟ ହେବ।

**ହିଂଦୀ ଶବ୍ଦ**

| *ଲେଖାରେ* | *ଉଚ୍ଚାରଣରେ* |
|---|---|
| ଘର | ଘର୍ |
| ଆଦମି | ଆଦ୍‌ମି |
| ସୁଂଦର | ସୁଂଦର୍ |

**ଓଡ଼ିଆ ଶବ୍ଦ**

| *ଲେଖାରେ* | *ଉଚ୍ଚାରଣରେ* |
|---|---|
| ଉପନ୍ୟାସ | ଉପନ୍ୟାସ୍ |
| ଅଭାବ | ଅଭାବ୍ |
| ପ୍ରଭାବ | ପ୍ରଭାବ୍ |
| କାରଣ | କାରଣ୍ |

କୌଣସି ଭାଷା-ସାହିତ୍ୟର ଲୋକପ୍ରିୟତା ନିମନ୍ତେ ତାର ସହଜତା, ସରଳତା ପ୍ରତି ପ୍ରଥମେ ଦୃଷ୍ଟି ଦେବା ବାଂଛନୀୟ। ସାମାଜିକ ସ୍ୱୀକୃତି ପାଇଁ ଆଇନ ପ୍ରଣୟନ ଅବା ସରକାରୀ କଳର ସହଯୋଗ ଠାରୁ ଅଧିକ ଆବଶ୍ୟକତା ଲୋକପ୍ରିୟତାର। ଯେଉଁ ଭାଷା ଯେତେ ସହଜ, ଯେତେ ସରଳ ତଥା ଯେତେ ରକ୍ଷଣଶୀଳତାରୁ ମୁକ୍ତ, ସେହି ଭାଷା ସେତେ ଅଧିକ ଲୋକପ୍ରିୟ ମଧ। ତେଣୁ ବିଶ୍ୱର ସମସ୍ତ ବିକଶିତ ଭାଷାମାନଂକରେ ସରଳୀକରଣ ନିମିତ୍ତ ଆଜି ଚାଲିଛି ଭାଷା ଆଂଦୋଳନ, ଲିପି ସଂସ୍କାର। ଅତ୍ୟଧିକ ରକ୍ଷଣଶୀଳତା ପଶ୍ଚିମ ଦେଶମାନଙ୍କରେ ଲାଟିନ ଏବଂ ଭାରତରେ ସଂସ୍କୃତ ଭାଷାର ଅଧୋପତନ ପାଇଁ ଦାୟୀ। ଏହି ପରିପ୍ରେକ୍ଷୀରେ ସଂବଲପୁରୀକୁ ମଧ ଲିପି ସଂସ୍କାର ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ। କ୍ରମାନ୍ୱୟରେ ହଳନ୍ତ ଓ ଚଂନ୍ଦ୍ରବିଂନ୍ଦୁର ଯଥା ସଂଭବ ହ୍ରାସ ସେ ଦିଗରେ ପ୍ରାକ୍ ଉଦ୍ୟମର ଆରଂଭ ମାତ୍ର ହେବ।

Digitized by srujanika@gmail.com

ସଂବଲପୁରୀ ଶବ୍ଦ ଭଣ୍ଡାର ଅତି ମାତ୍ରାରେ ସୀମିତ। ଆରମ୍ଭ କାଳରେ ସବୁ ଭାଷାରେ ଏହି ସମସ୍ୟା। ଏଥିପାଇଁ ସଂବଲପୁରୀକୁ କୁଣ୍ଠା ପ୍ରକାଶ କରିବାର କୌଣସି କାରଣ ନାହିଁ। ଆଜି ଯୋଗାଯୋଗର ବିସ୍ତାର ସାଂଗକୁ ଆଧୁନିକ ମଣିଷର ଦୃଷ୍ଟିକୋଣର ମଧ ବିସ୍ତୃତି ଘଟିଛି। ସୀମିତ ଶବ୍ଦ ଭଣ୍ଡାର ବ୍ୟକ୍ତିର ସମସ୍ତ ଅଭିବ୍ୟକ୍ତିକୁ ପ୍ରକାଶ କରିବା ନିମିତ୍ତ ଯଥେଷ୍ଟ ନୁହେଁ। ଫଳରେ ଯେଉଁ ସମାଜ ଯେତେ ଗତିଶୀଳ ତାର ଭାଷା ଓ ସାହିତ୍ୟ ମଧ ସେତେ ବିକଶିତ, ପରିବ୍ୟାପ୍ତ। ସଂବଲପୁରୀ ଶିକ୍ଷିତ ସମାଜ ମଧ ନିଜ ଚିନ୍ତା ଓ ଚେତନାର ପ୍ରକୃତ ଅଭିବ୍ୟକ୍ତି ପାଇଁ ଏକ ବୃହତ ଶବ୍ଦାବଳୀର ଆବଶ୍ୟକତା ଅନୁଭବ କରନ୍ତି। ତେଣୁ ତାର ଶବ୍ଦ ଭଣ୍ଡାରକୁ ଅନ୍ୟଭାଷାରୁ - ମୁଖ୍ୟତଃ ଓଡ଼ିଆ - ଶବ୍ଦମାନ ଆହରଣ କରିବାକୁ ପଡ଼ିବ।

ସମାଜର ଗତିଶୀଳତା ସହ ତାଳ ଦେଇ ପ୍ରତ୍ୟେକ ଭାଷା ନିଜ ନିଜର ଆବଶ୍ୟକତା ଅନୁଯାୟୀ ଅନ୍ୟର ଶବ୍ଦ ଭଣ୍ଡାରରୁ ଶବ୍ଦମାନ ଆହରଣ କରିଥାନ୍ତି। ଏପରିକି ବିଶ୍ୱବ୍ୟାପୀ ଦିଗ୍‌ବିଜୟ ହାସଲ କରି ଚାଲିଥିବା ଇଂରାଜୀ ଭାଷା ଅନ୍ୟାନ୍ୟ ୟୁରୋପୀୟ ଭାଷା– ଯଥା: ଫରାସୀ, ଗ୍ରୀକ୍, ଲାଟିନ୍, ପ୍ରଭୃତିର ଶବ୍ଦ ଭଣ୍ଡାରରୁ ଆହରଣ କରିବା ସହିତ ସେମାନଙ୍କ ଗୋପାଳକ (କାଓ ବଏ)ର ଭାଷାକୁ ମଧ ସାଦରେ ଗ୍ରହଣ କରେ। ସେଥିପାଇଁ ଡିକ୍‌ସନାରୀ ଅଫ୍ ସ୍ଲାଙ୍ଗରେ ପ୍ରତିବର୍ଷ ଶତାଧିକ ନୂତନ ଶବ୍ଦ ପ୍ରବେଶ କରେ। ସଂବଲପୁରୀ କ୍ଷେତ୍ରରେ ମଧ ଏହି ପ୍ରକ୍ରିୟା ସ୍ପଷ୍ଟ ଭାବେ ଦୃଷ୍ଟିଗୋଚର ହୁଏ। ଅନେକ ନୂଆ ଶବ୍ଦ ଓଡ଼ିଆ, ହିନ୍ଦୀ ତଥା ଇଂରାଜୀରୁ ଆସି ସେଥିରେ ସାମିଲ ହେବା ଉପରୋକ୍ତ ପ୍ରକ୍ରିୟାର ଦୃଢ଼ ପ୍ରମାଣ। କେଉଁ ଶବ୍ଦ କେଉଁ ଭଳି ଭାବରେ ଗୃହୀତ ହେବ, ଆବଶ୍ୟକ ସ୍ଥଳେ ଶବ୍ଦର ସ୍ୱରୂପ ତଥା ଉଚ୍ଚାରଣରେ ଯତକିଂଚିତ ପରିବର୍ତ୍ତନ ହେବ କି ପୂର୍ବବତ ରହିବ - ତାହା ଗ୍ରହିତା ଭାଷା ନିଜ ଆବଶ୍ୟକତା ମତେ ସ୍ଥିର କରିବ। ଏହି କ୍ରିୟାର ପୂର୍ବାଗ୍ରହଗ୍ରସ୍ତ ରକ୍ଷଣଶୀଳ କିଂବା ଆବଶ୍ୟକତାଠାରୁ ଅଧିକ ଉଦାର, ଅନୁକରଣ ପ୍ରିୟ ଲେଖକ ବା ତଥାକଥିତ ଭାଷାପ୍ରେମୀମାନଂକର ଦଖଲ ଅଂଦାଜ ଆଦୌ ଶୋଭନୀୟ ନୁହେଁ। ଅଯଥା ନିୟନ୍ତ୍ରଣ ଓ ସ୍ୱାଭାବିକ ଗତିରେ ପ୍ରତିରୋଧ ସୃଷ୍ଟି କରିଥାଏ। ତେଣୁ ଲେଖକ ଖୋଲାମନରେ ଆବଶ୍ୟକତା ଅନୁଯାୟୀ ବିଦେଶୀ ଶବ୍ଦଗୁଡ଼ିକର ବ୍ୟବହାର କରିବା ଉଚିତ। ବିଦେଶୀ ଶବ୍ଦଗୁଡ଼ିକର ଶୃତିକଟୁ ହେଲାଭଳି ଅଯଥା ସଂବଲପୁରୀକରଣ ଯେମିତି ବିଧେୟ ନୁହେ, ସମୟକ୍ରମେ ସଂବଲପୁରୀକରଣ ହୋଇ ସାରିଥିବା ଶବ୍ଦଗୁଡ଼ିକୁ ମୂଳ ବିଦେଶୀ ରୂପରେ ବ୍ୟବହାର କରିବା ମଧ ସେମିତି ବିଧେୟ ନୁହେଁ। ଉଦାହରଣ ସ୍ୱରୂପ ଉଭୟ କିସମ ଶବ୍ଦ ଦିଆଗଲା।

Digitized by srujanika@gmail.com

| *ଓଡ଼ିଆ ମୂଳ ଶବ୍ଦ* | *ସଂବଲପୁରୀ କରଣର ଉଦ୍ୟମ* |
| --- | --- |
| ପ୍ରେରଣା | ପେରନା |
| ଆକାଶବାଣୀ | ଆକାଶ ବାନି |
| ପ୍ରକୃତ | ପରକୃତ |
| *ମୂଳ ଶବ୍ଦ* | *ସଫଳ ସଂବଲପୁରୀ କରଣ* |
| ସ୍କୁଲ | ଇସ୍କୁଲ |
| ଟାଇମ | ଟେମ |
| କଂପାଉଣ୍ଡର | କଂପାଣ୍ଡର |
| ଷ୍ଟେସନ | ଟେସନ |
| ଦୁଃଖ | ଦୁଖ |
| ଆଖି | ଆଁଖ |

ସାହିତ୍ୟର ଏକ ମହତ୍ତ୍ୱପୂର୍ଣ୍ଣ ଅଂଗ ହେଲା ଭାବ ସାମ୍ରାଜ୍ୟ ବା ବିଷୟବସ୍ତୁ। ବିଷୟବସ୍ତୁକୁ ବାଦଦେଇ କେବଳ ଭାଷା ଓ ଲିପିର ସଂସ୍କାରରେ କୌଣସି ସାହିତ୍ୟ ସମୃଦ୍ଧ ହୋଇ ପାରେନା। ବିଷୟବସ୍ତୁର ପରିସର ବ୍ୟାପକ ହେଲେ ସାହିତ୍ୟ ଆପେ ଆପେ ଖ୍ୟାତିପ୍ରାପ୍ତ ହୁଏ। ବିଷୟବସ୍ତୁ ତଥା ପ୍ରକାଶ ଶୈଳୀରେ ଋଦ୍ଧିମନ୍ତ ଗୋଟାଏ ଗୀତାଂଜଳୀ (ରବିଂଦ୍ର ନାଥ) ଅବା ଗୋଟାଏ ଗୋଦାନ (ପ୍ରେମଚାଂଦ) ଆଧୁନିକ ଜଗତରେ ସ୍ୱ ସ୍ୱ ଭାଷାକୁ ବିଶ୍ୱବିଖ୍ୟାତ କରିଥିବା କଥା କିଏ ନ ଜାଣେ ? ଗୀତାଂଜଳୀ ଓ ଗୋଦାନ ଭଳି ବିଶ୍ୱସାହିତ୍ୟ ସୃଷ୍ଟି ମୂଳରେ ସ୍ରଷ୍ଟାର ଯେତିକି ଅବଦାନ, ସମସାମୟିକ ସାହିତ୍ୟର ତା'ଠାରୁ କମ ଦାନ ନୁହେଁ। ପରିପାର୍ଶ୍ୱର ସ୍ରଷ୍ଟାଗଣ ସାହିତ୍ୟକୁ ଗୋଟାଏ ସ୍ତରକୁ ନେଇଗଲା ପରେ ଯାଇ ଟେଗୋର, ପ୍ରେମଚାଂଦ ଭଳି ମହାନ ସ୍ରଷ୍ଟାଗଣ ତାକୁ ଉପର ସ୍ତରକୁ ନେବାରେ ସଫଳକୃତ ହୁଅନ୍ତି। ତେଣୁ ସାହିତ୍ୟର ବୌଦ୍ଧିକ ସ୍ତର ବୃଦ୍ଧି ନିମିତ୍ତ ସମସ୍ତଂକର - ଲେଖକ, ପାଠକ, ପ୍ରକାଶକ, ଆଲୋଚକ/ସମଭାବରେ ଆବଶ୍ୟକତା ରହିଛି। ସେମାନଂକ ଚିନ୍ତାରାଜ୍ୟର ବ୍ୟାପକତା ସାହିତ୍ୟ ଜଗତକୁ ନୂଆ ନୂଆ ଭାବର ଉପାଦାନ ବା ବିଷୟବସ୍ତୁ ଆଣି ଦେବାରେ ସହଯୋଗ କରେ।

ଏହି ସଂଦର୍ଭରେ ସଂବଲପୁରୀ ସାହିତ୍ୟ କଥା ବିଚାର କଲେ ଆମକୁ ହତାଶ ହେବାକୁ ପଡ଼େ। କେବଳ ଭଗବାନ ଓ ନାରୀର ରୂପଗୁଣ ବର୍ଣ୍ଣନା ହିଁ ଆଜି ପର୍ଯ୍ୟନ୍ତ ସଂବଲପୁରୀ ସାହିତ୍ୟର ମୁଖ୍ୟ ବିଷୟବସ୍ତୁ ହୋଇ ରହି ଆସିଛି କହିଲେ ଅତ୍ୟୁକ୍ତି ହେବ ନାହିଁ। ସଂବଲପୁରୀରେ ତାକୁ କହନ୍ତି 'ମହାପୁରୁ' ଓ 'ମାଏଝି'। ଏହି ଦୁଇଟି 'ମ'କୁ ବାଦ ଦେଇ ଆଧୁନିକ ସଂବଲପୁରୀ ସାହିତ୍ୟର କଳ୍ପନା କରିବା ଯେମିତି କଷ୍ଟ। ଏହି ଉଭୟ 'ମ' ସାଂଗରେ ଯଦି କେବଳ ଆଉ ଏକ 'ମ' (ମଣିଷ)କୁ

Digitized by srujanika@gmail.com

ଅନ୍ତର୍ଭୁକ୍ତ କରାଯାଆନ୍ତା, ହୁଏତ ସଂବଲପୁରୀ ସାହିତ୍ୟର କ୍ଷେତ୍ର ଅନେକ ବ୍ୟାପକ ହୋଇ ସାଗନ୍ତାଣି। ସାଧାରଣ ମଣିଷର ଆଶା, ଆଶଂକା, ସୁଖ, ଦୁଃଖ, ଚିନ୍ତା ଚେତନାକୁ ବାଦ ଦେଇ କିଂବା ଗୌଣ ମନେକରି ଆଜି କୌଣସି ସାହିତ୍ୟ ଯେ ଉଧେଇପାରିବ, ବିଶ୍ୱସାହିତ୍ୟ ସ୍ତରକୁ ଆସି ପାରିବ ସେ ବିଶ୍ୱାସ ଆମର ନାହିଁ। ସୁଖର କଥା, ଗତ କିଛି ବର୍ଷ ହେଲା କିଛିଟା କାବ୍ୟ, ମହାକାବ୍ୟ ମଧ ସଂବଲପୁରୀ ଭାଷାରେ ଲେଖା ହେବାର ଶୁଣାଯାଏ। ପ୍ରକାଶକ ତଥା ଏକ ଉସାହୀ ପାଠକ ଗୋଷ୍ଠୀର ଅଭାବରେ ଅବଶ୍ୟ ସେଗୁଡ଼ିକ ପ୍ରକାଶ ପାଇ ପାରୁନାହିଁ। ଏଭଳି ଲେଖାର ସଂଖ୍ୟା ଏବଂ ଗୁଣାତ୍ମକ ଅଭିବୃଦ୍ଧିରେ ହିଁ ସଂବଲପୁରୀ ଭାଷାର ଭଣ୍ଡାର ପୁଷ୍ଟଳ ହେବା ସହିତ ଏଥିରେ ସାହିତ୍ୟର ଭବିଷ୍ୟତ ନିହିତ ଥିବାର ଅନୁମିତ ହୁଏ।

ସଂବଲପୁରୀର କେତେଗୋଟି ଆଖିଦୃଶିଆ ଗୁଣ ଅଛି। ନିଜ ଆବଶ୍ୟକତା ଅନୁଯାୟୀ ଓଡ଼ିଆ ଭାଷା ସେଗୁଡ଼ିକୁ ଗ୍ରହଣ କରିବା ନିମନ୍ତେ ଆଜି ଚିନ୍ତା କରିବା କଥା।

ସଂବଲପୁରୀର ଏକ ଉଲ୍ଲେଖନୀୟ ଗୁଣ ହେଲା ଶବ୍ଦର ସହଜତା, ସାବଲୀଳତା ଓ ସ୍ୱାଭାବିକତା। ଉଚ୍ଚାରଣରେ କ୍ଲିଷ୍ଟତା ନଥିବା ତାର ଏକ ବିଶେଷତ୍ୱ। ଏହି ଗୁଣଟି ପ୍ରାୟ ଲୋକଭାଷାମାନଂକରେ ପରିଲକ୍ଷିତ ହୋଇଥାଏ। ଫଳରେ ତାଲବ୍ୟ 'ଶ' ମୂର୍ଧନ୍ୟ 'ଷ', ଦନ୍ତ୍ୟ 'ସ', ଅବା ବର୍ଗ୍ୟ ଜ ଓ ଅ ବର୍ଗ୍ୟ ଯ, ହ୍ରସ୍ୱ 'ଇ' ଓ ଦୀର୍ଘ 'ଈ' ଳ ଓ ଲ, ହ୍ରସ 'ଉ' ଓ ଦୀର୍ଘ 'ଊ' କିଂବା ରୁ ଓ ର ମଧ୍ୟରେ ଥିବା ପାର୍ଥକ୍ୟକୁ ସଂବଲପୁରୀ କଥିତ ଭାଷାରେ ସ୍ୱୀକାର କରାଯାଏ ନାହିଁ। ଏବେ କେତେକ ସ୍ଥଳରେ ଲିଖିତ ଭାଷାରେ ମଧ ଏହି ପଦ୍ଧତିକୁ ଅନୁକରଣ କରାଯାଉଛି। (ଉଦାହରଣ ସ୍ୱରୂପ ଧନପତି ମହାପାତ୍ରଂକର ସଂବଲପୁରୀ ଉପନ୍ୟାସ 'ବିଳାସିନି' ଏଥିରେ ସମସ୍ତ ଶ, ଷ ଆସି ଦନ୍ତ୍ୟ 'ସ'ର ରୂପ ନେଉଛନ୍ତି। ଠିକ ସେହିଭଳି ଉଚ୍ଚାରଣ ଭଳି ଲେଖାରେ ମଧ କେବଳ 'ଲ' 'ଇ' 'ଉ' ଏବଂ 'ରୁ' ଆଦି ବ୍ୟବହୃତ ହେଉଛନ୍ତି। ଳ, ଦୀର୍ଘ 'ଈ', ଦୀର୍ଘ 'ଊ' ଆଦିର ବ୍ୟବହାର କ୍ରମଶଃ ହ୍ରାସ ପାଇବାକୁ ଲାଗିଲାଣି।

ସଂସ୍କୃତ କିବା ହିଂଦୀ ଭାଷାର ଉଚ୍ଚାରଣରେ ଯେଉଁ ନିୟମବଦ୍ଧତା, ଓଡ଼ିଆରେ ତାହା ନାହିଁ। ମାତ୍ର ଓଡ଼ିଆ ଲେଖାରେ ଏହି ନିୟମବଦ୍ଧତା ଏ ପର୍ଯ୍ୟନ୍ତ ଅବ୍ୟାହତ ଅଛି। ଫଳସ୍ୱରୂପ ଅନେକ ପ୍ରତିଭାବାନ ଲେଖକ ଯେ ଶ, ଷ ଓ ଈ, ଇ ର ଜାଲରେ ସମୟ ଓ ଶକ୍ତି ନଷ୍ଟ କରୁନଥିବେ ତାହା କିଏ କହିବ? ହିଂଦୀ ତଥା ସଂସ୍କୃତରେ ଥିବା ଉଚ୍ଚାରଣଗତ ନିୟମବଦ୍ଧତା ତୁଳନାରେ ଓଡ଼ିଆ ଉଚ୍ଚାରଣରେ ନିୟମବଦ୍ଧତା ସୀମିତ। ବିଶେଷ କରି ତାଲବ୍ୟ 'ଶ' ମୂର୍ଧନ୍ୟ 'ଷ', ହ୍ରସ'ଇ' ଓ ଦୀର୍ଘ 'ଈ' ବା 'ଉ' ଓ 'ଊ'ର ଉଚ୍ଚାରଣରେ ଆମର ଭିନ୍ନ ଉଚ୍ଚାରଣ ନାହିଁ। ଉଚ୍ଚାରଣରେ ଭିନ୍ନତା ନାହିଁ; ଫଳରେ ଲେଖାରେ ବର୍ଣ୍ଣଗୁଡ଼ିକର ସଠିକ ସ୍ଥାନ ନିରୂପଣ ଅଧିକ କଷ୍ଟକର ମନେହୁଏ। ଓଡ଼ିଆ ବର୍ଣ୍ଣମାଳା ସଂସ୍କୃତର ଅନୁକରଣରେ ହୋଇଥିବାରୁ ଉଭୟ

Digitized by srujanika@gmail.com

ଲିପି ମଧ୍ୟରେ ଏହି ସାମଂଜସ୍ୟ। ମାତ୍ର ତାର ବ୍ୟବହାର ନ ଥିବାରୁ ଓଡ଼ିଆ ଉଚ୍ଚାରଣ ଓ ଲିପି ମଧ୍ୟରେ ଥିବା ଏହି ପାର୍ଥକ୍ୟକୁ ଏବେ ଏଡ଼ାଯାଇ ପାରେ। ସଂବଲପୁରୀ ଏ କ୍ଷେତ୍ରରେ ଓଡ଼ିଆର ପଥ ପ୍ରଦର୍ଶକ ହୋଇ ପାରିବ। ଅବଶ୍ୟ ଏହିଭଳି ସରଳୀକରଣର ଉଦ୍ୟମ ବହୁ ପୂର୍ବରୁ ଓଡ଼ିଆରେ ଆରଂଭ ହୋଇ ସାରିଛି। ଯଥା :- ବର୍ଣ୍ଣମାଳାର 'ବ'। ସଂସ୍କୃତର ଅନୁକରଣରେ ଓଡ଼ିଆ ବର୍ଣ୍ଣମାଳାରେ ଦୁଇଟି 'ବ' ('ବ' ଓ 'ୱ') ଥିବା ସ୍ଥଳରେ ଉଭୟ ଉଚ୍ଚାରଣ ଏବଂ ଲେଖାରେ କେବଳ ଗୋଟାଏ 'ବ'କୁ ବ୍ୟବହାର କରାଯାଏ। ସରଳୀକରଣର ଅନ୍ୟଏକ ଉଦାହରଣ ହେଲା କେତେଗୋଟି ଯୁକ୍ତାକ୍ଷର ସ୍ଥାନରେ କେବଳ ଅନୁସ୍ୱାର ଓ ଶେଷବର୍ଣ୍ଣ ଲେଖା ଯିବାର ଉଦ୍ୟମ। ତେଣୁ ଆବଶ୍ୟକତା ସ୍ଥଳେ ଅନ୍ୟ ବର୍ଣ୍ଣଗୁଡ଼ିକରେ ମଧ୍ୟ ଏଭଳି ଚେଷ୍ଟା ହେବା ଅଯୌକ୍ତିକ ହେବ ନାହିଁ। ଏହାର ଅର୍ଥ ନୁହେଁ ଯେ, 'ୟ' ସ୍ଥାନରେ 'ଜ' ବା 'ଳ' ସ୍ଥାନରେ 'ଲ' ବ୍ୟବହାର କରାଯିବ। ଯେଉଁଠି ଉଚ୍ଚାରଣରେ ପ୍ରଭେଦ ଅଛି, ସେଠି ଲିପିରେ ମଧ୍ୟ ପ୍ରଭେଦ ରଖାଯିବାକୁ କେହି ଅସ୍ୱୀକାର କରିବେ ନାହିଁ।

ସଂବଲପୁରୀ ଏକ ପୁରାତନ ଲୋକଭାଷା। ସୀମିତ ହେଲେ ସୁଦ୍ଧା ତାର ମଧ୍ୟ ଏକ ଶବ୍ଦ ଭଣ୍ଡାର ଅଛି। ଗ୍ରାମ୍ୟ ପରିବେଶର ଅଭିବ୍ୟକ୍ତି ପାଇଁ ଏହାର ପ୍ରତିଶବ୍ଦ ନାହିଁ। ପୁଣି ଆହୁରି ଅନେକ ଶବ୍ଦର ଓଡ଼ିଆ ପ୍ରତିଶବ୍ଦ ଆକାରରେ ଲଂବା, ବେଶୀ ଅକ୍ଷରଯୁକ୍ତ। ନିମ୍ନରେ କେତେ ଗୋଟି ଉଦାହରଣ ଦିଆଗଲା।

| ସଂବଲପୁରୀ ଶବ୍ଦ | ଓଡ଼ିଆ ଅର୍ଥ |
|---|---|
| ରଝୋ ରଝୋ | ଯୋରରେ ବର୍ଷା ପାଣି ତଳେ ପଡ଼ିବା ପରେ ବା କୌଣସି ବସ୍ତୁ ବାରଂବାର ଯୋରରେ ପାଣିଉପରେ ପଡ଼ିବା ପରେ ଜାତ ଶବ୍ଦ। ରଝୋ ରଝୋ ବର୍ଷା ହେଲା। ରଝୋ ରଝୋ ଗାଧଲା। |
| ତାକଲା | ସୁଯୋଗକୁ ଅପେକ୍ଷା କରି ରହିଲା। ତକେଇ ରହିଲା। |
| କହକା | ନାସ୍ତିବାଚକ ଅର୍ଥରେ ସ୍ପଷ୍ଟବାଦୀ। |
| କର୍ରା କର୍ରା | ନିଶର ବିଶେଷଣ। ବଡ଼ ମୋଟା ଓ ଲଂବା ନିଶକୁ କର୍ରା କର୍ରା ନିଶ କୁହାଯିବ। |

ଭାଷା ଓ ଲିପି ସଂସ୍କାରର ଏକ ମୁଖ୍ୟ ଉଦ୍ଦେଶ୍ୟ ହେଲା, ସାହିତ୍ୟରେ ଯଥାସଂଭବ କମ ଏବଂ ଆକାରରେ ଛୋଟ ଶବ୍ଦ ବ୍ୟବହାର କରିବା। ସଫଳ ସାହିତ୍ୟ ସୃଜନ ନିମନ୍ତେ ଶବ୍ଦ ବ୍ୟବହାରରେ କୃପଣତା ଅତି ଆବଶ୍ୟକ। କୌଣସି ଭାବର ଅଭିବ୍ୟକ୍ତି ପାଇଁ ଯଦି ଅନେକ ଶବ୍ଦ ସ୍ଥାନରେ ସୀମିତ ଶବ୍ଦ ବ୍ୟବହାର ସଂଭବ, ତେବେ ତାହା ସର୍ବଦା ଅଭିନନ୍ଦନୀୟ। ଶବ୍ଦ ଭଣ୍ଡାର ବୃହତ ହେଲେ ଯାଇ ଏହା ସଂଭବ। ତେଣୁ ଓଡ଼ିଆ ଭାଷା ଆବଶ୍ୟକ ସ୍ଥଳେ ସଂବଲପୁରୀରୁ ଶବ୍ଦମାନ

Digitized by srujanika@gmail.com

ଆହରଣ କରିବା ଉଚିତ। କେବଳ ସଂବଲପୁରୀ କାହିଁକି, ଦକ୍ଷିଣ ଓଡ଼ିଶାରୁ ତଥା ଆଦିବାସୀ ଭାଷାମାନଂକରୁ ମଧ ଶବ୍ଦମାନ ଗୃହୀତ ହେବା ଆବଶ୍ୟକ। ଏହା ଓଡ଼ିଆ ଶବ୍ଦ ଭଣ୍ଡାରକୁ ବୃହତ ପରିପୁଷ୍ଟ କରିବା ସଂଗେ ସଂଗେ ପରିବ୍ୟାପ୍ତ ବା ଗୋଟାଏ ଅଂଚଳକୁ ଅନ୍ୟ ଅଂଚଳ ସହ ପରିଚିତ କରାଇବାରେ ମଧ ସହାୟକ ହେବ।

ମାତ୍ର ଦୁଃଖର କଥା, ସଂବଲପୁରୀକୁ ନିଜର ଉପଭାଷା ରୂପେ ଗ୍ରହଣକରିବା ସତ୍ତ୍ୱେ ଓଡ଼ିଆ ଆଜି ପର୍ଯ୍ୟନ୍ତ ତାଠାରୁ ଆବଶ୍ୟକ ମାତ୍ରାରେ ଶବ୍ଦମାନ ଆହରଣ କରିନାହିଁ। ଓଡ଼ିଆ ସର୍ବଦା ତା ପାଇଁ ଶିକ୍ଷକର ଭୂମିକା ଗ୍ରହଣ କରି ଆସିଛି। ଇଂରାଜୀରେ ଏହାକୁ କହନ୍ତି ବିଗବ୍ରଦର ମନୋଭାବ। ଜାଣି, ସଂବଲପୁରୀ ଶବ୍ଦ ଗ୍ରହଣ ବେଳେ କୁଣ୍ଠା ପ୍ରକାଶ ଓଡ଼ିଆ ପାଇଁ ଗୌରବର ବିଷୟ। ଫଳରେ ପଶ୍ଚିମ ଓଡ଼ିଶାର ଓଡ଼ିଆ ଲେଖକ ମଧ ସଂବଲପୁରୀ ଶବ୍ଦ ବ୍ୟବହାର ସମୟରେ ଆଗଭର ନ ହେବା ସ୍ୱାଭାବିକ। ଓଡ଼ିଆ ପକ୍ଷରୁ ଉଦାରତାର ଅଭାବ ହିଁ ଆଜି ସ୍ୱତନ୍ତ୍ର ସଂବଲପୁରୀ ଆଂଦୋଳନର ମୁଖ୍ୟ କାରଣ। ପରିବର୍ତ୍ତିତ ପରିସ୍ଥିତିରେ ସଂବଲପୁରୀକୁ ଅସଭ୍ୟ, ଗାଉଁଲି ଲୋକଂକ ଭାଷା ବୋଲି ତୁଚ୍ଛ ମନେ କଲେ, ସଂବଲପୁରୀଠାରୁ ଅଧିକ କ୍ଷତି ହେବ ଓଡ଼ିଆ ଭାଷାର। ମଗଧି, ଅବଧି, ଭୋଜପୁରୀ, ଇତ୍ୟାଦି, ଉପଭାଷାରୁ ସଚେତ ମନରେ ଶବ୍ଦ ଆହରଣ କରି ପାରୁଥିବାରୁ ହିନ୍ଦୀ ଆଜି ବଳିଷ୍ଠ ଓ ଲୋକପ୍ରିୟ ହୋଇପାରୁଛି। ଓଡ଼ିଆକୁ ମଧ ଶିକ୍ଷା କରିବାର ମନୋବୃତ୍ତି ଧାରଣ କରିବାକୁ ପଡ଼ିବ। ଉଦାର ଚିତ୍ତରେ ଓଡ଼ିଆ, ସଂବଲପୁରୀକୁ ଗ୍ରହଣ କରିପାରିଲେ ହିଁ ଉଭୟ ଭାଷା ମଧରେ ଥିବା ତାରତମ୍ୟ ହ୍ରାସ ପାଇବ, ଉଭୟେ ଉଭୟର ପରିପୂରକ ହୋଇ ପାରିବେ ଏବଂ ସଂବଲପୁରୀ ଭାଷା ଆଂଦୋଳନ ଭିତରେ ଲୁକ୍କାୟିତ ଭାବେ ଥିବା ଓଡ଼ିଆ ବିରୋଧୀ ମନୋଭାବ ହ୍ରାସ ପାଇବ। ଆହରଣଶୀଳତା ହେଉଛି ବ୍ୟକ୍ତି ବା ଜାତିର ପରିବ୍ୟାପ୍ତି ଓ ପରିପୁଷ୍ଟିର ଲକ୍ଷଣ। ଉଦାରତା ଓ ବିଶାଳତାର ପରିଚାୟକ। ଭାଷା ଏକ ନଦୀ ପରି ପ୍ରବହମାନ ହେବା ଦରକାର, ସେଥିରେ ଛୋଟ ଛୋଟ ଧାର, ଉପନଦୀ ମିଶି ତାର ପରିବ୍ୟାପ୍ତ କରିଥାଏ। ନଚେତ୍ ତାହା ଟୁବି ଗଡ଼ିଆ ହୋଇ ନେଳି ମାରି ରହିଯାଏ।

ସଂବଲପୁରୀ ଭାଷା ଆଂଦୋଳନ ସଂଦର୍ଭରେ ଆହୁରି ଅନେକ ତଥ୍ୟ ଏବଂ ନୂତନ ଯୁକ୍ତିର ଆଜି ଆବଶ୍ୟକତା ରହିଛି। ସେସବୁ ଆଲୋଚନାର ପରିସରକୁ ଆସି ପାରିଲେ ବା ଅଣା ଯାଇ ପାରିଲେ ସୁସ୍ଥ ଓ ଅନୁକୂଳ ଆଲୋଚନାର ଖୋଲା ମଂଚକୁ ସେଗୁଡ଼ିକୁ ଆମନ୍ତ୍ରିତ କରିବା ନିମିତ୍ତ ଏହି ନିବଂଧ ଏକ ଲଘୁ ଉଦ୍ୟମ ମାତ୍ର। ତେଣୁ ନିବଂଧରେ ଉତ୍ଥାପିତ ଯୁକ୍ତି ସବୁ ଗୃହୀତ ହେବାଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ଏ ସଂପର୍କରେ ଆହୁରି ଦ୍ୱିମତ ବିଚାର ବିମର୍ଷ ପ୍ରକାଶ ପାଇବ। (୧୯୯୦)

◆◆

Digitized by srujanika@gmail.com

# ସଂବଲପୁରୀ : ଏକ ପରିଚର୍ଚ୍ଚା

ଅଶୀ ଦଶକ ଯାକେ ଅନେକେ ହୁଏତ କଳ୍ପନାକରି ନ ଥିବେ ଯେ ସଂବଲପୁରୀରେ ଏକ ବଳିଷ୍ଠ ଭାଷା ଆଂଦୋଳନ ଗଢ଼ି ଉଠିବ। ଆଜି ଚଳଚିତ୍ର, ନାଟକ, ପତ୍ର ପତ୍ରିକା, ଉପନ୍ୟାସ, କାବ୍ୟ କବିତା-ସବୁ ସୃଷ୍ଟି ହେଉଛନ୍ତି ସଂବଲପୁରୀରେ। ସଂଖ୍ୟା ଅବଶ୍ୟ ବେଶି ନୁହେଁ, ମାତ୍ର ଅବସ୍ଥିତି ରହିଛି। ଏକ ସ୍ୱତନ୍ତ୍ର ଭାଷାର ସରକାରୀ ସ୍ୱୀକୃତି ତାକୁ କେବେ ମିଳିବ, ମିଳିବ ନା ନାହିଁ- ତା ଅବଶ୍ୟ ଭବିଷ୍ୟତ କହିବ, କିନ୍ତୁ ଲୋକଙ୍କ ସ୍ତରରେ ସଂବଲପୁରୀକୁ ନେଇ ଜନଚେତନାର ଉଦ୍ରେକ ହୋଇଛି, ଭାଷାଭିତ୍ତିକ ସ୍ୱାଭିମାନ ବଢ଼ିଛି; ସଭା ସମିତିରେ ସ୍ଥାନୀୟ ବକ୍ତା ସଂବଲପୁରୀରେ କହୁଛନ୍ତି; ରେଡ଼ିଓରେ ଗୀତକୁ ବାଦ ଦେଇ ଅନ୍ୟ କେତେକ କାର୍ଯ୍ୟକ୍ରମ ମଧ୍ୟ ଏଥିରେ ପ୍ରସାରିତ ହେଉଛି। ନିଶ୍ଚିତ ରୂପେ ଭାଷା ଆଂଦୋଳନର ଏହା ଏକ ଉପଲବ୍ଧି।

ସେ ଭାଷା ହେଉ ବା ଉପଭାଷା, ସ୍ୱତଃସ୍ଫୂର୍ତ୍ତ ଭାବେ ତାକୁ ଆପଣେଇ ଥିବା ଲୋକଂକ ସଂଖ୍ୟା କମ ହେଉ ବା ବେଶି - ତାର ସ୍ୱାଭାବିକ ବିକାଶ ହେବା କଥା। ତହିଁରେ ବଳିଷ୍ଠ ସାହିତ୍ୟ ଓ ସାହିତ୍ୟିକ ରହିବା ଚାହି। ଉକ୍ତ ଭାଷା-ଭାଷୀ ଲୋକେ ନିଜର ଭାବ ଓ ଅଭାବ ମନର ବେଗ ଓ ଆବେଗକୁ ପରିପ୍ରକାଶ କରିବା ସକାଶେ ଯଦି ଭିନ୍ନ କେଉଁ ଏକ ଭାଷାର ଦ୍ୱାରସ୍ଥ ହୁଅନ୍ତି, କୃତ୍ରିମରୂପେ ସେମାନଂକ ଗଳାରୁଦ୍ଧ ହୁଏ; ଆଉମାନେ ତାଙ୍କ କଥା କହିବାର ଠିକାଦାରୀ କରନ୍ତି। ଏହା କେବେ ସୁସ୍ଥ ସମାଜର ଲକ୍ଷଣ ହୋଇ ନ ପାରେ। ଭାଷାବିଦ କହନ୍ତି: ଅନ୍ୟର ଭାଷା ଶିଖିବା ଉଚିତ। ହେଲେ ତାହା ଘରର ଝରକା ପରି, ଦୁଆରବଂଧ ନୁହେଁ। ତା ଜରିଆରେ ବାହାର ଦୁନିଆଁକୁ ଦେଖା ଯାଇପାରେ; ନିଜ ଘରକୁ ପଶି ହେବ ନାହିଁ।

ଏହି ପରିପ୍ରେକ୍ଷୀରେ ଆମର କହିବା କଥା ଯେ, ସଂବଲପୁରୀ ଭଳି ଭତରି, ସାଦରି, ଦେଶିଆରେ ବି ଭାଷା ଆଂଦୋଳନର ଆବଶ୍ୟକତା ରହିଛି। ଉକ୍ତ ଭାଷା-ଭାଷୀ ଲୋକଂକ ଭାଷାଭିତ୍ତିକ ସ୍ୱାଭିମାନ ବଢ଼ିବା କଥା। ଓଡ଼ିଆ ଭାଷାର ତହିଁରେ ଆତଂକିତ ହେବାର ନାହିଁ। ଏକ ଆଦର୍ଶ ସାମାଜିକ ସ୍ଥିତିରେ ଉକ୍ତ ଭାଷା ବା ବୋଲିଗୁଡ଼ିକ ଓଡ଼ିଆର ପରିପୂରକ, କେଉଁ ପରିପନ୍ଥୀ ନୁହନ୍ତି। ଏକଥା ଆଜି ଓଡ଼ିଆର ଅନେକ ବୁଦ୍ଧିଜୀବି ହୃଦୟଂଗମ କଲେଣି। ସଂବଲପୁରୀ ପ୍ରଶ୍ନ ସେମାନଂକ ଭାଷାରେ ଆଉ ବିବାଦ ସ୍ତରରେ ନାହିଁ, ଫଇସଲା ହୋଇ ଗଲାଣି। ଯେଉଁମାନେ ଏବେ ବି ଆତଂକିତ ଯେ, ସଂବଲପୁରୀ ଓଡ଼ିଆ ଓ ଓଡ଼ିଶାରେ ବିଚ୍ଛିନ୍ନତା ସୃଷ୍ଟି କରିବ, ସେମାନଂକ ବିରୋଧରେ ଏ ଆଂଦୋଳନ ତେଜିବ। କାନ୍ତିଚଂଦ୍ର ବଂଦୋପାଧ୍ୟାୟଂକ ''ଓଡ଼ିଆ ଏକଟି ଭାଷା ନୟ'' ପୁସ୍ତକଟି ପ୍ରକାଶିତ ହୋଇ ନ ଥିଲେ ତ ସେତେବେଳେ ଓଡ଼ିଆ ଭାଷା ଆଂଦୋଳନ ଏତେ ଶୀଘ୍ର ପ୍ରଖର ହୋଇ ନ ଥାନ୍ତା !

Digitized by srujanika@gmail.com

ସଂବଲପୁରୀ ଆଂଦୋଳନର ଏତେ ବଢ଼ତି କରିବା ଅବସରରେ ସେଥିରେ କେତୋଟି ବିସଂଗତି ଦେଖିଲେ ମନରେ ଗ୍ଲାନି ଆସେ। ଲାଗେ, ଏ ସବୁ ନ ହେଲେ ଭଲ।

ଗୋଟାଏ ହେଲା - ନାଁ। ଭାଷାର ନାଁ କ'ଣ ? ସଂବଲପୁରୀ ନା କୋଶଲୀ ? ସଂବଲପୁରୀ ପାଇଁ ଯୁକ୍ତି କରୁଥିବା ଭାଷାବିଦ କହନ୍ତି- ଏହା ଜନ ସାଧାରଣଂକ ମଧ୍ୟରେ ଆଦୃତ। ତା'ଠାରୁ ବଡ଼କଥା ହେଲା, ଅତୀତରେ ମୋଟାମୋଟି ଏହି ଭାଷା ଭାଷୀ ଅଂଚଳକୁ ନେଇ ଏକ ରାଜ୍ୟ ଥିଲା- ନାଁ ସଂବଲକ। ତେଣୁ ସଂବଲପୁରୀ ଶବ୍ଦଟି ସେହି ରାଜ୍ୟର ନାଁରୁ ଗୃହୀତ; ସଂବଲପୁର ସହରରୁ ନୁହେଁ।

ଯୁକ୍ତିଟି ବଳିଷ୍ଠ। କିନ୍ତୁ କୋଶଲୀର ପକ୍ଷଧରଂକ ଯୁକ୍ତି ବି ଆଧାରଶୂନ୍ୟ ମନେ ହୁଏନି। ସେମାନଂକ କହିବା କଥା ଯେ, ସଂବଲପୁରୀ ହେଲା ଉପକୂଳର ନାମ - ସଂବଲପୁର ସହର ପ୍ରଦତ୍ତ ଓ ତା' ଆଖପାଖର ଲୋକଂକ ଭାଷା। ପଶ୍ଚିମାଂଚଳର ଗାଁ ଗହଳରେ ଓଡ଼ିଆକୁ ବି ସେମିତି କଟକିଆ କୁହାଯାଏ- ଠିକ ଏକା ଧରଣର ଯୁକ୍ତି ଦେଇ। ଶାସନ ଓ ଆସନରେ ଯଦି ପଶ୍ଚିମାଂଚଳର ଲୋକଂକ ବଢ଼ତି ଥା'ନ୍ତା, ହୁଏତ ସରକାରୀ ନଥିପତ୍ରରେ 'କଟକିଆ' ହିଁ ଓଡ଼ିଆ ଭାଷାର ନାଁ ହୋଇଥାନ୍ତା ଏବଂ ପରେ ଜନ ସାଧାରଣରେ ଗୃହୀତ ମଧ୍ୟ ହୋଇଥାନ୍ତା। ଏହି ଯୁକ୍ତିର ଆଧାର ମୁଁ ଆସାମର ଚା' ବଗିଚା କୁଲିଂକଠାରେ ଦେଖିଛି। ଅନ୍ୟ କୁଲି ଓ ଓଡ଼ିଆ କୁଲି, ସମସ୍ତେ କହିଲେ, ଓଡ଼ିଆ କୁଲି ଦୁଇଟି ଭାଷାଭାଷୀ ଲୋକ—ସଂବଲପୁରୀ ଓ କଟକି (ବା କଟକିଆ)। ଦେଢ଼ ଶହ ବର୍ଷ ପୂର୍ବେ ଓଡ଼ିଶାରୁ ଆସିଥିବା ଏବଂ ଶିକ୍ଷାଦୀକ୍ଷାରୁ ଦୂରରେ ଥିବା ଏହି କୁଲିମାନେ ଓଡ଼ିଶାକୁ ତ ସ୍ୱୀକାର କରନ୍ତି, କିନ୍ତୁ ସେଥିରେ ଦୁଇଟି ଉପଭାଷା (ବା ଭାଷା) ବୋଲି ମାନନ୍ତି; ସତେ ଯେମିତି ଦୁଇଟିଯାକ ବୋଲିର ପୂର୍ଣ୍ଣ ରୂପର ନାଁ ଓଡ଼ିଆ। ସେ ଯାହାହେଉ ରେଡ଼ିଓ ଯୋଗୁଁ ସଂବଲପୁରୀ ନାଁ ଅଧିକ ପ୍ରସାରିତ ହେଲା। ପଶ୍ଚିମାଂଚଳର ଲୋକଗୀତର ନାଁ ଦିଆଗଲା ସଂବଲପୁରୀ।

ଆଜିର ପରିପ୍ରେକ୍ଷୀରେ, ସଂବଲପୁର ଲୋକ ଯେତେ ଯୁକ୍ତି କରନ୍ତୁ ପଛେ, ସଂବଲପୁର ଏକ ସହରକୁ ବୁଝାଏ, ଅଂଚଳକୁ ନୁହେଁ। କୋଶଳ ଏକ ଅଂଚଳକୁ ବୁଝାଏ। ସଂବଲପୁରରୁ 'କୋଶଳ' ନାଁରେ ବହୁ ଦିନ ଧରି ଏକ ପତ୍ରିକା ମଧ୍ୟ ବାହାରୁଛି। ଭାଷା ମଧ୍ୟରେ ଅନେକ ଆଂଚଳିକ ସ୍ୱାତନ୍ତ୍ର୍ୟ ରହିବ। ସେସବୁ ସ୍ୱାତନ୍ତ୍ର୍ୟକୁ ଧରି ରଖିବାରେ କୋଶଲୀ ନାଁର ଅନ୍ତଃଶକ୍ତି ଅଧିକ। ବେଶି ଆଦୃତ ବୋଲି ଆମେ 'ସଂବଲପୁରୀ' ନାଁକୁ ଯେମିତି ଏହି ନିବଂଧରେ ଗ୍ରହଣ କରୁଛୁ; ବେଶି ଯୁକ୍ତିଯୁକ୍ତତା ଥିବା ଦୃଷ୍ଟିରୁ 'କୋଶଲୀ'ର ମଧ୍ୟ ସେମିତି ପକ୍ଷ ନେଉଛୁ। ଦୁଇ ନାଁକୁ ଆମର ଏଭଳି ଭାବେ ସଂଖୋଳିବା ପଛରେ ଉଦ୍ଦେଶ୍ୟ ହେଲା-ଦୁଇ ଚାରିଜଣ ବସି ନାଁ ସଂବଂଧରେ ନିଷ୍ପତ୍ତି ନେବା ଉଚିତ ହେବ ନାହିଁ। ଭାଷା ଆଂଦୋଳନ ବଢ଼ୁ, ସାହିତ୍ୟ ଲେଖା ହେଉ, ଭାଷାକୁ ନେଇ ଲୋକଂକ ସ୍ୱାଭିମାନ ବଳବତ୍ତର ରହୁ, ବୃହତ୍ତର ପାଠକ ଶ୍ରେଣୀଟିଏ ସୃଷ୍ଟି ହୁଅନ୍ତୁ। ତେଣିକି ଲୋକ ସାଧାରଣ ଆପେ ଆପେ ଭାଷାର

Digitized by srujanika@gmail.com

ନାଁଟିଏ ଖୋଜି ନେବେ। ନାଁର ଅଭାବ ବା ଆଧିକ୍ୟରେ ଭାଷା ଦୁର୍ବଳ ହୋଇ ପଡ଼ିବ ନାହିଁ। ତେଣୁ ତାକୁ ନେଇ ବିବାଦର ବିଶେଷ ପ୍ରାସଂଗିକତା ନାହିଁ।

ଅନ୍ୟ ଏକ ସମସ୍ୟା ହେଲା - ଶସ୍ତା ବଂବୈୟା ହିଂଦୀର ଅନୁକରଣ। ଅନୁକରଣ ତ ଖରାପ, କିନ୍ତୁ ତା'ଠାରୁ ଖରାପ ରୁଗ୍ଣ ଆଧୁନିକତାର ଅନୁକରଣ। ସଂବଲପୁରୀରେ ଭଜନ, ପ୍ରେମଗୀତ, ସାମାଜିକ ଗୀତର କେସେଟ ତିଆରିରେ ହୁଏତ କାହାରି ଆପତ୍ତି ହେବ ନାହିଁ। କିନ୍ତୁ ସେହି ବାହାନାରେ ହିଂଦୀଗୀତର ଶସ୍ତା ଅନୁକରଣ, ଅଶ୍ଳୀଳତାର ଝଲକ - ବରଦାସ୍ତ କରି ହୁଏନା। ସଂବଲପୁରୀର ନିଜର ସ୍ୱର, ତାଳ, ମାନ ସହିତ ବାଦ୍ୟ-ଯନ୍ତ୍ର ଢ଼ୋଲ, ମହୁରୀ ଅଛି। ସେଗୁଡ଼ିକୁ ବାଦ ଦେଇ କି ସଂବଲପୁରୀର କଳ୍ପନା ଅଥବା ବିକାଶ ସଂଭବ? ଏଥିପାଇଁ କେବଳ କେତେଜଣ ପ୍ରୟୋଜକଙ୍କୁ ଦୋଷ ଦେଇ ଲାଭ ନାହିଁ। ଲୋକ ଯଦି ନିଜମନକୁ ତିଆରି କରି ପାରିବେ, ଏପରି ଅନୁକରଣ ସଂସ୍କୃତିରୁ ଦୂରରେ ରହିବେ, ନିଜ ଓଜନରେ ଅନୁକରଣ ଚାପି ହୋଇ ଯିବ। ବାହାର ଧକ୍କାର ପ୍ରଭାବ ପଡ଼ିବ ନାହିଁ କି ପ୍ରୟୋଜନ ରହିବ ନାହିଁ। ସବୁବେଳେ ବଂବେ, ହିଂଦୀ, ସହରକୁ ସଭ୍ୟତା ଓ ସଂସ୍କୃତିର ମାନଦଣ୍ଡ କି ପରିମାପକ ବୋଲି ଧରିନେବା କି ଯୁକ୍ତି ସଂଗତ?

ଭିନ୍ନ ଏକ ସମସ୍ୟା ହେଲା - ଓଡ଼ିଆକୁ ପ୍ରତିଯୋଗୀ ବିଚାରିବା। ସଂବଲପୁରୀ ଭାଷା ଆଂଦୋଳନର ତାତ୍କାଳିକ ବୃଦ୍ଧି ପଛରେ କାହିଁ ନା କାହିଁ ଏହି ସତ୍ୟଟି ବିଦ୍ୟମାନ। ଜାଣି, ସଂବଲପୁରୀର ବିକାଶ ପାଇଁ ଓଡ଼ିଆ ପରିପନ୍ଥୀ। ଏହା କିନ୍ତୁ ଭୂଲଧାରଣା। ଗୋଟାଏ ଭାଷା କିଂବା ସଂସ୍କୃତି ଅନ୍ୟ ଗୋଟାକର ପରିପନ୍ଥୀ ହୋଇ ନ ପାରେ। ଅନ୍ୟଥା ପୁରାତନ କାଳରୁ ଯୁଝି-ଲଢ଼ି କରି ତନ୍ମଧ୍ୟରୁ ଅନେକ ନିଃଶେଷ ପାଇ ଯାଆନ୍ତେଣି; ଯେଉଁ କେତେକ ବଂଚିଥାନ୍ତେ, ଅନ୍ତତଃ ଖଣ୍ଡିଆ ଖାବରା ହୋଇ ଅଧାପ୍ରାଣ ଅବସ୍ଥାରେ ପଡ଼ିଥାନ୍ତେ। ପ୍ରତିଯୋଗିତା ଓ ସାନ-ବଡ଼ର ମନୋଭାବ ଆଧୁନିକତା ସାଂଗରେ ଯୋଡ଼ା; ପରଂପରାର ଅବଦାନ ନୁହେଁ। ଏହାକୁ ବୁଝିବା ପାଇଁ ଶହେବର୍ଷ ପୁରୁଣା ସଂବାଦପତ୍ରର ଉଦାହରଣ ନିଆଯାଇପାରେ। ସେତେବେଳେ ଗୋଟାଏ ସଂବାଦପତ୍ର ଅନ୍ୟକୁ 'ସହଯୋଗୀ' ବୋଲି ସଂବୋଧନ କରୁଥିଲା - ଉପନିବେଶବାଦ ବିରୋଧୀ ଆଂଦୋଳନରେ ସହଯୋଗୀ, ସମାଜ ସଂସ୍କାରରେ ସହଯୋଗୀ। ମାତ୍ର ଆଜି ଜଣେ ଅନ୍ୟ ବିରୁଦ୍ଧରେ ଅସ୍ତ୍ର ସଦୃଶ। ଭାଷା ମଧ୍ୟରେ ବି ସେହିଭଳି ଶାଶ୍ୱତ ସଂପର୍କ, ଯଦିଓ ଆଧୁନିକତା ଯୋଗୁଁ ତାହା ଏବେ ବିଦ୍ୱେଷଭରା ଓ ଅବିଶ୍ୱାସର ବିଷରେ ସଂକ୍ରମିତ।

ସଂବଲପୁରୀର ପ୍ରବକ୍ତାମାନେ ଏକଥା ଶୁଣିଲେ ଜବାବ ଦିଅନ୍ତି- ଓଡ଼ିଆର ସାହିତ୍ୟିକମାନେ ତାଂକୁ ଉପେକ୍ଷା କରନ୍ତି। ସତକଥା, ଭାଷାରେ ବିଚ୍ଛିନ୍ନତାବାଦ ସୃଷ୍ଟି ମୂଳରେ ଉପକୂଳ ସାହିତ୍ୟିକଙ୍କର ବିଶେଷ ଦାନ ରହିଛି। ତାଂକରି ଯୋଗୁଁ ଓଡ଼ିଆ ସାହିତ୍ୟରେ ଦେଶିଆ, ସଂବଲପୁରୀ ଆଦି ଆଂଚଳିକ ଭାଷା ବା ବୋଲିକୁ ଆଦରି ନେବାର ତାକତ ଲୋପ ପାଇଛି। ଆଦରି ନେଲେ ଯଦି ଆଉ ଦୁଇ ଚାରି ହଜାର

Digitized by srujanika@gmail.com

ଅଧିକ ଶବ୍ଦ ଓଡ଼ିଆରେ ମିଶି ପାରନ୍ତା, ତା କି ଖରାପ କଥା ? ବରଂ ଭାଷା-ନଦୀ ଅଧିକ ପ୍ରବହମାନ, ବେଗବତୀ ଓ ଚିରସ୍ରୋତା ହେବ। ଜଳାଧାର ସୀମିତ, ଆବଦ୍ଧ ହୋଇଗଲେ ତାହା ସ୍ୱଚ୍ଛତା ହରାଏ, ସେଥିରେ ନେଳି ଚରିଯାଏ, ବେଳେବେଳେ ଦୁର୍ଗନ୍ଧ ଉକୁଟେ। 'ଚାବି'ଟା ଯଦି କେଉଁଠି ଚାବିକାଠି' ହୁଏ, ପୁଣି କେଉଁଠି କାମୁଡ଼ିବା ଅର୍ଥରେ ବ୍ୟବହାର ହୁଏ, ଭାଷା କି ତହିଁରେ ଦୁର୍ବଳ ହେବ ? ତେବେ ନିଜ କାବ୍ୟରେ ନଳିନୀ ଶବ୍ଦର ଚାରୋଟି ଅର୍ଥ ବିନ୍ୟାସ କରି ଉପେନ୍ଦ୍ର ଭଂଜ କି ଭାଷାର ସର୍ବନାଶ କଲେ ବୋଲି ବୁଝିବା ?

କେତେଜଣ ଅପାଂକ୍ତେୟ କିନ୍ତୁ ବଳଶାଳୀ ବ୍ୟକ୍ତି ସମାଜରେ ଯେମିତି ରାଜୁତି କରନ୍ତି, ଭାଷାରେ ବି ସେମିତି। ଜଣାକେତେଂକୁ ଆଦର କରି, ବାକୀମାନଂକୁ ଉପେକ୍ଷା କରିବା ତାଂକର ଧର୍ମ, ଶାସକୀୟ ଚରିତ୍ର। କିନ୍ତୁ ସମାଜ ବା ଭାଷାର ସେହି ସୁଦୀର୍ଘ ଇତିହାସର ସିଡ଼ିକୁ ମାପିଲେ ତାଂକ ବୈଭବ ପାଣି ଫୋଟକା ପରି। ଗିୟାସୁଦ୍ଦିନ ବଲବନ ବା ଜଲ୍ଲାଲୁଦ୍ଦିନ ଖିଲିଜୀ ସ୍ୱ ସ୍ୱ ରାଜୁତି କାଳରେ କି ରାହୁ କେତୁ ଠାରୁ କମ୍ ବଳଶାଳୀ ହୋଇଥିବେ ? କିନ୍ତୁ ଇତିହାସର ବିଶାଳ ଭୂଖଣ୍ଡରେ ସେମାନେ ଆଜି ଅଗା, ବଗା ଓ ଖଗାଠାରୁ କେଉଁ ଗୁଣରେ ଫରକ୍, ବେଶି ମର୍ଯ୍ୟାଦାବାନ ? ଆମେ ତାତ୍କାଳିକ ସମୟକୁ ସବୁକିଛି ବୋଲି ଧରି ନେଉ। ତେଣୁ ସାମାଜିକ ପ୍ରଭାବ ଦେଖାଇ କିଏ ଯଦି କିଛି ପୁରସ୍କାର ନେଇଗଲା ବା ନିଜ ଭାଇ ବଂଧୁଂକୁ ପୁରସ୍କାର ଦେଇ ଦେଲା, ଭାବୁ, ସବୁ ସରିଗଲା। କିନ୍ତୁ ଶହେ କି ଦୁଇ ଶହ ବର୍ଷ ପରେ ସତରେ କି ସେମାନେ, ଯଦି ସାହିତ୍ୟିକ ଭିତ୍ତି ନାହିଁ, ବେଳାଭୂମିରେ ଉପଲଖଣ୍ଡ ସମାନ ସ୍ଥାନ ପାଇବେ ?

କହିବାର ଅର୍ଥ ହେଲା ଯେ, ଓଡ଼ିଆ ଏକ ଶାଶ୍ୱତ ଭାଷା। ତାକୁ କବଜା କରିଥିବା କେତେକ ବ୍ୟକ୍ତି ପାଇଁ ସେ ବଦନାମ ହୋଇ ନ ପାରେ। ତେଣୁ ସଂବଲପୁରୀ ଓ ଓଡ଼ିଆ ମଧ୍ୟରେ ଏକ ସ୍ୱାଭାବିକ, ଅର୍ଥପୂର୍ଣ୍ଣ ସହଯୋଗ ରହିବା କଥା। ଓଡ଼ିଆରେ ଅଧିକରୁ ଅଧିକ ସଂବଲପୁରୀ ଶବ୍ଦ ବ୍ୟବହାର ତ ବିଶେଷ କରି ପଶ୍ଚିମାଂଚଳର ଲେଖକଂକ ଦାୟିତ୍ୱ। କତିପୟ ବ୍ୟକ୍ତିଂକ ଆକ୍ଷେପ ବା ଉପେକ୍ଷାକୁ ଭୃକ୍ଷେପ ନ କରି ଏ ଧାରା ଚାଲିବା କଥା। ତଦ୍ୱାରା ଓଡ଼ିଆର ଶବ୍ଦଭଣ୍ଡାର ବୃଦ୍ଧି ପାଇବ, ସାହିତ୍ୟର ମାନ ସମୁନ୍ନତ ହେବ।

ଏହି ସଂଦର୍ଭରେ କେତେକ ପଶ୍ଚିମାଂଚଳର ଲେଖକ ଯେତେବେଳେ କହନ୍ତି, ଓଡ଼ିଆ ଲେଖିବା ଛାଡ଼ି ଦେଲେଣି, ଶୁଣି ଖୁସିଲାଗେ ଯେତେ, ଦୁଃଖ ଲାଗେ ଅଧିକ। ଖୁସି ଲାଗେ, କାରଣ ସେମାନେ ନିଜ ମାତୃଭାଷାରେ ଲେଖୁଛନ୍ତି; ଅନ୍ତରର ଗଭୀରତମ ପ୍ରଦେଶର ଭାବ ଓ ଆବେଗକୁ ପରିପ୍ରକାଶ କରିବା ପାଇଁ ସଂବଲପୁରୀ ସେମାନଂକୁ ସହଯୋଗ କରିଛି। କିନ୍ତୁ ଦୁଃଖ ଲାଗେ ଯେ, ସ୍ୱତଃସ୍ଫୁର୍ତ୍ତ ଭାବେ ନୁହେଁ, ଏକ ପ୍ରତିଯୋଗୀ ଭାବ ନେଇ ସେମାନେ ଓଡ଼ିଆରେ ଲେଖିବା ଛାଡ଼ିଛନ୍ତି। ଏହା କୌଣସି ଶୁଭ ଲକ୍ଷଣ ନୁହେଁ।

Digitized by srujanika@gmail.com

ଦୁହିଁଙ୍କ ମଧ୍ୟରେ ବରାବର ଆଦାନ ପ୍ରଦାନର ଆବଶ୍ୟକତା ଅଛି। ଏକ ପୂର୍ଣ୍ଣାଂଗ ଭାଷା ରୂପେ ବିକଶିତ ହେବାକୁ ହେଲେ, ସଂବଲପୁରୀକୁ ଅନେକ ନୂଆ ଶବ୍ଦର ପ୍ରୟୋଜନ ହେବ। ସ୍ୱାଭାବିକ ଭାବେ ଓଡ଼ିଆରୁ ହିଁ ସେ ଏହାନେଇ ପାରିବ। ଠିକ ସେମିତି ଓଡ଼ିଆରେ ସଂବଲପୁରୀ ଶବ୍ଦ ପଶିବା କଥା। ସ୍ୱାଭାବିକ ଢଂଗରେ ଶବ୍ଦ ଆହରଣ କଲେ ଭାଷା ଋଣୀ ହୁଏନା, ଧନୀ ହୁଏ। ଅଯଥା ଶବ୍ଦ ଲଦା ହେଲେ ଅବଶ୍ୟ କଥା ଅଲଗା।

ଅନେକ ସଂବଲପୁରୀବିଦ ଯୁକ୍ତି କରନ୍ତି, ସଂବଲପୁରୀ ସଂସ୍କୃତରୁ ଗୃହୀତ। ଭାଷାର ପରିପକ୍ୱତା, ପୁରାତନତା ଦର୍ଶାଇବାକୁ ହେଲେ ଏକଥା ସାଧାରଣତଃ କୁହାଯାଏ। ଓଡ଼ିଆ ବଂଗାଳିର ଉପଭାଷା ନୁହେ, ଏକ ସ୍ୱତନ୍ତ୍ର ଭାଷା ବୋଲି ଯୁକ୍ତି କଲାବେଳେ ମଧ୍ୟ ଅତୀତରେ ଏହି ଯୁକ୍ତି ବଢ଼ାଯାଉଥିଲା। କିନ୍ତୁ ଏହା କହି ଆମେ ତାକୁ କ'ଣ ସଂସ୍କୃତର ଉପଭାଷା ବୋଲି ସ୍ୱୀକାର କରି ଯାଉ ନାହୁଁ? ତେବେ ସଂବଲପୁରୀ ସ୍ୱତନ୍ତ୍ର ଭାଷା ହେଲା କେମିତି ?

ଅସଲରେ ପ୍ରତ୍ୟେକ ଭାଷା ନିଜ ଆବଶ୍ୟକତା, ଜନ ସାଧାରଣଂକ ମଧ୍ୟରେ ଯୋଗାଯୋଗକୁ ଧ୍ୟାନରେ ରଖି ଅନ୍ୟଭାଷାରୁ ଶବ୍ଦ, ଭାବ ଆଦି ଆହରଣ କରିଥାନ୍ତି। ତେଣୁ ସଂବଲପୁରୀ ବିଭିନ୍ନ ସମୟ ଓ ଅବସରରେ ନିଜ ପରିପାର୍ଶ୍ୱର ସଂସ୍କୃତ, ଓଡ଼ିଆ, ଲରିଆ, ଆଦିବାସୀ ଭାଷାରୁ ଶବ୍ଦ ନେଇଥିବ। ଏହା ସାଧାରଣ କଥା। ବରଂ ଭାଷାର ମୂଳ ଉତ୍ସ ଖୋଜିବା ବେଳେ ଆଦିବାସୀ ଆଦି ଭାଷାକୁ ମଧ୍ୟ ଉଚିତ ପ୍ରାଧାନ୍ୟ ଦେବା ଉଚିତ। ଏମିତି ଦେଖିଲେ, ସଂସ୍କୃତ ତୁଳନାରେ ଆଦିବାସୀ ଭାଷାର ନା ପରିପକ୍ୱତା କମ୍, ନା ପୁରାତନତା କମ୍। ଅନ୍ୟପକ୍ଷରେ ତା ଦାନକୁ ସ୍ୱୀକାର ନ କରିବା ଦ୍ୱାରା ଆମର ରୁଗ୍ଣ ମାନସିକତା ଓ ସାମାଜିକ ଅଚେତନତାର ପର୍ଦ୍ଦାଫାଶ ହୁଏ। ଆକ୍ଷେପଟି ଜଣାକେତେ ସଂବଲପୁରୀବିଦଂକ ଉଦ୍ଦେଶ୍ୟରେ କେବଳ ନୁହେଁ, ଅନେକ ତଥାକଥିତ ଓଡ଼ିଆ ଭାଷାବିଦଂକ ସମ୍ବନ୍ଧରେ ମଧ୍ୟ ପ୍ରଯୁଜ୍ୟ।

ଉଗ୍ର ଆଧୁନିକତାର ପରିଣାମ ସ୍ୱରୂପ ଆଜି ମଣିଷ ଉପରେ ମଣିଷର ଯେମିତି ପ୍ରଭୁତ୍ୱ ବଢ଼ିଚାଲିଛି, ଅନେକ ଭାଷା ଓ ସଂସ୍କୃତି ଉପରେ ସେମିତି କତିପୟ ଭାଷା ଓ ସଂସ୍କୃତିର ଦାଦାଗିରି ବଢ଼ୁଛି। ଅନେକ ଭିତରେ ଶିଶୁ ସଂବଲପୁରୀ ତ ଅଛି, ଓଡ଼ିଆ ବି ବାଦ ପଡ଼ିନି। ଇତିହାସର ଏହି ଘଡ଼ିସଂଧି ମୁହୂର୍ତ୍ତରେ ସଂବଲପୁରୀର ମୁଣ୍ଡ ଟେକିବା ଏକ ମହତ୍ତ୍ୱପୂର୍ଣ୍ଣ ଅଧ୍ୟାୟ। ତାକୁ ସ୍ଥାୟୀ ଓ ହୃଷ୍ଟପୁଷ୍ଟ ହେବାକୁ ହେଲେ ତହିଁରେ ଥିବା ବିସଂଗତିଗୁଡ଼ିକ ପ୍ରତି ସଚେତନ ହେବା ଅପ୍ରାସଙ୍ଗିକ କି ଅ-ବିଧେୟ ନୁହେଁ। ଅନ୍ୟଥା, ଆଂଦୋଳନ କ୍ଷଣସ୍ଥାୟୀ ହେବାର ଆଶଂକା ଯେତେ, ବିକୃତ ହେବାର ଡର ଅଧିକ।

(୧୯୯୬)

Digitized by srujanika@gmail.com

# ଭାରତରେ ସମାଜବାଦୀ ଆଂଦୋଳନ

୧୯୩୦ ମସିହାରେ କଂଗ୍ରେସର ଆଇନ ଅମାନ୍ୟ ଆଂଦୋଳନ ଆରଂଭ ହେଲା। ୧୯୨୧ ମସିହାର ଅସହଯୋଗ ଆଂଦୋଳନ ପରେ ପ୍ରାୟ ଦଶବର୍ଷ ଉତ୍ତାରୁ ଏହାହିଁ ଥିଲା ପ୍ରଥମ ବ୍ରିଟିଶ ଉପନିବେଶବାଦ ବିରୋଧୀ ଗଣ ଆଂଦୋଳନ। ମହାତ୍ମା ଗାଂଧିଂକର ରଚନାତ୍ମକ କାର୍ଯ୍ୟକ୍ରମ ଏବଂ ସ୍ୱରାଜ୍ୟ ଦଳର ସଂସଦୀୟ କାର୍ଯ୍ୟପନ୍ଥା ଯେଉଁ ଯୁବ ଗୋଷ୍ଠୀକୁ ଜାତୀୟ ଆଂଦୋଳନ ପ୍ରତି ଆକୃଷ୍ଟ କରି ପାରି ନ ଥିଲା, ଆଇନ ଅମାନ୍ୟ ଅଦ୍ୟାଙ୍କ ସମୟରେ ସେମାନଂକୁ ନିଜ ଭିତରେ ସକ୍ରିୟ କରି ପକାଇଲା। କଂଗ୍ରେସର ବର୍ଷିୟାନ ନେତାଂକ ସହ ସମସ୍କଂଧ ହୋଇ ଯୁବକଗଣ ପିକେଟିଂ କଲେ, ଜେଲ ଗଲେ। ମହାରାଷ୍ଟ୍ରର ନାସିକ ଜେଲରେ ଆବଦ୍ଧ କେତେଜଣ ଏଭଳିଆ ଯୁବ କଂଗ୍ରେସୀଂକ ଗଭୀର ଆଲୋଚନାର ପରିଣାମ ସ୍ୱରୂପ ୧୯୩୪ ମସିହା ଅକ୍ଟୋବର ମାସରେ ବଂବେ ଠାରେ ଗଢ଼ି ଉଠିଲା କଂଗ୍ରେସ ସୋସିଆଲିଷ୍ଟ ପାର୍ଟି। ପରବର୍ତ୍ତି ସମୟରେ ଭାରତ ଇତିହାସରେ ସମାଜବାଦୀ ଆଂଦୋଳନର ଯେଉଁ ମୂଳଦୁଆ ପଡ଼ିଲା ତାର କର୍ଣ୍ଣଧାର ଥିଲେ ଉକ୍ତ ଯୁବକଂଗ୍ରେସୀ ଗୋଷ୍ଠୀ ଏବଂ ସେମାନଂକ ଦ୍ୱାରା ନବ ଗଠିତ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି।

୧୯୭୭ ମସିହାରେ କଂଗ୍ରେସର ଏକଛତ୍ରବାଦ ଓ ଇଂଦିରା ଗାଂଧିଂକର ଜରୁରୀ ପରିସ୍ଥିତିର ବିରୋଧ କରି ଦେଶର ବିଭିନ୍ନ ଗଣତାନ୍ତ୍ରିକ ସଂଗଠନ ସବୁ ଏକଯୁଟ ହେଲେ। ନିର୍ବାଚନ ମାଧ୍ୟମରେ କଂଗ୍ରେସୀ ଅଂଧାରି ମୂଳକର ଉଚ୍ଛେଦ ନିମନ୍ତେ ସଂଗଠିତ ହେଲା ଜନତା ଦଳ। ଜାତୀୟ କଂଗ୍ରେସର ସନ୍ତାନ ଏବଂ ଶକ୍ତିବର୍ଦ୍ଧକ ରୂପରେ ଜନ୍ମ ନେଇଥିବା କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ପ୍ରାୟ ଚାଳିଶ ବର୍ଷ ପରେ ୧୯୭୭ ମସିହା ବେଳକୁ କଂଗ୍ରେସକୁ ଶକ୍ତିହୀନ, କ୍ଷମତାଚ୍ୟୁତ କରିବା ନିମିତ୍ତ ଜନତାଦଳର ମେରୁଦଣ୍ଡ ସାଜିଲା, ନିଜ ଅସ୍ତିତ୍ୱ ପାଶୋରିଲା। ତା'ପରଠୁ ସମାଜବାଦୀ ଅଛନ୍ତି, ସୋସିଆଲିଷ୍ଟ ପାର୍ଟି ନାହିଁ। ଇତିହାସର ଗିରି ଗହ୍ୱରରେ ବିସର୍ଜନ ହୋଇ ଯାଇଛି ତାର ଜନ୍ମ ଜାତକ। ବାଲ୍ୟବସ୍ଥାଠାରୁ ଦୀର୍ଘ ଚାଳିଶ ବର୍ଷର ପ୍ରୌଢ଼ତ୍ୱ ପ୍ରାପ୍ତି ପର୍ଯ୍ୟନ୍ତ ସୋସିଆଲିଷ୍ଟ ପାର୍ଟିର ଏ ଯେଉଁ ଆଂଦୋଳନ ତାହା କଂଗ୍ରେସକୁ ବାଦ ଦେଇ ଅଧ୍ୟୟନ କରାଯାଇ ପାରେନା। କେବେ ଜାତୀୟତାର ସନ୍ତକ କଂଗ୍ରେସକୁ ଆବୋରି ନେଇଛି ତ ଆଉ କେବେ ରକ୍ଷଣଶୀଳତାର ଜାଲରେ ଆବଦ୍ଧ କଂଗ୍ରେସଠାରୁ ଦୂରେଇ ଯାଇଛି ସେ।

Digitized by srujanika@gmail.com

ତେଣୁ ସ୍ୱାଧୀନୋତ୍ତର ଭାରତ ଗଠନ ବା ପତନ ଦିଗରେ କଂଗ୍ରେସର ଯେଉଁ ଭୂମିକା, ସୋସିଆଲିଷ୍ଟ ପାର୍ଟି ଏବଂ ତାରି ନେତୃତ୍ୱରେ ପରିଚାଳିତ ସମାଜବାଦୀ ଆଂଦୋଳନର ଭୂମିକା ତା'ଠାରୁ କମ୍ ମହତ୍ୱପୂର୍ଣ୍ଣ ହୋଇ ନପାରେ। ଅର୍ଥାତ ତାର ସିଂହାବଲୋକନ ଅତ୍ୟାବଶ୍ୟକ ହୋଇ ନପାରେ, କିନ୍ତୁ ଅନାବଶ୍ୟକ ନୁହେଁ; ବରଂ ଭାବୀ ପୀଢ଼ିକୁ ଦିଗ୍‌ଦର୍ଶନ ଦେବାରେ ବା ଅତି କମରେ ଭଲ-ଭୂଲ ବାଛିବାରେ ସହାୟକ ବି ହୋଇପାରେ।

ଜାତୀୟ କଂଗ୍ରେସ ଦ୍ୱାରା ପରିଚାଳିତ ବ୍ରିଟିଶ ଉପନିବେଶବାଦ ବିରୋଧୀ ଆନ୍ଦୋଳନ ବା ଜାତୀୟ ଆଂଦୋଳନ ପ୍ରାରଂମ୍ଭରୁ କେବେ ସମାଜବାଦୀ ନ ଥିଲା। ଉପନିବେଶବାଦ ଯେହେତୁ ଦେଶର ସମସ୍ତ ବର୍ଗ ବା ଶ୍ରେଣୀର ଶତ୍ରୁ, କଂଗ୍ରେସ 'ଶ୍ରେଣୀ ଶତ୍ରୁ' ବିରୁଦ୍ଧରେ ସଂଗ୍ରାମ ନ କରି, ସମସ୍ତ ଶ୍ରେଣୀକୁ ଏକ ମିଳିତ ମଂଚରେ ଏକତ୍ରିତ କରି ଉପନିବେଶବାଦ ବିରୋଧରେ ସଂଗ୍ରାମ କରିବାକୁ ଆହ୍ୱାନ କରୁଥିଲା। ମାତ୍ର ଏଭଳି ସର୍ବଶ୍ରେଣୀୟ ଆଂଦୋଳନ/ସଂଗ୍ରାମରେ ସର୍ବଦା ସମାଜରେ ପ୍ରାଧାନ୍ୟ ଲାଭ କରିସାରିଥିବା ଉଚ୍ଚ ଧନୀକ ବର୍ଗ ହିଁ ସ୍ୱ ପ୍ରଭୂତ୍ୱ ବିସ୍ତାର ଓ ସ୍ଥାପନ କରିଥାନ୍ତି। ଗରିବ, ଅଶିକ୍ଷିତ ବର୍ଗର ଆଶା, ଆକାଂକ୍ଷାର ପ୍ରତିଫଳନ ସେଠି ସଂଭବପର ହୁଏନା। ଉଚ୍ଚ ସ୍ୱଚ୍ଛଳ ବର୍ଗର ପ୍ରଭୁତ୍ୱ ଯୋଗୁ ଗରିବ ନିମ୍ନ ବର୍ଗ ଉକ୍ତ ସର୍ବଶ୍ରେଣୀୟ ଆଂଦୋଳନରେ ସକ୍ରୀୟ ଭାବେ ନିଜକୁ ସାମିଲ ମଧ କରି ପାରନ୍ତି ନାହିଁ। ଅନ୍ୟ ଅର୍ଥରେ ତଥାକଥିତ ସର୍ବ-ଶ୍ରେଣୀୟ ଆଂଦୋଳନ ସବୁ ଶ୍ରେଣୀର ସହଯୋଗ ନେବାରେ ତ ଆପତ୍ତି କରେନା; ହେଲେ ବିଭିନ୍ନ ଶ୍ରେଣୀକୁ ଆବଶ୍ୟକ ମହତ୍ୱ ଦେବାରେ ହେଳା ଓ କୁଣ୍ଠା କରେ; କେବଳ ଉଚ୍ଚ ବର୍ଗର ହାତବାରିସି ହେବା ହିଁ ତାର ସାର ହୁଏ। ଫଳତଃ ଶୋଷିତ ବର୍ଗର ସ୍ୱାର୍ଥ ରକ୍ଷା ପାଇଁ ସ୍ୱତନ୍ତ୍ର ଶ୍ରେଣୀ ସଂଗଠନ ଅପରିହାର୍ଯ୍ୟ ହୋଇପଡ଼େ।

ଏହି ପରିପ୍ରେକ୍ଷୀରେ ୧୯୨୫ ମସିହା ଡିସେଂବର ମାସରେ ଏକ ଶୋଷଣ ବିହୀନ ସାମ୍ୟବାଦୀ ସମାଜ ଗଠନ ଉଦ୍ଦେଶ୍ୟରେ କାନପୁରଠାରେ କମ୍ୟୁନିଷ୍ଟ ଦଳ ଗଠନର ଆବଶ୍ୟକତା ସ୍ପଷ୍ଟ ବୁଝାପଡ଼େ। ଦଳର ସଂଗଠକ ଥିଲେ ସତ୍ୟଭକ୍ତ, ମୁଜାଫର ଅହମଦ, ଆୟେଂଗର, କେ.ଏନ. ଜୁଗଲେକର, ଏସ. ଭି. ଘାଟେ, ଅଯୋଧ୍ୟା ପ୍ରସାଦ ଓ ଅବଦୁଲ ମାଜିଦ ପ୍ରମୁଖ। ମାର୍କ୍ସବାଦୀୟ ଶ୍ରେଣୀ ସଂଘର୍ଷର ଚିନ୍ତାଧାରାରେ ଉଦବୃଦ୍ଧ ଏହି ସାମ୍ୟବାଦୀ ଗୋଷ୍ଠୀ ଜାତୀୟ ଆଂଦୋଳନର ଅନାବଶ୍ୟକତାକୁ ହୃଦୟଗଂମ କଲେ ବୋଲି କଂଗ୍ରେସର ବିକଳ୍ପ ରୂପେ ନିଜକୁ ପ୍ରସ୍ତୁତ କଲେ। କଂଗ୍ରେସର ସମାନ୍ତରାଳ ସଂଗଠନ ଭାବେ ନିଜର ଅସ୍ତିତ୍ୱ ଖୋଜୁଥିବାରୁ ସେମାନେ କଂଗ୍ରେସ ଅଧିବେଶନ ସମୟରେ ହିଁ ଏକ ଭିନ୍ନ ରାଜନୈତିକ ମଂଚର ପ୍ରସ୍ତୁତି କଲେ।

ପ୍ରକୃତରେ ଦେଖିବାକୁ ଗଲେ କମ୍ୟୁନିଷ୍ଟମାନଂକର କଂଗ୍ରେସ ଓ ଜାତୀୟତା ବିରୋଧୀ ଭାବ ହିଁ ପରବର୍ତ୍ତି ସମୟରେ ସମାଜବାଦୀମାନଂକୁ କମ୍ୟୁନିଷ୍ଟଦଳରେ ସାମିଲ

Digitized by srujanika@gmail.com

ହେବାରୁ ବାରଣ କଲା । ନୋହିଲେ କମ୍ୟୁନିଷ୍ଟମାନଂକ ପରି ଏକ ଶୋଷଣ ବିହୀନ ସମାଜ ଗଠନର ଲକ୍ଷ୍ୟ ପରିପୋଷଣ କରୁଥିବା ସତ୍ତ୍ୱେ ସମାଜବାଦୀମାନେ କମ୍ୟୁନିଷ୍ଟଦଳ ସ୍ଥାପନର ପ୍ରାୟ ଏକ ଦଶଂଧି ପରେ ୧୯୩୪ ମସିହାରେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ନାମରେ ଏକ ଭିନ୍ନ ମଂଚ ନିର୍ମାଣ କରିବାର ଆବଶ୍ୟକତା ଅନୁଭବ କରିଥାନ୍ତେ ବା କାହିଁକି ? ସର୍ବଶ୍ରେଣୀୟ ଆଂଦୋଳନ ଆଳରେ କଂଗ୍ରେସ ଦ୍ୱାରା ଶୋଷିତ ବର୍ଗର ଉପେକ୍ଷା ଯେମିତି କମ୍ୟୁନିଷ୍ଟମାନଂକୁ ଜାତୀୟତା ବିଦ୍ୱେଷୀ କରି ଗଢ଼ି ତୋଳିଲା, କମ୍ୟୁନିଷ୍ଟମାନଂକର ଜାତୀୟତା ବିରୋଧୀ ଭାବ ସେମିତି ସମାଜବାଦୀମାନଂକୁ କମ୍ୟୁନିଷ୍ଟ ବିରୋଧୀ ରୂପେ ପରିଚୟ ଦେଲା । ତେଣୁ ଗୋଟାଏ ବାକ୍ୟରେ କହିବାକୁ ଗଲେ ସାମ୍ୟବାଦରେ ଜାତୀୟତା ଓ ଜାତୀୟତା ଆନ୍ଦୋଳନରେ ସମତା ଭାବ ପ୍ରତି ଆନ୍ତରିକତା ସୃଷ୍ଟି ଥିଲା ସମାଜବାଦୀ ଆନ୍ଦୋଳନର ଭିନ୍ନ ନାମ, ମୁଖ୍ୟ ଉଦ୍ଦେଶ୍ୟ ।

ଜାତୀୟତାର ପ୍ରଶ୍ନ ଯେ ସମାଜବାଦୀ ଓ କମ୍ୟୁନିଷ୍ଟମାନଂକ ମଧ୍ୟରେ ଥିବା ପାର୍ଥକ୍ୟର ଏକମାତ୍ର କାରଣ ଏହା କହିବା ସମୀଚନ ହେବ ନାହିଁ । ଜାତୀୟତାକୁ ବାଦ ଦେଇ ଅନ୍ୟ କେତେଗୋଟି ପ୍ରଶ୍ନରେ ମଧ ଉଭୟଂକ ଦୃଷ୍ଟିକୋଣ ଥିଲା ଭିନ୍ନ, ବରଂ, ବିପରୀତମୁଖୀ । ତେଣୁ ଅଲଗା ଅଲଗା ମଂଚ ପ୍ରସ୍ତୁତି ଥିଲା ଉଭୟ ଗୋଷ୍ଠୀ ପାଇଁ ଅବଶ୍ୟଂଭାବୀ ଆବଶ୍ୟକତା ।

ଉଦାହରଣ ସ୍ୱରୂପ ଲକ୍ଷ୍ୟ ସାଧନ ନିମନ୍ତେ ପନ୍ଥା ନିର୍ଦ୍ଧାରଣର ପ୍ରଶ୍ନକୁ ନିଆଯାଇ ପାରେ । କମ୍ୟୁନିଷ୍ଟମାନଂକ ଦୃଷ୍ଟିରେ ପନ୍ଥା ଯାହା ହେଉନା କାହିଁକି ଲକ୍ଷ୍ୟ ମହତ ହେଲେ, ତାର ସାଧନ ନିମନ୍ତେ ପନ୍ଥା ମଧ ଆପେ ଆପେ ମହତ ହୋଇପଡ଼େ; ସଚେତ ଭାବରେ ତାକୁ ମହତ ହେବାର ଆବଶ୍ୟକତା ନ ଥାଏ । ମାତ୍ର ଅନ୍ୟପକ୍ଷରେ ସମାଜବାଦୀମାନଂକ ବିଚାରରେ ମହତ ଲକ୍ଷ୍ୟ ସାଧନ ନିମନ୍ତେ ପନ୍ଥା ମହତ ହେବା ଅତି ଜରୁରୀ । ପନ୍ଥା ମହତ ନ ହେଲେ ସାଧିତ ଲକ୍ଷ୍ୟ ମଧ ମହତ ହୋଇ ପାରେନା । ବାହ୍ୟ ଦୃଷ୍ଟିରେ ପାର୍ଥକ୍ୟଟି ଜଟିଳ ଜଣା ପଡୁନଥିଲେ ସୁଦ୍ଧା ଆଂଦୋଳନରେ ହିଂସା ବା ଅହିଂସାର ଉପଯୋଗିତା ପ୍ରଶ୍ନ ସହ ଜଡ଼ିତ ଥିବାରୁ ଏହା ବେଶ ମହତ୍ତ୍ୱପୂର୍ଣ୍ଣ । ଶୋଷଣ ବିହୀନ ସମାଜ ଭଳି ଏକ ମହତ ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ହିଂସା ପରି 'ଘୃଣ୍ୟ' ପନ୍ଥାର ଆଶ୍ରୟ ନେବା ଥିଲା ସମାଜବାଦୀମାନଂକ ପାଇଁ ଅଯୌକ୍ତିକ; ମାତ୍ର କମ୍ୟୁନିଷ୍ଟମାନଂକ ପାଇଁ ଏହା ଥିଲା ଅପରିତ୍ୟାଜ୍ୟ । ତେଣୁ ଜୟପ୍ରକାଶ ନାରାୟଣ, ନରେଂଦ୍ର ଦେବ ଆଦି ସମାଜବାଦୀ ଦିଗ୍ଗଜମାନେ କାୟମନୋ ବାକ୍ୟରେ ମାର୍କ୍ସବାଦୀୟ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇଥିଲେ ସୁଦ୍ଧା, ଅହିଂସା ପନ୍ଥାର ପରିପୋଷଣ କରୁଥିବା ଗାଂଧିବାଦ କେବେ ସେମାନଂକ ଚିନ୍ତାର ପରିପନ୍ଥୀ ହୋଇ ପାରିନଥିଲା । ଅର୍ଥାତ୍ କମ୍ୟୁନିଷ୍ଟମାନଂକ ଦୃଷ୍ଟିରେ ଗାଂଧିବାଦ, ଜାତୀୟତା ପରି, ଶୋଷଣ ବିହୀନ ସମାଜର ପରିପନ୍ଥୀ ହୋଇଥିବା ସ୍ଥଳେ, ସମାଜବାଦୀମାନଂକ ଦୃଷ୍ଟିରେ ଥିଲା ଅନୁପୂରକ ।

Digitized by srujanika@gmail.com

ବିଂଶ ଶତାବ୍ଦୀର ତିଂଶ ଶତକ ବେଳକୁ ବିଶ୍ୱସ୍ତରରେ ରାଜନୈତିକ ପରିବର୍ତ୍ତନର ପ୍ରକ୍ରିୟା ଦୃଢ଼ୀଭୂତ ହେବାରେ ଲାଗିଥିଲା । ରୁଷ ବିପ୍ଳବ, ଚାରିଆଡ଼େ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ; ପୁଣି ୧୯୨୯ ମସିହାର ପୁଂଜିବାଦୀୟ ସଂକଟ ଦେଶର ବିଭିନ୍ନ ପ୍ରାନ୍ତରେ ଯୁବଗୋଷ୍ଠୀକୁ ପ୍ରଗତିଶୀଳ ଆଦର୍ଶ ପ୍ରତି ଆକୃଷ୍ଟ କରିବାରେ ଲାଗିଲା । ରାଜନୀତିର ଏଭଳି କ୍ରମ ସମାଜବାଦୀକରଣର ଧାରାକୁ ଜାତୀୟ କଂଗ୍ରେସ ଅସ୍ୱୀକାର କଲା ନାହିଁ; ବରଂ ନିରବରେ ଚାପ କେତେଗୋଟି ପ୍ରଗତିଶୀଳ କାର୍ଯ୍ୟକ୍ରମକୁ ଅନ୍ତଃକରଣ କରି ପକାଇଲା । ସମାଜବାଦୀମାନଂକ କମ୍ୟୁନିଷ୍ଟ ଦଳରେ ସାମିଲ ନ ହୋଇ କଂଗ୍ରେସକୁ ଅଂଗୀକାର କରିବା ପଛରେ ଏଭଳି ଅନ୍ତଃକରଣ ଥିଲା ଅନ୍ୟତମ ମୁଖ୍ୟ କାରଣ ।

ସେତେବେଳେ କଂଗ୍ରେସ ଦଳ ଥିଲା ଏକ ମୁକ୍ତ ରାଜନୈତିକ ମଂଚ ସଦୃଶ, ଉପନିବେଶବାଦ ବିରୋଧୀ ଆଂଦୋଳନର ସଚ୍ଚା ପ୍ରତିନିଧି । ଏକ ପକ୍ଷରେ ଉଚ୍ଚ ବର୍ଗର ସେଥିରେ ପ୍ରାଧାନ୍ୟ ଥିଲା, ମାତ୍ର ଅନ୍ୟ ପକ୍ଷରେ ଅନ୍ୟାନ୍ୟ ବର୍ଗ ପାଇଁ ମଧ କେବେ ତାର ଦ୍ୱାର ବଂଦ ନ ଥିଲା । ଏହି ହେତୁ ପରିବର୍ତ୍ତିତ ପରିସ୍ଥିତିରେ ରାଜନୀତିର ପ୍ରଗତିଶୀଳ ମୋଡ଼କୁ ସ୍ୱୀକାର କରିବା ତା' ପକ୍ଷେ ଦୁଃସାଧ ହେଲା ନାହିଁ । ବରଂ ଏହା ପ୍ରଗତିଶୀଳ ଯୁବକଂଗ୍ରେସୀ ଗୋଷ୍ଠୀକୁ ଧରି ରଖିବାରେ ତାକୁ ଅଧିକ ସାହାଯ୍ୟ କଲା ।

୧୯୩୧ ମସିହାର କରାଚି ମହାଅଧିବେଶନ ସମୟରେ କଂଗ୍ରେସ ପ୍ରଥମ ଥର ପାଇଁ କୌଣସି ପ୍ରଗତିଶୀଳ କାର୍ଯ୍ୟକ୍ରମକୁ ଅନ୍ତଃକରଣ କରିବାର ସୁଯୋଗ ପାଇଲା । ସଶସ୍ତ୍ର ବିପ୍ଳବୀ ଭଗତ ସିଂ, ରାଯଗୁରୁ, ଏବଂ ସୁଖଦେବଂକୁ ଫାସୀ ଆଦେଶ ହେବା ପରେ ଭାଇସରାଏ ଇରୱିନଂକ ସହ ଆଲୋଚନା ବେଳେ ଗାଂଧିଂକର ଏ ସଂପର୍କରେ ମୌନତା ଏବଂ ତା ଅନ୍ତେ ବିପ୍ଳବୀଗଣଂକର ଫାସୀ ସାଧାରଣ ମହଲରେ କଂଗ୍ରେସ ଓ ଗାଂଧିଂକର ଭାବମୂର୍ତ୍ତିକୁ ଅନେକ ପରିମାଣରେ କ୍ଷୁର୍ଣ୍ଣ କରିଥାଏ । ଅଧିବେଶନ ପ୍ରାଂଗଣରେ ପହଂଚି ଗାଂଧି ଓ ସର୍ଦ୍ଦାର ପଟେଲ ଯୁବ ଗୋଷ୍ଠୀ ଦ୍ୱାରା ପ୍ରଦର୍ଶିତ ବିକ୍ଷୋଭର ମଧ ସମ୍ମୁଖୀନ ହୋଇ ସାରିଥାନ୍ତି । ଏଭଳି ଏକ ଘଡ଼ିସଂଧି ମୁହୂର୍ତ୍ତରେ ଦେଶର ରାଜନୈତିକ ସ୍ୱାଧୀନତା ସହ ଜନସାଧାରଣଂକ ଆର୍ଥିକ ସ୍ୱାଧୀନତାର ପ୍ରଶ୍ନକୁ ମଧ ସାମିଲ କରି କଂଗ୍ରେସ ପ୍ରସ୍ତାବ ପାସ କଲା । ସମାଜବାଦ ଦିଗରେ ଯଦିଓ କଂଗ୍ରେସର ଏହା ଏକ ସାଧାରଣ ପଦକ୍ଷେପ ରୁଷ ଭୟରେ ଆକ୍ରାନ୍ତ ବ୍ରିଟିଶ ସରକାର ଏବଂ କଂଗ୍ରେସର ଧନୀକ ଶ୍ରେଣୀ ଏହା ଦେଖି ପ୍ରମାଦ ଗଣିବାକୁ ଲାଗିଲେ । ଅନ୍ୟ ପକ୍ଷରେ ସମାଜବାଦୀମାନେ ମଧ କଂଗ୍ରେସର ପ୍ରଗତିଶୀଳତାରେ ଆତ୍ମତୃପ୍ତି ଅନୁଭବ କଲେ ।

ଜାତୀୟତା ସଂଗ୍ରାମ ସମାଜବାଦ ନିମନ୍ତେ କେବେ ପ୍ରତିଶ୍ରୁତିବଦ୍ଧ କାର୍ଯ୍ୟକ୍ରମ ନ ଥିଲା । କିନ୍ତୁ ଏହାର କେତେଗୁଡ଼ିଏ କାର୍ଯ୍ୟକ୍ରମ ଯେ ଆରଂଭରୁ ସମାଜବାଦୀ ଆଂଦୋଳନର ପରିପୂରକ ଥିଲା - ଏକଥା ଅସ୍ୱୀକାର କରା ଯାଇ ନ ପାରେ ।

Digitized by srujanika@gmail.com

ଏହାର ଏକ ବଡ଼ ଉଦାହରଣ ହେଲା, ଜାତି ପ୍ରଥାର ଛୁଆଁ ଅଛୁଆଁ ଭାବ ବିରୁଦ୍ଧରେ ସଂଗ୍ରାମ। ନୀତିଗତ ଭାବେ ଶୈଶବକାଳରୁ କଂଗ୍ରେସ ଜାତି ଆଳରେ କୁତ୍ସିତ ଅଛୁଆଁ ମନୋଭାବର ବିରୋଧ କରି ଆସିଛି। ମହାତ୍ମା ଗାଂଧି ନେତୃତ୍ୱ ନେବା ପରେ ଏହି ବିରୋଧ ତୀବ୍ରରୂପ ଧାରଣ କଲା। ଗାଂଧିଂକ ରଚନାତ୍ମକ କାର୍ଯ୍ୟକ୍ରମ ମାଧ୍ୟମରେ ଏହା ଏଭଳି ଲୋକପ୍ରିୟ ହେଲା ଯେ ଖଦି ପରି, ରାଷ୍ଟ୍ରୀୟ ରାଜନୀତିର ଏହା ମୂଳମନ୍ତ୍ର ହେଲା। ପ୍ରକୃତରେ ଆଂଦୋଳନ ଜାତିପ୍ରଥା ବିରୁଦ୍ଧରେ ପରିଲକ୍ଷିତ ହେବା କଥା, ତଥାପି ଅନ୍ତତଃ ଜାତିପ୍ରଥାର ଏକ ମୁଖ୍ୟ ଅଂଗ ଛୁଆ-ଅଛୁଆଁ ଭାବକୁ ଆଘାତ କରିଥିବାରୁ ସାମାଜିକ ସମତା ରକ୍ଷା ଦିଗରେ ଏହାର ଉପଯୋଗୀତା ସମାଜବାଦୀ ଆଂଦୋଳନକୁ ବେଶ୍ ସୁହାଇଲା।

ଜାତି ଭଳି ବିଭିନ୍ନ ଧର୍ମ ନାମରେ ସାମାଜିକ ଅସମାନତା ଓ ବିଦ୍ୱେଷ ମଧ୍ୟ ଆମ ଦେଶର ଏକ ବିଶିଷ୍ଟ ଅବଗୁଣ। ସେ ସମାଜବାଦୀ ହୁଅନ୍ତୁ ବା ସାମ୍ୟବାଦୀ - ସମସ୍ତଂକର ଉଦ୍ଦେଶ୍ୟ ସାଂପ୍ରଦାୟିକ ସଦଭାବ ରକ୍ଷା; କାରଣ ଏହା ବ୍ୟତୀରେକେ ସମତାବାଦୀ ବା ଶୋଷଣବିହୀନ ସମାଜର ସ୍ୱପ୍ନ କଳ୍ପନା ବିଳାସ ମାତ୍ର। ଏକ ଦାୟିତ୍ୱସଂପନ୍ନ ଦଳ ଭାବରେ ପ୍ରାରଂଭରୁ କଂଗ୍ରେସ ବିଭିନ୍ନ ଧାର୍ମିକ ସଂପ୍ରଦାୟ ମଧ୍ୟରେ ସଦ୍‌ଭାବ ସୃଷ୍ଟି ପାଇଁ କାର୍ଯ୍ୟରତ ରହି ଆସିଥିଲା। ଜାଲିୱାନୱାଲାବାଗ ହତ୍ୟାକାଣ୍ଡ ଏବଂ ଖଲିଫାଂକ (ମୁସଲମାନ ଧର୍ମଗୁରୁ) ଅପମାନ ବିରୁଦ୍ଧରେ ୧୯୨୧ ମସିହାର ଅସହଯୋଗ ଆଂଦୋଳନ ସମୟରୁ ଜାତୀୟତାବାଦୀମାନଂକର ଏ ଦିଗରେ ଉଦ୍ୟମ ଅଧିକ ପ୍ରଶଂସନୀୟ। ସଦଭାବ ରକ୍ଷାର ଉଦ୍ୟମ ସମାଜବାଦର ପଥ ସୁଗମ କଲା ବୋଲି ସମାଜବାଦୀମାନେ ମଧ୍ୟ କେବେ ଧର୍ମନିରପେକ୍ଷତାର ପ୍ରଶ୍ନ ଉପରେ କଂଗ୍ରେସକୁ ସହଯୋଗ ଦେବା ଭୁଲି ନାହାନ୍ତି। ଅର୍ଥାତ୍ 'ସଦଭାବ ରକ୍ଷାର ଉଦ୍ୟମ' ଅତୀତରେ ଉଭୟ ସମାଜବାଦୀ ଓ ଜାତୀୟତାବାଦୀଂକ ମଧ୍ୟରେ ସଂପର୍କକୁ ସ୍ଥାୟୀ ହେବାରେ ସାହାଯ୍ୟ କରିଛି।

ସମାଜବାଦ ଓ କଂଗ୍ରେସ ମଧ୍ୟରେ ସାମଂଜସ୍ୟର ତୃତୀୟ ବିଂଦୁ ଥିଲା ସମାଜରେ ନାରୀ ପାଇଁ ପୁରୁଷ ତୁଲ୍ୟ ଅଧିକାର ଦାବୀ। କେବଳ ମହାତ୍ମାଗାଂଧି କାହିଁକି, ଊନବିଂଶ ଶତାବ୍ଦୀର ଜାତୀୟତାବାଦୀ ରାଜାରାମମୋହନ ରାଏଙ୍କ ଭଳି ନେତୃବର୍ଗଂକ ମଧ୍ୟ ଦୃଢ଼ ବିଶ୍ୱାସ ଯେ, ଆମ ସାମାଜିକ ଅଧୋଗତିର ଏକ ମୁଖ୍ୟ କାରଣ ହେଲା ନାରୀର ଅସମ୍ମାନ ଓ ଅମର୍ଯ୍ୟାଦା। ପୁରୁଷ କେନ୍ଦ୍ରିତ ସମାଜ ନାରୀକୁ ତାର ନ୍ୟାଯ୍ୟ ଅଧିକାର ଦେବା ଶିଖିନାହିଁ। ନ ହେଉ ପଛେ କଂଗ୍ରେସର କଳ୍ପିତ ସମାଜ ସଂପୂର୍ଣ୍ଣ ଶୋଷଣମୁକ୍ତ, ମାତ୍ର ସେଥିରେ ନାରୀ ଉପରେ ପୁରୁଷ ପ୍ରଧାନ ଶୋଷଣର ସ୍ଥାନ ନ ଥିଲା। ନାରୀ ପାଇଁ ସମାନତା ଦାବୀର ପରିଣାମ ସ୍ୱରୂପ ବେଳୁ ବେଳ ଜାତୀୟ ଆଂଦୋଳନ ଅଧିକରୁ ଅଧିକ ନାରୀ ସହଯୋଗ ଲାଭ କଲା।

Digitized by srujanika@gmail.com

ଆଇନ ଅମାନ୍ୟ ଆନ୍ଦୋଳନ ସମୟରେ ତ ହଜାର ହଜାର ସଂଖ୍ୟାରେ ନାରୀ ପାରିବାରିକ ବଂଧନରୁ ମୁକୁଳି ସକ୍ରିୟ ରାଜନୀତିରେ ଅଂଶ ଗ୍ରହଣ କଲେ, ପୁରୁଷ ପରି ଜେଲ ଗଲେ। ଏହା ଥିଲା ସମାଜବାଦୀ ଆନ୍ଦୋଳନର ସଂପୂର୍ଣ୍ଣ ପରିପୂରକ।

ସାମ୍ରାଜ୍ୟବାଦ କବଳରୁ ମୁକ୍ତି ଓ ସ୍ୱରାଜ୍ୟ ପାଇଁ ଗାଂଧିଜୀ ସର୍ବଦା ଖଦି ଗ୍ରାମୋଦ୍ୟୋଗକୁ ଚାବିକାଠି ବୋଲି ମାନୁଥିଲେ। ଦେଶରୁ କଂଚାମାଲ ରପ୍ତାନି ଓ ବିଦେଶରୁ କଳ ଲୁଗା ଆଦି ଶିଳ୍ପଜାତ ଦ୍ରବ୍ୟର ଆମଦାନି ଆଳୁଆଳରେ ଇଂରେଜମାନେ ଆର୍ଥିକ ଶୋଷଣର ଯେଉଁ ଅବିଚ୍ଛିନ୍ନ ଧାରା ଆରଂଭ କରିଥିଲେ ତାର ପୂର୍ଣ୍ଣାହୂତି ଦେବା ନିମିତ୍ତ ଉଦ୍ଦିଷ୍ଟ ଥିଲା ଗାଂଧି ଖଦି। କେବଳ ସାମ୍ରାଜ୍ୟବାଦ ବା ଉପନିବେଶ ବାଦ କାହିଁକି, ଦେଶୀ ପୁଂଜିବାଦ ଏବଂ ଯାବତୀୟ ଆର୍ଥିକ ଶୋଷଣର ମଧ୍ୟ ଉଚିତ ପ୍ରତ୍ୟୁତ୍ତର ଥିଲା ଖଦି (ଓ ଗ୍ରାମୋଦ୍ୟୋଗ)। ବହୁ ପୁଂଜିରେ ବିନିଯୁକ୍ତ ଗୁରୁଶିଳ୍ପ ଯେ ଭାରତ ପରି ଏକ ଜନବହୁଳ ରାଷ୍ଟ୍ରର କୋଟି କୋଟି ଜନତାକୁ କାର୍ଯ୍ୟ ଯୋଗାଇ ନ ପାରି ଦରିଦ୍ରତା ଓ ବେକାରି ମୁହଁକୁ ଠେଲି ଦେବ- ଗାଂଧି ଏକଥା ଭଲ ଭାବେ ବୁଝିଥିଲେ। ତେଣୁ ଉପସ୍ଥିତ ଦୁଃସ୍ଥିତିରେ ଜନସାଧାରଣଂକୁ ଭୌତିକ, ମାନସିକ ଏବଂ ଆତ୍ମିକ ଦରିଦ୍ରତାରୁ ମୁକ୍ତି ଦେବା ପାଇଁ ଖଦି ଥିଲା ଏକ ଆମୋଘ ଔଷଧି।

ସମାଜବାଦୀ ଦୃଷ୍ଟିକୋଣରୁ ପୁଂଜିବାଦୀ ବ୍ୟବସ୍ଥାର ଏକ ବଡ଼ ଚରିତ୍ର ହେଲା, ଶ୍ରମିକ ଓ କ୍ଷେତ ମଜଦୁର ହାତରେ ପୁଂଜିର ଅଭାବ ଏବଂ ସଂଖ୍ୟାଲଘୁ ଧନୀକ ଶ୍ରେଣୀ ପାଖରେ ପୁଂଜିର ଭଣ୍ଡାର। ଏହା ଅଭାବଗ୍ରସ୍ତ ସଂଖ୍ୟା ବହୁଳ ପୁଂଜିହୀନ ଗୋଷ୍ଠୀକୁ ପୁଂଜିବାଦୀ ଆଗରେ ହାତ ପତାଇବାକୁ ତଥା ଅତି ଅଳ୍ପ ମୂଲ୍ୟରେ ନିଜ ଶ୍ରମ ବିକ୍ରୀ କରିବାକୁ ବାଧ କରେ ଯାହାକି ଧନୀକ ପୁଂଜିବାଦୀକୁ ଅଧିକରୁ ଅଧିକ ଲାଭ ବା ପୁଂଜି ଆହରଣ କରିବାର ସୁଯୋଗ ଆଣିଦିଏ। ପୁଂଜି ବଳରେ ପୁଂଜିପତି ଅଧିକ ପୁଂଜି ଏକତ୍ର କରିପାରେ ଏବଂ ପୁଂଜିହୀନତା ଦୋଷରୁ ପୁଂଜିହୀନ ସର୍ବସ୍ୱ ହରାଏ, ନିଃସ୍ୱ ହୁଏ। ମାତ୍ର ଖଦି ଭଳି ଲଘୁ ଶିଳ୍ପ ପ୍ରତିଷ୍ଠା ପାଇଁ ଆବଶ୍ୟକ ପୁଂଜିର ପରିମାଣ ଏତେ କମ ଯେ ଗରିବ ଶ୍ରମିକ ମଧ୍ୟ ଶିଳ୍ପଟିର ମାଲିକ ହୋଇପାରେ। ପୁଂଜିବାଦର ଏକ ବଡ଼ ଅସ୍ତ୍ର– ସଂଖ୍ୟା ବହୁଳ ଶ୍ରମିକ ହାତରୁ ପୁଂଜି ଅପହରଣ– ଖଦି ଆଗରେ ମାଡ଼ ଖାଏ।

ପୁଂଜିବାଦ ବିରୁଦ୍ଧରେ ସମାଜବାଦୀଂକର ଏକ ବଡ଼ ଅଭିଯୋଗ ଯେ, ଏହା ଉତ୍ପାଦକତାର ଆଶୁ ବୃଦ୍ଧି ପ୍ରତି ସଚେଷ୍ଟ ରହେ, ମାତ୍ର ଉତ୍ପାଦିତ ଦ୍ରବ୍ୟର ସୁଚାରୁ ବଣ୍ଟନ ପ୍ରତି ଆଦୌ ଗୁରୁତ୍ୱ ଦିଏ ନାହିଁ। ତେଣୁ ସାମଗ୍ରିକ ଉତ୍ପାଦନ ବୃଦ୍ଧି ପାଇବା ସତ୍ତ୍ୱେ, ତାର ଫଳ ଲାଭ କରିବାରୁ ସଂଖ୍ୟା ବହୁଳ ଗୋଷ୍ଠୀ ବଂଚିତ ରହେ। ଅନ୍ୟ ପକ୍ଷରେ ସଂଖ୍ୟାନ୍ୟୂନ ଧନୀକ ବର୍ଗ ପାଖରେ ଉତ୍ପାଦିତ ସାମାଜିକ ସଂପତ୍ତି ଅବ୍ୟବହୃତ ବା ଅଧା-ବ୍ୟବହୃତ ହେବା ପାଇଁ ଲୁଡ଼ ଲୁଡ଼ ମାତ୍ରାରେ ଜମା ରହେ।

Digitized by srujanika@gmail.com

ଅର୍ଥାତ୍ ବହୁଳ ଉତ୍ପାଦନ, ତା'ର ଅପବ୍ୟୟ ଏବଂ ଦାରିଦ୍ର୍ୟ ପୁଂଜିବାଦୀ ବ୍ୟବସ୍ଥାର ମେରୁଦଣ୍ଡ ଭଳି କାର୍ଯ୍ୟ କରନ୍ତି । ପୁଂଜିବାଦର ଉକ୍ତ ଅବଗୁଣର ଦୂରୀକରଣ ନିମିତ୍ତ ସମାଜବାଦୀ ଦୃଷ୍ଟିକୋଣରୁ ଖଦିର ଭୂମିକା ଅତି ମହତ୍ତ୍ୱପୂର୍ଣ୍ଣ । ଖଦି ବା କୁଟୀର ଶିଳ୍ପ ଦାରିଦ୍ର୍ୟ ଦୂରୀକରଣ ପାଇଁ ସାମାଜିକ ଉତ୍ପାଦକତା ତ ବୃଦ୍ଧି କରେ, କିନ୍ତୁ ତାର (ବୃଦ୍ଧିର) ପରିମାଣ ପୁଂଜିବାଦୀ ଗୁରୁଶିଳ୍ପ ତୁଳନାରେ ଅତି ନଗଣ୍ୟ । ତେଣୁ କାହାରି ହାତରେ ବହୁ କଷ୍ଟୋପାର୍ଜିତ ଉତ୍ପାଦିତ ଦ୍ରବ୍ୟ ଜମାଟ ବାଂଧିବାର ତଥା ଅପବ୍ୟୟ ହେବାର ଆଶଂକା ନ ଥାଏ । ପୁଣି ଖଦି ସମାଜର ସବୁ ବର୍ଗ ପାଖରେ ଥିବାରୁ ଏବଂ (ଫଳରେ) ଶ୍ରମର ବିକା-କିଣା ପାଇଁ ସୁଯୋଗ ଦେଉ ନ ଥିବାରୁ, ଉତ୍ପାଦନ ପରେ ବଣ୍ଟନରେ ମଧ ସମସ୍ୟା ରହେ ନାହିଁ । ଏସବୁ ସାଂଗରେ କୁଟୀର ଶିଳ୍ପ ଦାରିଦ୍ର୍ୟରୁ ରକ୍ଷା କରିବା ସଂଗେ ସଂଗେ ମଣିଷକୁ ଧନୀ ହେବାର ମଧ ସୁଯୋଗ ନ ଦେଇ ଧନ ପ୍ରତି ମନର ଅବଦମିତ ଲୋଭକୁ ସୀମିତ ରଖିବାରେ ସହାୟକ ସିଦ୍ଧ ହୁଏ । ଧନ ପ୍ରତି ଲୋଭର ଦମନ, ଯେହେତୁ ବାଧ ବଳତ୍କାରରେ ସଂଭବ ନୁହେଁ, ତାକୁ ଲାଗୁ କରିବା ପାଇଁ 'ଆଗ୍ରହ' ଏବଂ ଅହିଂସାର ଉପାଦେୟତା ଅନେକ ବେଶି ।

ସମାଜବାଦୀ ଆଂଦୋଳନର ଅନେକ ବର୍ଷପରେ ଏବଂ ସୋଭିଏତ ସାମ୍ୟବାଦୀ ପତନର ଅନେକ ବର୍ଷ ପୂର୍ବରୁ ଷାଠିଏ ଦଶକରେ ଥରେ ପ୍ରଖ୍ୟାତ ସମାଜବାଦୀ ଡଃ ରାମମନୋହର ଲୋହିଆ ଲେଖିଥିଲେ ଯେ, ବ୍ୟକ୍ତିଗତ ସଂପତ୍ତିର ଉଚ୍ଛେଦ ସାଂଗରେ ମାର୍କ୍ସବାଦ ଧନ ପ୍ରତି ଲୋଭର ଦମନ ପାଇଁ ଦୃଷ୍ଟି ଦେଇ ନ ଥିବାରୁ, ଯାହାକି ହିଂସାଦ୍ୱାରା ସଂଭବ ନୁହେଁ, ଏହାର ବିଫଳତା ନିଶ୍ଚିତ । (୧) କେବଳ ଭୌତିକ ସ୍ତରରେ ସଂପତ୍ତିକୁ ପରିତ୍ୟାଗ କରି ବା କରିବାକୁ ବାଧ ହୋଇ, ମାନସିକ ସ୍ତରରେ ସଂପତ୍ତି ପ୍ରତି ବ୍ୟକ୍ତିର ଲୋଭ ବଳବତ୍ତର ରହିଲେ ସମାଜବାଦ ସଂଭବ ହେବ ନାହିଁ । ଅହିଂସ ଉପାୟରେ ଖଦିର ପ୍ରସାର, ଯାହାକୁ କି କୁଟୀର ବା ଗ୍ରାମ୍ୟ ଶିଳ୍ପର ପ୍ରତୀକ ରୂପେ ନିଆଯାଇପାରେ, ଉଭୟ ସ୍ତରରେ ତାହା ବ୍ୟକ୍ତିଗତ ସଂପତ୍ତିର ଗୌଣତା ପ୍ରତିପାଦିତ କରୁ ଥିବାରୁ ସମାଜବାଦୀମାନଂକ ପାଇଁ ତାହା ଆଗ୍ରହର କେନ୍ଦ୍ର ସାଜିଲା ।

ପ୍ରଚଳିତ ସାମାଜିକ ବ୍ୟବସ୍ଥାରେ ମାନସିକ ପରିଶ୍ରମ ତୁଳନାରେ ଶାରୀରିକ ପରିଶ୍ରମ ତୁଚ୍ଛ ବିବେଚିତ ହୁଏ । ଶାରୀରିକ ପରିଶ୍ରମ କଷ୍ଟଦାୟୀ ଏବଂ ଅନ୍ୟ ପକ୍ଷରେ ମାନସିକ ପରିଶ୍ରମ ଆରାମଦାୟୀ ହୋଇଥିବାରୁ ସମାଜର ଗୋଟାଏ ବର୍ଗ ଶାରୀରିକ ପରିଶ୍ରମରୁ ଦୂରରେ ରହି, ଅନ୍ୟକୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ପ୍ରଚାର କରନ୍ତି ଏବଂ ତା'ପାଇଁ ଅଧିକ ପାରିଶ୍ରମିକ ଦାବୀ କରନ୍ତି । ଯେହେତୁ ମାନସିକ ପରିଶ୍ରମୀ ଉଭୟ ପରିଶ୍ରମର ମୂଲ୍ୟ ନିର୍ଦ୍ଧାରଣ କରିଥାନ୍ତି, ସେମାନଂକ ଦାବୀ ସ୍ୱୀକୃତ ହୁଏ । ଅର୍ଥାତ ଶାରୀରିକ ପରିଶ୍ରମୀ ଅଧିକ କଷ୍ଟ କରି କମ ପାରିଶ୍ରମିକ ନେବାକୁ ବାଧ ହୁଏ ।

Digitized by srujanika@gmail.com

ଏହା ସାମାଜିକ ବିଷମତାକୁ ବୃଦ୍ଧି କରିବା ସଂଗେ ସଂଗେ ଶାରୀରିକ ପରିଶ୍ରମ ପ୍ରତି ସମସ୍ତଂକ ମନରେ ତୁଚ୍ଛ ଭାବ ଏବଂ ମାନସିକ ପରିଶ୍ରମ ପ୍ରତି ଆସକ୍ତି ଜାତ କରେ।

କଳ୍ପିତ ବର୍ଗହୀନ ସମାଜବାଦକୁ ତିଷ୍ଠି ରହିବା ପାଇଁ ମଧ୍ଯ ଉଭୟ ପରିଶ୍ରମର ଆବଶ୍ୟକତା ରହିଛି। ମାତ୍ର ଉଭୟଂକ ମଧ୍ୟରେ ଅସନ୍ତୁଳନ ଏବଂ ଭେଦଭାବ ଶାରୀରିକ ପରିଶ୍ରମ ପ୍ରତି ବ୍ୟକ୍ତି ମନରେ ଆଗ୍ରହ ସୃଷ୍ଟି କରି ପାରିବ ନାହିଁ। ଏହି ପରିପ୍ରେକ୍ଷୀରେ ଖଦି ସମସ୍ତଂକୁ ଶାରୀରିକ ପରିଶ୍ରମ - ସେ ପୁଣି ଏକା ଧରଣର - କରିବାକୁ ପ୍ରୋତ୍ସାହିତ କରି ଉଭୟ ପରିଶ୍ରମ ଭିତରେ ଭାରସାମ୍ୟ ରକ୍ଷା କରେ, ସମାଜବାଦୀଂକ ଚିନ୍ତା ଧାରାକୁ ପରିପୁଷ୍ଟ କରେ।

ଡଃ ଲୋହିଆ 'ଇଶୋପନିଷଦ'ରୁ ଏକ ଶ୍ଳୋକ ଉଦ୍ଧାର କରି କହିଛନ୍ତି, ଏ ଦୁନିଆଁ କେବଳ ତୁମର ବୋଲି ଭାବ ନାହିଁ। ସମଗ୍ର ପୃଥିବୀକୁ ନିଜ ବ୍ୟକ୍ତିଗତ ସଂପତ୍ତି ବୋଲି ଭାବି ସ୍ଵାର୍ଥପର ଭଳି ସବୁ କିଛି ଉପଭୋଗ କରି ପକାଅ ନାହିଁ। (୨) ଲୋହିଆଂକ ପରବର୍ତ୍ତି ସମୟରେ ସମାଜବାଦୀମାନେ ଭୂସଂପଦର ଦୁରୁପଯୋଗ ବିରୁଦ୍ଧରେ ତ ଅଧିକ ମୁଖର। ଏଥିପାଇଁ ଆଧୁନିକ ଶିଳ୍ପବିପ୍ଳବ ଏବଂ ପୁଂଜିବାଦକୁ ହିଁ ସେମାନେ ଦୋଷୀ ମଣୁଛନ୍ତି। (୩) ପ୍ରକୃତରେ 'ଆଧୁନିକ' ବ୍ୟବସ୍ଥା କେବଳ ଗୋଟାଏ ବର୍ଗ ଦ୍ଵାରା ଅନ୍ୟବର୍ଗର ଶୋଷଣକୁ ସ୍ଵୀକୃତି ଦିଏ ନାହିଁ; ତା ବାହାରେ ପ୍ରକୃତିର ଗୋଟାଏ ଉପାଦାନ - ମଣିଷ - ଦ୍ଵାରା ଅନ୍ୟ ଉପାଦାନମାନଂକର (ଯଥା ପଶୁପକ୍ଷୀ, ବୃକ୍ଷଲତା, ପାଣି ପବନ, ଆଦି) ମଧ୍ଯ ଶୋଷଣକୁ ଯଥାର୍ଥ ବୋଲି ମିଥ୍ୟା ପ୍ରଚାର କରେ। 'ଆଧୁନିକ' ବିଜ୍ଞାନ ଓ 'ପ୍ରଗତିକୁ' ପ୍ରକୃତି ଉପରେ ମଣିଷର ବିଜୟ ବୋଲି ଆତ୍ମତୃପ୍ତି ଅନୁଭବ କରେ। ମାତ୍ର ମଣିଷ ଯଦି ଏକ ସାମାଜିକ ପ୍ରାଣୀ ତଥା ପ୍ରକୃତି ପରିବାରର ଅନ୍ୟତମ ସଦସ୍ୟ, ପ୍ରକୃତି ଉପରେ ତାର ପ୍ରଭୁତ୍ଵର ଆବଶ୍ୟକତା ବା ରହିବ କାହିଁକି? ସାମାଜିକ ସମୃଦ୍ଧି ପାଇଁ ଏହା କ'ଣ ଅବଶ୍ୟମ୍ଭାବୀ? ପରସ୍ପରର ପରିପୂରକତା ବିନା କି ସମୃଦ୍ଧି ସଂଭବ— ସେ ପରିବାରର ହେଉ କି ଜଗତର?

ପ୍ରକୃତିସୃଷ୍ଟ ବିଭିନ୍ନ ଉପାଦାନଗୁଡ଼ିକର ଅସ୍ତିତ୍ଵ ମଣିଷ ଅବସ୍ଥିତିର ପରିପୂରକ, ପରିପନ୍ଥୀ ନୁହେଁ - ଏ କଥା ସମାଜବାଦୀମାନଂକ ପୂର୍ବରୁ ଗାଂଧି ହୃଦୟଂଗମ କରି ସାରିଥିଲେ। ଖଦି ପ୍ରକୃତିର କୌଣସି ଦୁରୁପଯୋଗ ନ କରି ବା ଶିଳ୍ପ ବିପ୍ଳବ ତୁଳନାରେ ଅତି ଅଳ୍ପ କ୍ଷତି ସାଧନ କରି ଉଭୟଂକ ପରିପୂରକତାକୁ ପରିପୁଷ୍ଟ କରେ ବୋଲି ଗାଂଧି ପାଖରେ ତା'ର ଆଦୃତି। ତେଣୁ ସମାଜବାଦୀମାନେ ଗାଂଧି ବା ଖଦିକୁ ବାଦ ଦେଇ ବିକଳ୍ପ ବ୍ୟବସ୍ଥା ଖୋଜିବେ କାହିଁକି? ଉଭୟ ମାନବ ଓ ପ୍ରକୃତିକୁ ଦରିଦ୍ରତାରୁ ରକ୍ଷା କଲା ଭଳି ବିକଳ୍ପଟିଏ ପାଶ୍ଚତ୍ୟ ବିକାଶ ପଦ୍ଧତିରେ ମିଳୁଛି ବା କେତେବେ?

Digitized by srujanika@gmail.com

ଯୁବ ସମାଜବାଦୀଂକ ପାଇଁ ଜାତୀୟ ଆଂଦୋଳନର ସବୁଠାରୁ ଆକର୍ଷଣର ପାତ୍ର ଥିଲେ ସ୍ୱୟଂ ଗାଂଧି ଏବଂ ତାଂକ ଆଦର୍ଶମୟ ବ୍ୟକ୍ତିତ୍ୱ। ନ ହୁଅନ୍ତୁ ପଛେ ସେ ଜଣେ ଘୋଷିତ ସମାଜବାଦୀ, ହେଲେ ତାଂକ ସରଳ ଆଡ଼ମ୍ବରଶୂନ୍ୟ ଖାଦ୍ୟପେୟ, ବେଶଭୂଷା, ରହଣି ଚଳଣିରେ ସାମଜବାଦୀ ଆଦର୍ଶର ପ୍ରତିରୂପ ଦେଖିବାକୁ ମିଳୁଥିଲା। ଏକ ବର୍ଗହୀନ ସମାଜ ଗଠନ ନିମନ୍ତେ ଏହା ଥିଲା ଏକ ପ୍ରେରଣାର ଉତ୍ସସଦୃଶ।

ଜନ ପ୍ରତିନିଧିଂକ ବ୍ୟକ୍ତିଗତ ଜୀବନଯାପନ ସର୍ବଦା ଜନସାଧାରଣଂକ ଉପରେ ପ୍ରଭାବ ପକାଇଥାଏ। ପ୍ରତିନିଧିଂକୁ ସେମାନେ 'ମଡ଼େଲ' ବା ଆଦର୍ଶପୁରୁଷ ମନେକରି ପ୍ରେରିତ ହୁଅନ୍ତି। ପ୍ରତିନିଧିଂକ ରହଣି ସହଣିରେ ଆଡ଼ମ୍ବରପୂର୍ଣ୍ଣତା ଜନସାଧାରଣଙ୍କ ମନରେ ଭ୍ରାନ୍ତି ଓ ଦୂରତା ସୃଷ୍ଟିକରେ। ଏଭଳି ବ୍ୟକ୍ତି ଜନତାର ପ୍ରକୃତ ପ୍ରତିନିଧିତ୍ୱ କରି ପାରନ୍ତି ନାହିଁ; ସାଆନ୍ତିଆ ହୋଇ ରହିଯାଆନ୍ତି। ମାତ୍ର କଥାଟି ଏଭଳି କି ଭାରତର ସାମ୍ୟବାଦୀମାନଂକୁ ମଧ ବେଶି ଆକୃଷ୍ଟ କରି ପାରିନାହିଁ। 'ବ୍ୟକ୍ତିଗତ ପ୍ରଶ୍ନ'ର ତର୍କ ଦେଇ ସେମାନେ ନିଜ ଉଚ୍ଚ ବର୍ଗୀୟ ରହଣି ସହଣିର ଯୁକ୍ତିଯୁକ୍ତତା ବାଢ଼ିବାକୁ ଚେଷ୍ଟାକରିଛନ୍ତି। ହେଲେ ସମାଜବାଦୀମାନଂକୁ ପ୍ରଶ୍ନଟି ବାରଂବାର ଉଦ୍‌ବେଳିତ କରିଛି। ସେଥିପାଇଁ ଜୟପ୍ରକାଶ ପାଶ୍ଚାତ୍ୟ ବେଶ ଭୂଷାଠାରୁ ଦୂରରେ ରହି ଏକ ସାଧାରଣ ଭାରତୀୟର ଜୀବନଧାରାକୁ ଆଦରି ନେଇଛନ୍ତି ଏବଂ ଲୋହିଆ ପ୍ରଧାନମନ୍ତ୍ରୀ ତଥା ଅନ୍ୟମନ୍ତ୍ରୀ ଆଦିଂକର ଦୈନିକ ଖର୍ଚ୍ଚ କାଟ ପ୍ରଶ୍ନ ଉଠାଇଛନ୍ତି। (୪) ଲୋହିଆ ପରବର୍ତ୍ତି ସମୟରେ ମଧ ସମାଜବାଦୀମାନେ ଏହି ଆଦର୍ଶରୁ ବିଚ୍ୟୁତ ହୋଇନାହାନ୍ତି। (୫) ଏହି ପରିପ୍ରେକ୍ଷୀରେ ଗାଂଧି ସେମାନଂକ ଆଦର୍ଶ ପୁରୁଷ ହେବା ସ୍ୱାଭାବିକ। ଫଳରେ ଜାତୀୟ ଆଂଦୋଳନର କେତେଗୋଟି ଘଡ଼ିସଂଧି ମୁହୂର୍ତ୍ତରେ ମଧ ଗାଂଧି ସମାଜବାଦୀମାନଂକ ଠାରୁ ପୂର୍ଣ୍ଣ ସହଯୋଗ ଲାଭ କରିଛନ୍ତି।

ପ୍ରଶ୍ନ ଉଠେ, ଗାଂଧି ଜୀବନ ଦର୍ଶନ ଓ ଜାତୀୟତା ଆଂଦୋଳନ ସହ ସମାଜବାଦୀ ଚିନ୍ତାଧାରାର ଏତେ ସାମଂଜସ୍ୟ ଥିବା ସତ୍ତ୍ୱେ ଏକ ଭିନ୍ନ ମଂଚ- ସୋସିଆଲିଷ୍ଟ ପାର୍ଟି- ଗଠନର ଆବଶ୍ୟକତା ଆସିଲା କେଉଁଠୁ?

କଂଗ୍ରେସ ବିଭିନ୍ନ ଜାତୀୟତାବାଦୀ ସମୂହର ସମ୍ମିଳିତ ଶକ୍ତି ହେବା ସତ୍ତ୍ୱେ ବଲ୍ଲଭଭାଇ ପଟେଲ, ରାଜେଂଦ୍ର ପ୍ରସାଦ, ମୋତିଲାଲ ନେହେରୁ ଆଦି ରକ୍ଷଣଶୀଳ ସମୂହର ଥିଲା ସଂପୂର୍ଣ୍ଣ କର୍ତ୍ତୃତ୍ୱାଧୀନ। ପ୍ରକାରାନ୍ତରେ ଗାଂଧି ଥିଲେ ଉକ୍ତ ସମୂହ ହାତରେ ଅସ୍ତ୍ର ସଦୃଶ। ପୁଣି ଉକ୍ତ ସମୂହ ଥିଲା ଗାଂଧିଂକର ଏକାନ୍ତ ଅନୁଗତ। ପ୍ରଗତିଶୀଳ ଗୋଷ୍ଠୀର ଉତ୍ଥାନ ପରେ, ଯହିଁରେ ଯୁବ ସମାଜବାଦୀ, ସୁଭାଷ ବୋଷ ଏବଂ ଜବାହରଲାଲ ନେହେରୁ ସାମିଲଥିଲେ, ଜାତୀୟତା ଆଂଦୋଳନକୁ ଆଗେଇ ନେବା ପାଇଁ ଉଭୟ ରକ୍ଷଣଶୀଳ ଓ ପ୍ରଗତିଶୀଳ ଗୋଷ୍ଠୀ ମଧ୍ୟରେ ଭାରସାମ୍ୟ ରକ୍ଷା କରିବା କଂଗ୍ରେସ ଓ ଗାଂଧି ପକ୍ଷେ ଥିଲା ଅତି ଜରୁରୀ। ରକ୍ଷଣଶୀଳ ଗୋଷ୍ଠୀର

Digitized by srujanika@gmail.com

ତର— ଆଂଦୋଳନର ନେତୃତ୍ୱ ପ୍ରଗତିଶୀଳଙ୍କ ହାତକୁ ଚାଲି ନ ଯାଉ; ଯୁବ ସମାଜବାଦୀଂକ ଆଶା, ଆଦର୍ଶଗତ ସାମଂଜସ୍ୟ ହେତୁ ଗାଂଧି ସେମାନଂକର ସହାୟକ ହେବେ। ଏଆଡ଼େ ଦୁଇ ଗୋଷ୍ଠୀଂକୁ ଧରି ରଖିବା ଉଦ୍ଦେଶ୍ୟରେ ଖଣ୍ଡାଧାରରେ ଚାଲୁଥିବା ଗାଂଧି ଓ କଂଗ୍ରେସ ପାଇଁ କୌଣସି ନା କୌଣସି ଗୋଷ୍ଠୀକୁ ସନ୍ତୁଷ୍ଟ କରି ନ ପାରିବା ଥିଲା ଅବଶ୍ୟମ୍ଭାବୀ। ଶେଷରେ ୧୯୩୪ ମସିହାରେ ଅସନ୍ତୁଷ୍ଟ ଯୁବ ସମାଜବାଦୀ ହିଁ ସୋସିଆଲିଷ୍ଟ ପାର୍ଟି ଗଠନ ପାଇଁ ବାଧ ହେଲେ ଠିକ ଯେମିତି ତା'ର କେତେ ବର୍ଷ ପରେ ସୁଭାଷ ବୋଷ କଂଗ୍ରେସ ଛାଡ଼ି ଫରୱାର୍ଡ଼ ବ୍ଲକ ଗଠନ ପାଇଁ ନିଷ୍ପତ୍ତି ନେଲେ; କଂଗ୍ରେସରେ ରକ୍ଷଣଶୀଳତାର ବିଜୟ ହେଲା।

ଅସନ୍ତୋଷର ଏକ ମୁଖ୍ୟ କାରଣ ଥିଲା ୧୯୨୯ ମସିହାରେ ଆୟୋଜିତ ଲାହୋର କଂଗ୍ରେସ ଅଧିବେଶନ। ପୂର୍ଣ୍ଣ ସ୍ୱରାଜର ପ୍ରସ୍ତାବ ଏବଂ ଯୁବ ପ୍ରଗତିଶୀଳ ନେହେରୁଂକ ସଭାପତିତ୍ୱ ଥିଲା ଲାହୋର କଂଗ୍ରେସର ଦୁଇଟି ମୁଖ୍ୟ ଆକର୍ଷଣ। ପ୍ରଗତିଶୀଳ ଗୋଷ୍ଠୀ ମତ ଦେଲେ, ପୂର୍ଣ୍ଣ ସ୍ୱରାଜର ପନ୍ଥା ରୂପେ ସବୁଆଡ଼େ ଚାଷୀ ମଜୁରିଆର ସମାନ୍ତରାଳ ସରକାର ମଧ ଗଠନ ହେଉ। ହେଲେ ଗାଂଧି ପ୍ରସ୍ତାବଟିର ବିରୋଧ କଲେ; ଫଳରେ ତାହା କଂଗ୍ରେସରେ ଗୃହୀତ ହୋଇ ପାରିଲା ନାହିଁ। ଅର୍ଥାତ୍ ପ୍ରଗତିଶୀଳ ନେହେରୁ କଂଗ୍ରେସ ସଭାପତି ନିଯୁକ୍ତ ହେଲେ, ପୂର୍ଣ୍ଣ ସ୍ୱରାଜ ପାଇଁ କଂଗ୍ରେସ ପ୍ରତିଜ୍ଞାବଦ୍ଧ ହେଲା; କିନ୍ତୁ ଉକ୍ତ ଲକ୍ଷ୍ୟ ସାଧନ ନିମନ୍ତେ କଂଗ୍ରେସ ତରଫରୁ କୌଣସି ବୈକଳ୍ପିକ ବ୍ୟବସ୍ଥା ଗ୍ରହଣ କରାଗଲା ନାହିଁ। ପ୍ରଗତିଶୀଳ ଯୁବ ଗୋଷ୍ଠୀକୁ ଏହା ହତପ୍ରଭ କଲା। ହେଲେ ଏହା ଥିଲା ଜାତୀୟତାବାଦର ରାଜନୀତି, ଉଭୟ ଗୋଷ୍ଠୀ ଭିତରେ ଭାରସାମ୍ୟ ରକ୍ଷା କରିବାର ପରିଣାମ।

୧୯୩୧ ମସିହା ଜୁଲାଇ ମାସରେ ଜୟପ୍ରକାଶ ନାରାୟଣ, ଫୁଲନ ପ୍ରସାଦ ବର୍ମା ଏବଂ ରାହୁଲ ସାଂକୃତ୍ୟାୟନ ଆଦିଂକ ପ୍ରଚେଷ୍ଟାରେ ବିହାର ସୋସିଆଲିଷ୍ଟ ପାର୍ଟିର ଗଠନ ହୋଇଥିଲା। ମାର୍କ୍ସବାଦରେ ପ୍ରଭାବିତ ଯୁବକ ଜୟପ୍ରକାଶ ଆଦି ଶ୍ରେଣୀ ସଂଘର୍ଷ ତଥା ବ୍ୟକ୍ତିଗତ ସଂପତ୍ତିର ଉଚ୍ଛେଦକୁ ଦଳର ଲକ୍ଷ୍ୟ ବୋଲି ଘୋଷଣା କରିଥିଲେ। ରକ୍ଷଣଶୀଳ ଗୋଷ୍ଠୀ ପାଇଁ ଏହା ଥିଲା ଖୁବ୍ ଅସହ୍ୟ। ତେଣୁ ସେହି ବର୍ଷ ଡିସେଂବର ମାସରେ ଆୟୋଜିତ କଂଗ୍ରେସରେ ରକ୍ଷଣଶୀଳ ଗୋଷ୍ଠୀର ନିର୍ଦ୍ଦେଶରେ, ପ୍ରସ୍ତାବ ଗୃହୀତ ହେଲା 'ଶ୍ରେଣୀ ସଂଘର୍ଷ ବା ବ୍ୟକ୍ତିଗତ ସଂପତ୍ତିର ଉଚ୍ଛେଦ' କେବେ କଂଗ୍ରେସର ଲକ୍ଷ୍ୟ ନୁହେଁ। ଯେଉଁ କରାଚି କଂଗ୍ରେସ ସାମୂହିକ ଭାବେ ପ୍ରଗତିଶୀଳ ଗୋଷ୍ଠୀକୁ ସନ୍ତୁଷ୍ଟ କରିବା ପାଇଁ ରାଜନୈତିକ ସ୍ୱାଧୀନତା ସହ ଆର୍ଥିକ ମୁକ୍ତିର ସଂପର୍କ ଯୋଡ଼ିଥିଲା, ତାହା ପୁଣି ସମାଜବାଦୀ ଜୟପ୍ରକାଶ ଗୋଷ୍ଠୀକୁ ନିରୁତ୍ସାହିତ କରିବା ପାଇଁ ବିହାର ସୋସିଆଲିଷ୍ଟ ପାର୍ଟିର ଆଦର୍ଶ ବିରୁଦ୍ଧରେ ପ୍ରସ୍ତାବ ଗ୍ରହଣ କଲା।

Digitized by srujanika@gmail.com

ଯୁବଗୋଷ୍ଠୀ କଂଗ୍ରେସ ପ୍ରତି ନିଜର ଅନାସକ୍ତି ଜଣାଇଲେ। ରକ୍ଷଣଶୀଳ ଗୋଷ୍ଠୀ କଂଗ୍ରେସର ମୁଖ୍ୟସ୍ରୋତ ସାଜିଲେ।

୧୯୩୦-୩୨ ମସିହାର ଆଇନ ଅମାନ୍ୟ ଆଂଦୋଳନର ବିଫଳତା ଏବଂ ତଦ୍ ଅନ୍ତେ କଂଗ୍ରେସ ଦଳରେ ବଢୁଥିବା ଗୋଷ୍ଠୀ କଂଦଳ ପରୋକ୍ଷରେ ସମାଜବାଦୀ ଆଂଦୋଳନକୁ ବଳବତ୍ତର ଓ ତେଜିଆନ କଲା। ୧୯୦୫ ମସିହାରେ ବଂଗ ଭଂଗ ଆଂଦୋଳନ ଓ ୧୯୨୦-୨୧ ମସିହାର ଅସହଯୋଗ ଆଂଦୋଳନର ତାତ୍କାଳିକ ବିଫଳତା ଯେମିତି ଯୁବ ଗୋଷ୍ଠୀକୁ ସଶସ୍ତ୍ର ବିପ୍ଲବ ପ୍ରତି ଆକୃଷ୍ଟ କରିଥିଲା, ଆଇନ ଅମାନ୍ୟ ଯେମିତି ସମାଜବାଦୀ ଆଂଦୋଳନକୁ ସାହାଯ୍ୟ କଲା। ସମାଜବାଦ ସାଙ୍ଗରେ ଏହାର ଅନ୍ୟତମ ଉଦ୍ଦେଶ୍ୟ ଥିଲା ଜାତୀୟତା ଆଂଦୋଳନକୁ ବିପ୍ଳବାତ୍ମକ ମୋଡ଼ଦେବା, ବ୍ରିଟିଶ ଉପନିବେଶବାଦର ସାମ୍ବିଧାନିକ ଜାଲରୁ ମୁକ୍ତ କରିବା।

ସୋସିଆଲିଷ୍ଟ ପାର୍ଟି ଗଠନର ଅନ୍ୟତମ ମୁଖ୍ୟ କାରଣ ଥିଲା ଗାଂଧିଂକ ସହ ସମାଜବାଦୀଂକ ମତଭେଦ। ଗାଂଧିଂକୁ ନିଜର ଆଦର୍ଶ ପୁରୁଷ ରୂପେ ଗ୍ରହଣ କରିବା ସତ୍ତ୍ୱେ, ସମାଜବାଦୀ କେବେ ଗାଂଧିବାଦର ଅଂଧ ସମର୍ଥକ ନ ଥିଲେ। ଗାଂଧିବାଦର ଭଲ-ଭୂଲ ବିଚାର କରି ପନ୍ଥା ନିର୍ଦ୍ଧାରଣ କରିବାକୁ ନିଜର କର୍ତ୍ତବ୍ୟ ବୋଲି ସେମାନେ ଭାବୁଥିଲେ। ଏହି ପ୍ରସଙ୍ଗରେ ଲୋହିଆଂକ ମତ ପ୍ରଣିଧାନ ଯୋଗ୍ୟ। ଲୋହିଆ ଲେଖିଥିଲେ, ସଂପୂର୍ଣ୍ଣ ମାର୍କ୍ସବାଦୀ ବା ମାର୍କ୍ସବାଦ ବିରୋଧୀ ହେବା ବ୍ୟକ୍ତି ପକ୍ଷରେ ଯେତିକି ମାତ୍ରାରେ ହାନିକାରକ, ଅଂଧ ଗାଂଧିବାଦୀ ବା ଗାଂଧିବାଦ ବିରୋଧୀ ହେବା ମଧ୍ୟ ତତୋଽଧିକ ମାତ୍ରାରେ ଅନାବଶ୍ୟକ। ନିଜର ବିବେକକୁ ପଚାରି ପନ୍ଥା ନିର୍ଦ୍ଧାରଣ କରିବା ହେଉଛି ସବୁଠାରୁ ଉତ୍କୃଷ୍ଟ କାର୍ଯ୍ୟ। ପରିଣାମ ସ୍ୱରୂପ ଭାରତୀୟ ସମାଜବାଦ କେବଳ ଗାଂଧିବାଦରେ ସୀମିତ ନ ରହି, ମାର୍କ୍ସବାଦ ଏବଂ ପାଶ୍ଚାତ୍ୟ ଆଦର୍ଶ ଦ୍ୱାରା ମଧ୍ୟ, ଅଜାଣତରେ ହେଉ ପଛେ, କେତେକାଂଶରେ ପ୍ରଭାବିତ ଥିଲା। ଅନ୍ୟ ଅର୍ଥରେ ମାର୍କ୍ସବାଦ, ଗାଂଧିବାଦ ଓ ପାଶ୍ଚାତ୍ୟ ଆଦର୍ଶକୁ ଆହରଣ କରି ବାଟ ଖୋଜୁଥିବା କତିପୟ ଶିକ୍ଷିତ ଯୁବକଂକ ସମ୍ମିଳିତ ଉଦ୍ୟମର ଭିନ୍ନ ନାମ ଥିଲା ସମାଜବାଦୀ ଆଂଦୋଳନ, କଂଗ୍ରେସ ସୋସିଆଲିଷ୍ଟ ପାର୍ଟି।

ଗାଂଧି ଚିନ୍ତାଧାରା ସହ ସମାଜବାଦୀଂକ ମତଭେଦର କେଂଦ୍ର ବିଂଦୁ ଥିଲା- ଟ୍ରଷ୍ଟିସିପ୍। ଗାଂଧି କହୁଥିଲେ, ଧନୀକ ବର୍ଗ ନିଜ ବ୍ୟକ୍ତିଗତ ସଂପତ୍ତିର 'ଟ୍ରଷ୍ଟି' ରୂପେ କାର୍ଯ୍ୟ କରିବେ। ଅର୍ଥାତ୍ ସଂପତ୍ତି ସୂଚାରୁ ରକ୍ଷଣା ବେକ୍ଷଣ ନିମିତ୍ତ ନାମକୁ ମାତ୍ର ବ୍ୟକ୍ତିଗତ ହେବ, କିନ୍ତୁ ତାର ଉପଯୋଗ ସର୍ବଦା ସାମାଜିକ ରହିବ। ମାର୍କ୍ସବାଦୀୟ ଶ୍ରେଣୀ ସଂଘର୍ଷରେ ଉଦ୍‌ବୁଦ୍ଧ ସମାଜବାଦୀ ଦିଗ୍ଗଜ ଜୟପ୍ରକାଶ ବା ନରେଂଦ୍ର ଦେବ କି ଏଥିରେ ସମ୍ମତି ଯାଆନ୍ତେ? ସଂପତ୍ତି ହେଲା ସମାଜର, ପ୍ରକୃତି-ଦତ୍ତ। ଧନୀ ଚାଲାକି ବଳରେ ଯଦି କୁଢ଼ କୁଢ଼ ସଂପତ୍ତି ଠୁଳ କରିଛି, ଗରିବ ନିମନ୍ତେ ପନ୍ଥା ହେଲା

Digitized by srujanika@gmail.com

ଧନୀଠାରୁ ସ୍ୱ ଭାଗର ସଂପତ୍ତି ବୋହି ଆଣିବା ଏବଂ ସମାଜବାଦୀର କର୍ତ୍ତବ୍ୟ ହେଲା ଗରିବଙ୍କୁ ସେ ଦିଗରେ ସଂଗଠିତ କରିବା । ଜୟପ୍ରକାଶ ତ ଏଥିପାଇଁ ସୀମିତ ମାତ୍ରାରେ ହିଂସାର ଉପଯୋଗକୁ ମଧ୍ୟ ସ୍ୱୀକୃତି ଦେଇଛନ୍ତି । 'ସମାଜର ଅଶୀ ପ୍ରତିଶତ ସାଧାରଣ ଲୋକଙ୍କର ମଂଗଳ ପାଇଁ, କୋଡ଼ିଏ ପ୍ରତିଶତ ଧନୀକ ଶ୍ରେଣୀ ଉପରେ ବାଧ୍ୟ ବଳତ୍କାର କଲେ କ୍ଷତି କ'ଣ ?' ବିବେକର ଦଂଶନ କି କେବେ ଧନୀକ ହାତରେ ସଂପତ୍ତିର ବ୍ୟକ୍ତିଗତ 'ଅପବ୍ୟୟ'କୁ ଅବରୋଧ କରି ପାରିବ ? ଅର୍ଥାତ୍ ସଂପତ୍ତିର ସାମାଜିକୀକରଣ ପାଇଁ ଗାଂଧି ଟ୍ରଷ୍ଟିସିପ, ବିବେକର ଦଂଶନକୁ ପାଥେୟ କଲା ବେଳେ, ଯାହାକି ଅହିଂସା ଦ୍ୱାରା ସଂଭବ, ସମାଜବାଦୀ ସେଥିପାଇଁ ସୀମିତ ମାତ୍ରାରେ ହିଂସାର ଅନିବାର୍ଯ୍ୟତାକୁ ସ୍ୱୀକାର କଲେ ।

'ଟ୍ରଷ୍ଟିସିପ'କୁ ନେଇ ମତଭେଦ ଯେମିତି ସମାଜବାଦୀଂକ ଅହିଂସା ପ୍ରତି ପୂର୍ଣ୍ଣ ଆସ୍ଥା ନ ଥିବା ପ୍ରମାଣ କଲା, ଖଦି ପ୍ରତି ସଂଶୟ ସେମିତି କୁଟୀର ଶିଳ୍ପ ଉପରେ ସେମାନଂକର ସଂପୂର୍ଣ୍ଣ ବିଶ୍ୱାସ ନ ଥିବା ସ୍ପଷ୍ଟ କଲା । ପାଶ୍ଚାତ୍ୟ ଶିକ୍ଷାରେ ଶିକ୍ଷିତ ଏବଂ ଶିଳ୍ପ ବିପ୍ଳବର ଅବଗୁଣ ସଂପର୍କରେ ଅଧା-ଜ୍ଞାତ ଯୁବ ଗୋଷ୍ଠୀର ପାଶ୍ଚାତ୍ୟ ବିକାଶ ପଦ୍ଧତି ଓ ଶିଳ୍ପ ବିପ୍ଳବ ପ୍ରତି ସଂପୂର୍ଣ୍ଣ ମୋହଭଂଗ ଘଟି ନଥିଲା । ତେଣୁ ଗୁରୁଶିଳ୍ପ ଓ ବ୍ୟାପକ ଉତ୍ପାଦନର ବିରୋଧୀ ହେଲେ ସୁଦ୍ଧା, କ୍ଷୁଦ୍ର ଯାନ୍ତ୍ରିକ ଶିଳ୍ପର ସ୍ଥାପନ, କୃଷି ଓ ଜଳସେଚନ ଆଦି କ୍ଷେତ୍ରରେ ବୈଜ୍ଞାନିକ ପ୍ରଣାଳୀର ପ୍ରୟୋଗ ଏବଂ ତଦ୍ୱାରା ଦେଶର ଉତ୍ପାଦନ କ୍ଷମତା ବୃଦ୍ଧି ପାଇବାରେ ସେମାନଂକର ଆପତ୍ତି ନ ଥିଲା । ଅର୍ଥାତ୍ ପୁଂଜିବାଦୀ ବ୍ୟାପକ ଉତ୍ପାଦକତା ଏବଂ ଗାଂଧିବାଦୀ ଉତ୍ପାଦନ ସ୍ଥିରତା ମଝିରେ କାହିଁ କେଉଁଠି ସେମାନେ ଏକ ବିକଳ୍ପ ଖୋଜୁଥିଲେ । ଲୋହିଆଂକର ଗାଂଧି ଖଦି ଉପରେ ପ୍ରତିକ୍ରିୟାରୁ ଏହା ସ୍ପଷ୍ଟ ହୁଏ । ଲୋହଆଂକ ମତରେ ଦେଶର ସ୍ୱାଧୀନତା ଓ ପ୍ରଗତି ପାଇଁ ଖଦି ଭଳି ଛୋଟିଆ ଛୋଟିଆ କାର୍ଯ୍ୟପନ୍ଥା ଯଥେଷ୍ଟ ନୁହେଁ । ଗାଂଧିଂକ ମୃତ୍ୟୁ ପରେ ମଧ୍ୟ ଲୋହିଆ ଓ ଅନ୍ୟ ସମାଜବାଦୀଂକ ଉକ୍ତ ବିଚାର ବଜାୟ ରହିଲା ।

ଗାଂଧି ଆଦର୍ଶ ଅହିଂସା ସ୍ଥାନରେ ସମାଜବାଦୀ ଚାହିଁଲେ ସୀମିତ ହିଂସା, ଖଦି ଓ କୁଟୀର ଶିଳ୍ପ ବଦଳରେ ଆବଶ୍ୟକ ମଣିଲେ, କ୍ଷୁଦ୍ର ଯାନ୍ତ୍ରିକ ଶିଳ୍ପକୁ ପ୍ରାଧାନ୍ୟ ଓ ପ୍ରୋତ୍ସାହନ ଦିଆଯିବ । ସେମାନେ ବୁଝିପାରିଲେ ନାହିଁ ଯେ, ସୀମିତ ହିଂସାକୁ ସାମ୍ୟବାଦୀଂକ ବ୍ୟାପକ ହିଂସାରେ ଏବଂ କ୍ଷୁଦ୍ର ଯାନ୍ତ୍ରିକ ଶିଳ୍ପକୁ ପାଶ୍ଚାତ୍ୟ ଆଦର୍ଶ ଶିଳ୍ପ ବିପ୍ଳବରେ ପରିଣତ ହେବା ପାଇଁ ବେଶି ସମୟ ଲାଗେ ନାହିଁ । ଏମିତି ବି ଆରଂଭ ସମୟରେ ହିଂସା ସୀମିତ ଓ ଶିଳ୍ପ କ୍ଷୁଦ୍ର ହିଁ ରହିଥିବ । ତେଣୁ ଗାଂଧିବାଦ ଓ ପାଶ୍ଚାତ୍ୟ 'ବିକାଶ' ପଦ୍ଧତିର ମଝିରେ ଯେଉଁ ବିକଳ୍ପଟି ସେମାନେ ଖୋଜିପାଇଲେ, ତାହା ମାର୍କ୍ସବାଦ ପରି ଗଢ଼ି ଉଠିଥିଲା ପୁଂଜିବାଦୀ ଆଦର୍ଶର ଭିତ୍ତି ଉପରେ;

Digitized by srujanika@gmail.com

ଗାଂଧି ଆଦର୍ଶର ପରିପନ୍ଥୀ ଅଧା-ସମାଜବାଦୀକୁ ଯେମିତି ସମାଜବାଦୀ କୁହା ଯାଏନା, ଅଧା-ଗାଂଧିବାଦୀ କେବେ ଗାଂଧିବାଦୀ ହୋଇ ରହେନା। ଗୋଟାଏ ଶବ୍ଦରେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ମାର୍କ୍ସବାଦୀ ଦୃଷ୍ଟିକୋଣରୁ ନା ସୋସିଆଲିଷ୍ଟ ହେଲା, ନା ଗାଂଧିବାଦୀ ଦୃଷ୍ଟିରେ ସଚ୍ଚା କଂଗ୍ରେସୀ (ଗାଂଧିବାଦୀ) ରହିଲା; ବରଂ ଏକ ତ୍ରିଶଂକୁ ଅବସ୍ଥାରେ ମଝିରେ ଝୁଲିରହିବା ଥିଲା ତାର ନିୟତି। ପାଶ୍ଚାତ୍ୟ 'ବିକାଶ' ପଦ୍ଧତି ପ୍ରତି ବିତସ୍ପୃହ, ଗାଂଧି ଆଦର୍ଶ ପ୍ରତି ସଂଶୟ, ପୁଣି ଉଭୟ ଆଦର୍ଶରୁ କିଛି କିଛି ଗ୍ରହଣ କରିବାର ଆଗ୍ରହ ଥିଲା ଭାରତୀୟ ସମାଜବାଦୀ ଆଂଦୋଳନର ଚରିତ୍ର। ଯେହେତୁ ଉଭୟ ଆଦର୍ଶ ଥିଲେ ପରସ୍ପର ବିରୋଧୀ, କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ମଧ୍ୟ ହୋଇ ପଡ଼ିଲା ଏକ ବିରୋଧାଭାଷର ପ୍ରତିଛବି।

ପ୍ରଶ୍ନ ଉଠେ, ଏତେ ବଡ଼ ଆଂଦୋଳନରେ ଏ ବିରୋଧାଭାଷ କାହିଁକି? ଆଜି ଏକବିଂଶ ଶତାବ୍ଦୀ ଆରଂଭ ହେବାକୁ ବସିଲାଣି, ପାଶ୍ଚାତ୍ୟ 'ବିକାଶ' ପଦ୍ଧତିର ବିଶିଷ୍ଟ ଓକିଲମାନେ ମଧ୍ୟ ସ୍ୱୀକାର କଲେଣି ଯେ, ଏହା ଧ୍ୱଂସାଭିମୁଖୀ। ତଥାପି ଅନେକେ ଏକଥା ମାନିବାକୁ ନାରାଜ। ତଥାପି ସେମାନେ ବିଶ୍ୱାସ କରନ୍ତି, ବ୍ୟାପକ ଶିଳ୍ପୀକରଣ ନାଁରେ ହେଉ କି ପରମାଣୁ ବୋମା ଉଦ୍ଭାବନ ଆଳରେ ହେଉ ପାଶ୍ଚାତ୍ୟ 'ବିକାଶ' ପଦ୍ଧତି ଆମକୁ ବିକାଶର ପ୍ରସାଦ ବାଣ୍ଟିବାକୁ ଅଙ୍ଗୀକାରବଦ୍ଧ। ତଥାପି ସେମାନେ ଜାଣି ନାହାନ୍ତି, ବିକାଶ ଆଳରେ ସେମାନେ ଉପଭୋକ୍ତାବାଦର ଜାଲରେ, ଧ୍ୱଂସର କବଳରେ ବସ୍ତୁତାନ୍ତ୍ରିକ, ଭୋଗବାଦୀ ମାୟାର କୁହୁକ ଫାଶରେ ବଂଧା ପଡ଼ି ଗଲେଣି। ଅନେକ ଶିକ୍ଷିତ ବୁଦ୍ଧିଜୀବି ମଧ୍ୟ ଏହି ଭ୍ରମ ଧାରଣାର ବଶବର୍ତ୍ତୀ। ଏମିତି ଦୁଃସ୍ଥିତିରେ ଷାଠିଏ ବର୍ଷ ତଳେ ସମାଜବାଦୀ ଆଂଦୋଳନ ଯେ ସାମାନ୍ୟ ମାତ୍ରାରେ ପାଶ୍ଚାତ୍ୟ ମୋହଗ୍ରସ୍ତ ହୋଇ ପଡ଼ିଥିଲା- ଏଥିରେ ଅସ୍ୱାଭାବିକତା କିଛି ନାହିଁ। ଆରଂଭରୁ ବିକାଶର ପ୍ରଶ୍ନ ସହ ଶିଳ୍ପ ବିପ୍ଳବ, ପୁଂଜିନିବେଶ, ପ୍ରକୃତିର ନିୟନ୍ତ୍ରଣ ଆଦିକୁ ଏମିତି ଯୋଡ଼ି ଦିଆଯାଇଛି ଯେ, ଏ ଗୁଡ଼ିକରୁ ଦୂରେଇ ଯିବାକୁ କହି ଗାଂଧି ଆଦର୍ଶ ବିକାଶ ପଥରେ ଯେମିତି ବାଧା ସୃଷ୍ଟି କରୁଛି। ଏଭଳି ସ୍ଥିତିରେ ଗାଂଧି ଦର୍ଶନର ପୂର୍ଣ୍ଣ ସମର୍ଥନ କ'ଣ କମ କାଠିକର ପାଠ? ଅତି କମରେ ଅଧା ସମର୍ଥନ କରି ସମାଜବାଦୀ ଯଦି ସେହି ଆଦର୍ଶକୁ ତିଷ୍ଠି ରହିବାରେ ସାହାଯ୍ୟ କରିଛନ୍ତି, ତାହା କ'ଣ କମ ଦୂର ଦୃଷ୍ଟିର କଥା?

ଆଜି ଯୁଗ ବଦଳୁଛି। ପରିବେଶର ସଂରକ୍ଷଣ ପାଇଁ, ମୁଖ୍ୟତଃ ଭାଷଣରେ ହେଉ ପଛେ, ପରିବେଶ ବିଜ୍ଞାନୀ ବାହାରିଛନ୍ତି; ତଥାକଥିତ ବିକଶିତ ରାଷ୍ଟ୍ରରୁ ପ୍ରଚଳିତ 'ବିକାଶ' ପଦ୍ଧତିର ବିରୋଧୀ ସ୍ୱର ଶୁଣା ଗଲାଣି; ବିକାଶର ଅବଗୁଣ ସବୁ 'ନର୍ମଦା' 'ଭୋପାଳ କାଣ୍ଡ' ନାମରେ ପ୍ରତିଭାତ ହେଉଛି। ଏହି ପରିସ୍ଥିତିରେ ସମାଜବାଦୀ ଆଜି ତାଂକର ପାର୍ଟି ନ ଥାଉ ପଛେ, ସଂଖ୍ୟା ସୀମିତ ହେଉ ପଛେ, ଆଉ

Digitized by srujanika@gmail.com

ଅଧା-ଗାଂଧିବାଦୀ ନାହାନ୍ତି; ଗାଂଧି ଆଦର୍ଶ ସହ ସେମାନଙ୍କର ଆତ୍ମିକମିଳନ ଘଟି ସାରିଛି। ପାଶ୍ଚାତ୍ୟ 'ବିକାଶ' ପଦ୍ଧତି ଏକବିଂଶ ଶତାବ୍ଦୀକୁ ଆମନ୍ତ୍ରଣ କଲା ବେଳେ, ଗାଂଧିବାଦୀ ଧାରାରେ ଖଦି ସାଂଗରେ ସେମାନେ ଅଷ୍ଟାଦଶ ଶତାବ୍ଦୀକୁ, ସଂଭବ ହେଲେ ଶିଳ୍ପ ବିପ୍ଳବର ବହୁତ ପଛକୁ ଫେରିଯିବାକୁ ବ୍ୟାକୁଳ। (୯) କାରଣ ସେମାନେ ଜାଣନ୍ତି ମାନବ ଜାତି ପାଇଁ ତାହାହିଁ ପ୍ରକୃତ ବିକାଶ, ନୈସର୍ଗିକ ଶାନ୍ତିର ପ୍ରକୋଷ୍ଠ; ଆଜିର ବିଷମତାପୂର୍ଣ୍ଣ, ବିଷମୟ, ମାନବିକତାଶୂନ୍ୟ ସମାଜ ତୁଳନାରେ ହୁଏତ ତାହା ଢେର ଭଲ।

(୧୯୯୩)

◆◆

## ପାଦଟୀକା

(୧) ଲୋହିଆ, ରାମ ମନୋହର, India's Path to Socialism, (ବିରେଂଦର ଗ୍ରୋଭର ସଂପାଦିତ Political Thinkers of India, ରାମ ମନୋହର ଲୋହିଆ ବିଶେଷାଂକ, ନବମ ଖଣ୍ଡ, ଦିଲ୍ଲୀ 1990) ପୃ. 233.

(୨) ତତ୍ରୈଵ, ପୃ. ୨୩୨.

(୩) ସିହ୍ନା, ସଚ୍ଚିଦାନଂଦ, The Consumerist Culture, ଦିଲ୍ଲୀ, ୧୯୮୩, ଦ୍ରଷ୍ଟବ୍ୟ।

(୪) ଲୋହିଆ ରାମମନୋହର, Rs. 25,000 A day, ହାଇଦ୍ରାବାଦ, 1903. ଦ୍ରଷ୍ଟବ୍ୟ।

(୫) ସିହ୍ନା, ସଚ୍ଚିଦାନଂଦ, The Consumerist Culture.

(୬) ଲୋହିଆ, Marx, Gandhi and Socialism, ହାଇଦ୍ରାବାଦ, 1963, ପୃ.1.

(୭) ନାରାୟଣ ଜୟପ୍ରକାଶ, My Picture of Socialism, (ବିରେଂଦର ମୋହନ ସଂପାଦିତ Political Thinkers of India, ଜୟ ପ୍ରକାଶ ନାରାୟଣ ବିଶେଷାଂକ, ଅଷ୍ଟମ ଖଣ୍ଡ, ଦିଲ୍ଲୀ, 1990) ପୃ. 20.

(୮) ଲୋହିଆ, ରାମମନୋହର, Anecdotes About Mahatma Gandhi. (ବିରେଂଦର ମୋହନ ସଂପାଦିତ,... ନବମ ଖଣ୍ଡ), ପୃ. 417-415).

(୯) ପଟ୍ଟନାୟକ, କିଶନ ବିକଳ୍ପ ବିଚାର, ବରଗଡ଼, ଚତୁର୍ଥ ସଂଖ୍ୟା, 1993 ର ସଂପାଦକୀୟ ଦ୍ରଷ୍ଟବ୍ୟ, ପୃ. 8-10.

Digitized by srujanika@gmail.com

# ହରିଜନ, ଗାଂଧି ଓ ମାୟାବତୀ

ମହାତ୍ମା ଗାଂଧିଙ୍କର 'ହରିଜନ' ଶବ୍ଦକୁ ନେଇ ନିକଟରେ (୧୯୯୪) ଅନେକ ହୋ ହଲ୍ଲା ହୋଇଯାଇଛି। ବହୁଜନ ସମାଜ ପାର୍ଟିର ନେତ୍ରୀ ମାୟାବତୀଙ୍କ ମତରେ ଅନୁସୂଚିତ ଜାତି ବା ତଥାକଥିତ ଅସ୍ପୃଶ୍ୟ ଜାତିର ବ୍ୟାଖ୍ୟା ପାଇଁ 'ହରିଜନ' ଶବ୍ଦର ଉପଯୋଗ ସମଗ୍ର ଜାତିକୁ ଅପମାନିତ କରୁଛି। ସମାଜର ଅନ୍ୟମାନଙ୍କଠାରୁ ଅନୁସୂଚିତ ଜାତିକୁ ଅଲଗା ତଥା ନୀଚ ଭାବେ ରଖିବା ପାଇଁ 'ହରିଜନ' ଏକ ସକ୍ରିୟ ଉଦ୍ୟମ! ଏକ ଜାତିର ଅପମାନ କରୁଥିବା ମହାତ୍ମା ଗାଂଧିଙ୍କୁ, ତେଣୁ, ସେ 'ଜାତିର ଜନକ' ରୂପେ ସ୍ୱୀକାର କରିବାକୁ କୁଣ୍ଠିତ। ବହୁଜନ ପାର୍ଟିର ମୁଖ୍ୟ ନେତା କାଂଶିରାମ ତ 'ହରିଜନ' ଶବ୍ଦର ବ୍ୟବହାର ବିରୁଦ୍ଧରେ ଅଦାଲତର ଆଶ୍ରୟ ନେବାକୁ ପ୍ରସ୍ତାବ ଦେଲେଣି।

ଅନୁସୂଚିତ ଜାତିର ନେତୃବୃନ୍ଦ ଗାଂଧିଙ୍କର ହରିଜନ ଶବ୍ଦକୁ ନେଇ ଯେତେ ବିଚଳିତ, ଗାଂଧିଭକ୍ତ ବୋଲି ନିଜକୁ ମନେ କରୁଥିବା ବ୍ୟକ୍ତି ଓ ରାଜନୈତିକ ଦଳମାନେ ଗାଂଧିଙ୍କର ସମାଲୋଚନାକୁ ନେଇ ତତୋଧିକ ବିକ୍ଷୁବ୍ଧ। ଜାତିର ଜନକ ମହାତ୍ମା ଗାଂଧିଙ୍କ ବିରୁଦ୍ଧରେ ବିଷୋଦଗାର କରିବାର ଅଧିକାର ମାୟାବତୀଙ୍କୁ ଦେଲା କିଏ? ଗାଂଧିଙ୍କର ଅପମାନ (!) କ'ଣ ଭାରତୀୟ ରାଷ୍ଟ୍ରବାଦର ବିରୋଧ ନୁହେଁ? ଏମିତି ଅନେକ ପ୍ରଶ୍ନ ସେମାନଙ୍କର। ମାୟାବତୀ ଓ ବହୁଜନ ପାର୍ଟିର ନିନ୍ଦା ପାଇଁ ସେମାନେ ପାର୍ଲାମେଣ୍ଟ ଓ ବିଧାନସଭାଗୁଡ଼ିକୁ ମଧ୍ୟ ମଂଚ କଲେଣି।

ଏହି ପରିପ୍ରେକ୍ଷୀରେ ଆଜି ପ୍ରଶ୍ନ ଉଠେ, ଅନୁସୂଚିତ ଜାତିର ସଂଜ୍ଞା ଭାବରେ 'ହରିଜନ' ଶବ୍ଦର ଉପଯୋଗ କେତେଦୂର ଯୁକ୍ତିଯୁକ୍ତ? 'ହରିଜନ' ଶବ୍ଦର ପ୍ରତିବଦଳରେ 'ଦଳିତ' ବା ଅନ୍ୟ କେଉଁ ଏକ ଶବ୍ଦ ବ୍ୟବହାର କଲେ ଅନୁସୂଚିତ ଜାତିର ମନରୁ ଅଲଗାଭାବ କ'ଣ ଦୂର ହୋଇ ଯିବ? ଜାତିଆଣ ଭାବରେ ଯଥାସ୍ଥିତି ଯଦି ବଜାୟ ରହିଥାଏ ନୂତନ ଭାବରେ ଗୃହୀତ ଶବ୍ଦଟି କ'ଣ 'ହରିଜନ'ର ପ୍ରତିଶବ୍ଦ ମାତ୍ର ହେବ ନାହିଁ? ଅନ୍ୟପକ୍ଷରେ ଗାଂଧିବାଦର ସମାଲୋଚନା ବାସ୍ତବରେ କ'ଣ ଏତେ ବଡ଼ ଅକ୍ଷମଣୀୟ ଅପରାଧ? ଗାଂଧିଙ୍କୁ କେବଳ ପ୍ରଶଂସାର ପରିଧି ଭିତରେ ଏବଂ ସମାଲୋଚନାର ଊର୍ଦ୍ଧ୍ୱରେ ରଖି କ'ଣ ଆମେ ପ୍ରତିକ୍ରିୟାଶୀଳ ଧାର୍ମିକ ମୁଲ୍ଲାବାଦୀଙ୍କ ଭଳି ଏକ ଅଯୌକ୍ତିକ ପନ୍ଥା ଗ୍ରହଣ କରୁ ନାହୁଁ? ଦେଶଭକ୍ତିର ପ୍ରମାଣ ଦେବା ପାଇଁ ଗାଂଧିଙ୍କର ଅଂଧ ଭକ୍ତ ହେବା କ'ଣ ନିହାତି ଆବଶ୍ୟକ? ପୁଣି, ଗାଂଧିଙ୍କୁ

Digitized by srujanika@gmail.com

ଜାତିର ଜନକ ବୋଲି କାୟମନୋବାକ୍ୟରେ ଗ୍ରହଣ କରୁନଥିବା ବ୍ୟକ୍ତି ସମୂହଙ୍କ ବିରୁଦ୍ଧରେ ଖଡ୍ଗହସ୍ତ ହେବା କ'ଣ ଗାଂଧି ଭକ୍ତିର ଯଥେଷ୍ଟ ପ୍ରମାଣ ?

ଅସହଯୋଗ ଆଂଦୋଳନ ସମୟରେ ଗାଂଧି ଗ୍ରାମ ସଂଗଠନ, ଅସ୍ପୃଶ୍ୟତା ନିବାରଣ ଆଦି ରଚନାତ୍ମକ କାର୍ଯ୍ୟକ୍ରମଗୁଡ଼ିକୁ ହାତକୁ ନେଲେ। ହିଂଦୁ ସମାଜର ତଥା କଥିତ 'ଅସ୍ପୃଶ୍ୟ' ବା ଡୋମ, ଚମାର, ପାଣ ଆଦି 'ନୀଚ' ଜାତିର ବ୍ୟାଖ୍ୟା ପାଇଁ ଆବଶ୍ୟକ ହେଲା ଏକ ସଂଜ୍ଞାର, ଶବ୍ଦର। ଅସ୍ପୃଶ୍ୟତା ଏକ ନଗ୍ନ ବାସ୍ତବିକତା; ତେଣୁ ଅସ୍ପୃଶ୍ୟ ପଦବାଚ୍ୟ ଗୋଷ୍ଠୀ ସମୂହର ସରଳ ସଂଜ୍ଞା ନିରୂପଣ ଥିଲା ଏକ ସାମାଜିକ ଆବଶ୍ୟକତା। ତାକୁ ଏଡ଼ାଇ କେବେ ବାସ୍ତବିକତାର ସମ୍ମୁଖୀନ ହେବା ନୋହିବ। ଏଥିପାଇଁ ଆରଂଭରେ ଗାଂଧି ପ୍ରଚଳିତ 'ଅସ୍ପୃଶ୍ୟ' ଶବ୍ଦକୁ ବ୍ୟବହାର କରୁଥିଲେ। ମାତ୍ର ଅସ୍ପୃଶ୍ୟ ଶବ୍ଦର କଟୂତାପୂର୍ଣ୍ଣ ଆକ୍ଷରିକ ଅର୍ଥ ଯୋଗୁଁ କେତେକ ଅନୁସୂଚିତ ଜାତିର କଂଗ୍ରେସ କର୍ମୀ ମତ ଦେଲେ, ହରିଜନ ଶବ୍ଦର ଉପଯୋଗ ପାଇଁ। ତେଣିକି ଗାଂଧି 'ଅସ୍ପୃଶ୍ୟ' ପ୍ରତିବଦଳରେ 'ହରିଜନ' ଶବ୍ଦର ବ୍ୟବହାର କଲେ। ୧୯୩୩ ମସିହାରୁ 'ହରିଜନ' ନାମରେ ଏକ ପତ୍ରିକା ମଧ୍ୟ ସଂପାଦନ କରିବାକୁ ଲାଗିଲେ।

ହରିଜନ ଶବ୍ଦର ବ୍ୟବହାର ଯୋଗୁ ଗାଂଧିଜୀ ଆରଂଭରୁ ଅନେକ ବାଦ ବିସଂବାଦର ସମ୍ମୁଖୀନ ହୋଇଥିଲେ। ମାୟାବତୀଂକ ପରି ସେତେବେଳେ ମଧ୍ୟ କେତେକ ରାଜନୈତିକ କର୍ମୀ 'ହରିଜନ' ଅନୁସୂଚିତ ଜାତିକୁ ପୃଥକ୍ ଏବଂ ତଦ୍ ଅନ୍ତେ ନୀଚ ସାବ୍ୟସ୍ତ କରିବ ବୋଲି ଆଶଂକା କରୁଥିଲେ। ସେମାନଂଙ୍କ ଶଂକା ଦୂରୀକରଣ ନିମନ୍ତେ ଗାଂଧି 'ହ୍ୱାଇ ହରିଜନ' ବା 'ହରିଜନ କାହିଁକି' ଶୀର୍ଷକ ଏକ ଲେଖାରେ (ହରିଜନ-ପତ୍ରିକା ୧୧.୦୩.୧୯୩୩) ଲେଖିଛନ୍ତି ଯେ, ଅସ୍ପୃଶ୍ୟ ବା 'ଦଳିତ' ଶବ୍ଦ ପରି 'ହରିଜନ'ର ଆକ୍ଷରିକ ଅର୍ଥ କଟୂତାପୂର୍ଣ୍ଣ ନୁହେଁ। ଦ୍ୱିତୀୟରେ 'ହରିଜନ' ଶବ୍ଦ ଆସିଥିଲା କେତେକ ଅନୁସୂଚିତ ଜାତିର ବ୍ୟକ୍ତିଙ୍କ ଠାରୁ। ଗାଂଧି ଭଳି କୌଣସି ଉଚ୍ଚ ଜାତିର ଲୋକ ତାଂକୁ ସୃଷ୍ଟି କରି ନ ଥିଲେ। ତୃତୀୟରେ, 'ହରିଜନ' ମାନେ ହେଲା ଭଗବାନଙ୍କ ଜନ। ହିଂଦୁ ଧର୍ମରେ ଭଗବାନଙ୍କୁ ବେ-ସହାରାର ସାହାରା ବୋଲି କୁହାଯାଏ। ଅର୍ଥାତ୍ ଯାହାର କେହି ନାହାନ୍ତି, ତାହାର ଭଗବାନ ଅଛନ୍ତି। ସେହି କ୍ଷେତ୍ରରେ 'ଅସ୍ପୃଶ୍ୟ' ମାନଙ୍କ ଠାରୁ ନିର୍ଧନ, ଦଳିତ, ଶୋଷିତ ଆଉ ସମାଜରେ କିଏ ଅଛି ? ତେଣୁ ସେମାନଂକୁ ଭଗବାନଂକ ଲୋକ ବୋଲି ଡାକିଲେ ଭୂଲ କେଉଁଠି ?

ଅନ୍ୟ ଏକ ଲେଖାରେ ଜଣେ 'ହରିଜନ' ପାଠକଂକ ପ୍ରଶ୍ନର ଉତ୍ତର ଦେଇ ଗାଂଧି ଲେଖିଛନ୍ତି (ହରିଜନ, ୦୯.୦୨.୧୯୩୪), ଅସ୍ପୃଶ୍ୟତା ନିବାରଣ ପରେ ମଧ୍ୟ ଅନୁସୂଚିତ ଜାତିକୁ ସୂଚିତ କରିବା ପାଇଁ ଏକ ସଂଜ୍ଞାର ଆବଶ୍ୟକତା ରହିବ। ସରକାରୀ ନଥିପତ୍ରରେ, କଥାବାର୍ତ୍ତା ଓ ଲେଖାରେ, ସବୁଠି ଅନୁସୂଚିତ ଜାତି ପାଇଁ ଏକ ନାମର ଆବଶ୍ୟକତା ଅଛି। ଏଭଳି ପରିସ୍ଥିତିରେ କଟୂତାମୁକ୍ତ ପୁଣି ଉକ୍ତ ଗୋଷ୍ଠୀର

Digitized by srujanika@gmail.com

ଲୋକଂକ ଦ୍ୱାରା ପ୍ରଦତ୍ତ 'ହରିଜନ' ନାମଟିକୁ ସ୍ୱୀକାର କରିବାରେ ଆପତ୍ତି କ'ଣ ? ହରିଜନ ପତ୍ରିକାର ୧୪.୦୯.୧୯୩୪ ସଂଖ୍ୟାରେ ପୁଣି ପ୍ରସଂଗଟିକୁ ଉତ୍ଥାପନ କରି ସେ ଲେଖିଛନ୍ତି, ଅସ୍ପୃଶ୍ୟତାର ବିନାଶ ତାଂକର ଲକ୍ଷ୍ୟ। ତାଂକ କଳ୍ପନାର ସମାଜରେ, ତେଣୁ, ହୁଏତ ସମସ୍ତେ 'ହରିଜନ' ହୋଇଥିବେ, ନୋହିଲେ କେହି 'ହରିଜନ' ନ ଥିବେ। ମାତ୍ର ସେ ଦିନ ଆସିବା ଯାଏ ଯେଉଁ ନାମର ଆବଶ୍ୟକତା ହେବ, ତାହା 'ହରିଜନ' ହେଲେ କ୍ଷତି କ'ଣ ?

ଏହାର (ହରିଜନ ପ୍ରକାଶନର) ପ୍ରାୟ ଏଗାର ବର୍ଷ ପରେ ହରିଜନ ନାମକରଣ ପଛରେ ନିଜର କୌଣସି ଦୁରଭିସଂଧି ନ ଥିବାର ପ୍ରମାଣ କରିବାକୁ ଯାଇ ଗାଂଧି ଲେଖିଛନ୍ତି (ହରିଜନ, ୧୪. ୦୪. ୧୯୪୪) 'ନାଁରେ କ'ଣ ଅଛି' (What is in a name?) ଅସଲ କଥା ହେଲା ଗୋଟାଏ ଜାତି ମନରେ ଥିବା ହୀନଭାବ ଦୂର ହେବା ଉଚିତ। ତାହା ସେତେବେଳେ ସଂଭବ, ଯେତେବେଳେ ପ୍ରତ୍ୟେକ ଉଚ୍ଚ ବର୍ଣ୍ଣର ହିଂଦୁ ନିଜକୁ 'ହରିଜନ' ବା ଚମାର ପଦବାଚ୍ୟ କରିବ। ତାହା ନ ହେବା ପର୍ଯ୍ୟନ୍ତ ଯେଉଁ ନାମରେ ଡାକିଲେ ସୁଦ୍ଧା—ସେ ହରିଜନ ହେଉ ବା ଅନ୍ୟ କେଉଁ ଶବ୍ଦ ହେଉ— ସେଥିରୁ ହୀନଭାବର ଦୁର୍ଗଂଧ ବାରି ହେବ !

କୌଣସି ଜାତି ଅନ୍ୟର ଦୟା କିଂବା ସହାନୁଭୂତିର ଭରସାରେ ତିଷ୍ଠିପାରେ ନାହିଁ। ଜାତିର ସାମୂହିକ ଉତ୍ଥାନ ନିମିତ୍ତ ଆତ୍ମିକ ବଳର ପ୍ରୟୋଜନ ହୁଏ। କିନ୍ତୁ ଦୁଃଖର କଥା 'ହରିଜନ' ଶବ୍ଦରେ ପ୍ରଚ୍ଛନ୍ନ ଭାବରେ ଆତ୍ମିକ ବଳର ଅଭାବ ପରିଦୃଷ୍ଟ ହୁଏ। ଏହାର ସାଧାରଣ ଅର୍ଥ ଯାହା, ତହିଁରେ 'ଉଚ୍ଚ' ଜାତିର 'ନିମ୍ନ' ଜାତି ପ୍ରତି ଦୟା ଓ ସହାନୁଭୂତି ଭାବ ନିହିତ। ଗାଈକୁ ଆମେ ଇଂରାଜୀରେ 'ହୋଲି କାଓ' ବା ଗୋ-ମାତା କହି ଯେମିତି ଦୟା କରିବସୁ, ଗୋହତ୍ୟା ବିରୁଦ୍ଧରେ ନୈତିକ ପ୍ରତିବଂଧକ ସୃଷ୍ଟି କରୁ, ଅନୁସୂଚିତ ଜାତିକୁ ହରିଂକର ଲୋକ ଡାକି ଉଚ୍ଚ ଜାତିର ଗାଂଧି ଭଳି କିଛି ଲୋକ ସହାନୁଭୂତି ଯାଚନା କରନ୍ତି। ଅର୍ଥାତ୍ 'ହରିଜନ' ଶବ୍ଦରେ କଟୁତା ନ ଥିଲେ କ'ଣ ହେବ, ଦୟାଭାବ ଭରି ରହିଛି। ତେଣୁ ଗାଂଧି ମଧ୍ୟ ନାମଟିକୁ ଗ୍ରହଣ କଲାବେଳେ ଅତ୍ୟଧିକ ଆଗ୍ରହ ଦେଖାଇ ନାହାନ୍ତି। ବରଂ କଟୁତା-ଶୂନ୍ୟ ଏବଂ ଦୟାଭାବ ରହିତ ଏକ ପ୍ରତିଶବ୍ଦ ନ ମିଳିବା ଯାଏଁ, ହରିଜନକୁ ଗ୍ରହଣ କରିବାକୁ ବାଧ୍ୟ ହେଇଛନ୍ତି। (ହରିଜନ, ୨୬, ୦୨. ୧୯୩୭)।

ଆଜି ଅନୁସୂଚିତ ଜାତିର ଶିକ୍ଷିତ ନେତୃବର୍ଗ 'ହରିଜନ' ଶବ୍ଦ ବଦଳରେ 'ଦଳିତ' ଶବ୍ଦର ବ୍ୟବହାର ଯୁକ୍ତିସଂଗତ ବୋଲି ମନେ କରନ୍ତି। ସେମାନଂକ ମତରେ, ଦଳିତ ଶବ୍ଦରେ ତେଜ ଅଛି; କରୁଣା ଭାବ ନାହିଁ; ଏବଂ ଅନୁସୂଚିତ ଜାତିର ସାମାଜିକ ସ୍ଥିତିକୁ ଯଥାର୍ଥତାର ସହ ପେଶ କରିବା ନିମନ୍ତେ ସାମର୍ଥ୍ୟ ରହିଅଛି ! ତେଣୁ 'ଦଳିତ' ଶବ୍ଦ ଗୃହୀତ ହେବାରେ ଏବଂ 'ହରିଜନ' ଶବ୍ଦ ଉଠି ଯିବାରେ ଗାଂଧିବାଦୀ କିଂବା ଗାଂଧି ଭକ୍ତମାନେ ବା ନାରାଜ ହେବେ କାହିଁକି ? ଗାଂଧିଂକ

Digitized by srujanika@gmail.com

'ହରିଜନ' ସପକ୍ଷରେ ଯୁକ୍ତିସବୁ ଯେତେ ତର୍କସିଦ୍ଧ ହେଉ ନା କାହିଁକି, ଯଦି ତଥାକଥିତ 'ହରିଜନ' ସଂପ୍ରଦାୟର ଲୋକେ ତାକୁ ସ୍ୱୀକାର କରିବା ପାଇଁ ଅନିଚ୍ଛୁକ, ତାହା କେବେ ଗ୍ରହଣଯୋଗ୍ୟ ହୋଇ ନ ପାରେ।

ପ୍ରକୃତରେ ଦେଖିଲେ, 'ହରିଜନ' ଓ 'ଦଳିତ' ଅନୁସୂଚିତ ବର୍ଗର ଦୁଇଟି ପ୍ରତିଶବ୍ଦ ମାତ୍ର ନୁହନ୍ତି; ବରଂ ଦୁଇଟି ଭିନ୍ନ ନେତୃତ୍ୱର ବାହକ। ଅନୁସୂଚିତ ଜାତି ପାଇଁ 'ହରିଜନ' ଉଚ୍ଚଜାତି ନେତୃତ୍ୱର ସଂକେତ ଦିଏ। ହେଲେ, 'ଦଳିତ' ଶବ୍ଦ ନିଜସ୍ୱ ଅନୁସୂଚିତବର୍ଗ ନେତୃତ୍ୱର ପ୍ରମାଣ ଦିଏ। ଗାଂଧିଂକର 'ହରିଜନ' ପ୍ରୀତି ଯେତେ ଅଧିକ ହେଉ ନା କାହିଁକି, ସେ ଥିଲେ ଉଚ୍ଚ ଜାତିର ବ୍ୟକ୍ତି। ତାଂକ ନେତୃତ୍ୱର ଦିନେ ଆବଶ୍ୟକତା ପଡୁଥିଲା, କାରଣ ଶିକ୍ଷାରୁ ବଂଚିତ ନିମ୍ନ ଜାତିରେ ସ୍ୱ-ନେତୃତ୍ୱର ସେତେବେଳେ ଅଭାବ ରହିଥିଲା। ଆଜି 'ମାୟାବତୀ', ବହୁଜନ ସମାଜ, ଆଦି ନାମରେ ଯେତେବେଳେ ନିମ୍ନ ଜାତି ନିଜ ନେତୃତ୍ୱ ଗଢ଼ିଛି, ଗାଂଧିବାଦୀମାନେ ତ ବରଂ ଖୁସି ହେବା କଥା। ହରିଜନ ଶବ୍ଦକୁ ତ୍ୟାଗ କରି 'ଦଳିତ'କୁ ଗ୍ରହଣ କରିବା ମୂଳରେ 'ନିମ୍ନ' ଜାତି ଦ୍ୱାରା 'ଉଚ୍ଚ' ଜାତିର ନେତୃତ୍ୱକୁ ପରିତ୍ୟାଗ କରି ନିଜସ୍ୱ ନେତୃତ୍ୱକୁ ଆଦରିବାର ଉଦ୍ୟମ ଜଡ଼ିତ। ତାକୁ ବାଧା ଦେବାର ଅଧିକାର ନା ଗାଂଧିବାଦୀମାନଙ୍କର ଅଛି, ନା ଅଂଧ-ଗାଂଧି ଭକ୍ତମାନଂକର ଅଛି!

ହରିଜନ ଶବ୍ଦକୁ ଗ୍ରହଣ କରି ଗାଂଧି ଜାଣି ଶୁଣି ଅନୁସୂଚିତ ଜାତିକୁ ଦୟାର ପାତ୍ର କରି ଗଢ଼ିଛନ୍ତି, ସମାଜର ବାକୀମାନଂକ ଠାରୁ ଭିନ୍ନ କରି ଦେଖିଛନ୍ତି ବୋଲି ଆକ୍ଷେପ କରିବା ଇତିହାସର ଅବମାନନା ବ୍ୟତୀତ କିଛି ନୁହେଁ। କେବଳ ଅନୁସୂଚିତ ଜାତି କାହିଁକି, ନାରୀ, ଆଦିବାସୀ ଆଦି ସମସ୍ତ ଶୋଷିତ ବର୍ଗର ସାମାଜିକ ଉତ୍ଥାନ ପାଇଁ ଗାଂଧିଂକର ପ୍ରତିବଦ୍ଧତାରେ କେବେ ସଂଦେହ କରାଯାଇ ନ ପାରେ। ତାଂକ କାର୍ଯ୍ୟ ପନ୍ଥାର ସମାଲୋଚନା କରି, ଭିନ୍ନ ବିକଳ୍ପର ନଜିର ଦିଆ ଯାଇ ପାରେ, ମାତ୍ର ତାଂକ ନିଷ୍ଠା ଓ ପ୍ରତିବଦ୍ଧତାରେ ଶଂକା ପ୍ରକଟ କରିବା ଦୁରଭିସଂଧିମୂଳକ! ସ୍ୱୟଂ ଡଃ ଆଂବେଦକର ନିଜର ସମସ୍ତ ମତପାର୍ଥକ୍ୟ ସତ୍ତ୍ୱେ ପାର୍ଲ୍ୟାମେଣ୍ଟରେ ଥରେ (୦୬.୦୯.୧୯୫୪) କହିଥିଲେ, ମୁଁ ଗାଂଧିଂକୁ ସମ୍ମାନ କରେ। ଆମେ ସମସ୍ତେ ଜାଣୁ ଯେ ଅସ୍ପୃଶ୍ୟମାନେ ତାଂକର ଅତି ପ୍ରିୟ ଥିଲେ। ଏହି ପରିପ୍ରେକ୍ଷୀରେ ମାୟାବତୀଂକ ଗାଂଧି ବିରୋଧୀ କଟୂ ଉଦ୍‌ଗୀରଣର କିଛି ଯଥାର୍ଥତା ନାହିଁ। ଆଜି ଯେଉଁ ସ୍ୱରରେ ସେ କହୁଛନ୍ତି 'ହରିଜନ' ନାମର ବର୍ଜନ ହେବା କଥା, କିଛି ବର୍ଷ ପରେ ତାଂକ (ମାୟାବତୀଂକ) ପ୍ରଦତ୍ତ ନାମର ବର୍ଜନ ପାଇଁ ସେଭଳି ସ୍ୱର ନଉଠିବ ବୋଲି କିଏ କହିବ ? ସେତେବେଳେ କ'ଣ ଏକ ଅପମାନସୂଚକ ନାମକରଣ କରିବା ଅପରାଧରେ ମାୟାବତୀଂକୁ ଦଣ୍ଡ ଦେବା କିଂବା ମାୟାବତୀଂକ ଚରିତ୍ର ସଂହାର କରିବା ଉଚିତ ହେବ ? କ'ଣ ସେତେବେଳେ ତାଂକ ଦଳିତ ପ୍ରୀତି, ଅନୁସୂଚିତ ଜାତି ପ୍ରତି ଥିବା ନିଷ୍ଠାକୁ ସଂଦେହ କରାଯିବ ?

Digitized by srujanika@gmail.com

ଏହାର ଅର୍ଥ ନୁହେଁ ଯେ ଗାଂଧି ଆଦର୍ଶକୁ ସମାଲୋଚନା କରିବାର ଅଧିକାର ମାୟାବତୀଂକର ନାହିଁ। ଗାଂଧି ଆଦର୍ଶର ତୀବ୍ର ସମାଲୋଚନା ଗାଂଧିବାଦର ପୁଷ୍ଟି ନିମନ୍ତେ ଏକାନ୍ତ ଆବଶ୍ୟକ। କୌଣସି ସମାଲୋଚନାକୁ ନିରୁତ୍ସାହିତ କରିବା ଅର୍ଥ ପ୍ରୋକ୍ତ ଆଦର୍ଶକୁ ଏକମାତ୍ର ଏବଂ ଅନ୍ତିମ ସତ୍ୟ ବୋଲି ପ୍ରଚାର କରିବା। ଏହା ସମାଜରେ ସହନଶୀଳତାର ଯେତେ ବିନାଶ କରେ, ତା'ଠାରୁ ଅଧିକ କ୍ଷତି କରେ ସଂପୃକ୍ତ ଆଦର୍ଶର। ଏହା ଅଂଧ ଅନୁଗାମୀଙ୍କ ଅନ୍ୟତମ ନିର୍ବୁଦ୍ଧ ମାନସିକତା; ଅପରିଣାମ ଓ ଅଦୂରଦର୍ଶିତା। ତେଣୁ ମାୟାବତୀଂକୁ ସମାଲୋଚନା ପାଇଁ ସୁଯୋଗ ନ ଦେବାରେ କୌଣସି ବିଜ୍ଞତା ନାହିଁ। ତାଂକ ସମାଲୋଚନାର ଯଦି କିଛି ଯଥାର୍ଥତା ଥାଏ, ତେବେ ତାହା ତିଷ୍ଠିବ, ଗାଂଧିବାଦ ପରି ସର୍ବଜନବିଦିତ ହେବ; ଅନ୍ୟଥା ପାଗଳର ପ୍ରଳାପ ତୁଲ୍ୟ ଅର୍ଥହୀନ ହେବା ସାର ହେବ; ତାକୁ ତଣ୍ଟିଚିପି ଚୁପ କରିବାର ଆବଶ୍ୟକତା ଅନୁଭୂତ ହେବ ନାହିଁ।

ପ୍ରଶ୍ନ ଉଠେ, ଗାଂଧି-ସମାଲୋଚକଂକ ବିରୁଦ୍ଧରେ କେବଳ ପାଟିତୁଣ୍ଡ କରିବା କି ଗାଂଧି ଭକ୍ତିର ଏକମାତ୍ର ନିଦର୍ଶନ? ଗାଂଧି ଭକ୍ତିମାନେ କେବେ ଗାଂଧିଜୀଂକ ପ୍ରତିମା ପୂଜା ନୁହେଁ, ବରଂ ଗାଂଧି ଜୀବନ ଦର୍ଶନର ସମ୍ମାନ— ସେ ସ୍ୱଦେଶୀ ହେଉ, କୁଟୀର ଶିଳ୍ପ ପ୍ରୋତ୍ସାହନ ହେଉ କିଂବା ଅସ୍ପୃଶ୍ୟତା ନିବାରଣ ହେଉ। ଗାଂଧିଂକର ସମଗ୍ର ଜୀବନ ଦୃଷ୍ଟିର ଗୋଟାଏ ଉଦ୍ଦେଶ୍ୟ ଥିଲା—ବ୍ୟକ୍ତିକୁ, ଜାତିକୁ, ଛୋଟରୁ ଛୋଟ ସମାଜକୁ ଆତ୍ମନିର୍ଭର କରିବା, ହୀନଭାବ ଓ ଅଭାବରୁ ଦୂରରେ ରଖିବା, ସ୍ୱାଭିମାନ ବା ଆତ୍ମ-ମର୍ଯ୍ୟାଦାକୁ ସଂବର୍ଦ୍ଧିତ କରିବା। ଗାଁକୁ ସହରର, ଗୋଟାଏ ଜାତିକୁ ଅନ୍ୟ ଜାତିର, ଗୋଟାଏ ଦେଶକୁ ଅନ୍ୟ ଦେଶର ଦୟା ଓ ସହାନୁଭୂତି ବିନା ସ୍ୱାବଲଂବୀ ହେବାର ତଥା ଜଗତରେ ତିଷ୍ଠି ରହିବାର ଶିକ୍ଷା ଦିଏ ଗାଂଧି-ଦର୍ଶନ। କାହାରିକୁ ଲୁଟି ନ ନେବା ଏବଂ କାହାରି ଆଗରେ ନୁଖିନ ନ ହେବା ହେଲା ଗାଂଧି ଆଦର୍ଶର ମୂଳ ମନ୍ତ୍ର, ଗାଂଧି ଭକ୍ତିର ନିଦର୍ଶନ। ଏହି ପରିପ୍ରେକ୍ଷୀରେ, ଆଜିର ରାଜନେତା, ଗାଂଧିବାଦୀ ବୁଦ୍ଧିଜୀବି ଓ ଜାତିର ଜନକଂକ ଅନ୍ୟ ସନ୍ତାନମାନେ କି କେବେ ପ୍ରାଣ ଖୋଲି ଜବାବ ଦେବେ— ସେମାନଂକ ଗାଂଧି-ଭକ୍ତିର ମାତ୍ରା କେତେ? କାରଣ ମହାତ୍ମା ଗାଂଧିଂକର ମହାନତାକୁ ଅସ୍ୱୀକାର କରୁଥିବା ମାୟାବତୀଂକ ବିରୁଦ୍ଧରେ ଖଡ଼୍‌ଗହସ୍ତ ସାଜିବା ଠାରୁ ଗାଂଧିବାଦକୁ ବଂଚି ରହିବା ପାଇଁ ବେଶି ଆବଶ୍ୟକ ସେମାନଂକ ମନଖୋଲା ଜବାବର, ସ୍ୱୀକାରୋକ୍ତିର!

ଘଷାମଜା ହେଲେ ଖଡ଼୍‌ଗ ହୁଏ ଶାଣିତ, ଅନ୍ୟଥା ସେଥିରେ କଳଙ୍କି ଧରିଯାଏ। ଖଡ଼୍‌ଗ ସଦୃଶ ବଚନିକାର ମଧ ତଦ୍ରୂ ଭବିତବ୍ୟ।

(୧୯୯୪)

◆◆

Digitized by srujanika@gmail.com

# ପାଣ୍ଠି ଓ ସମାଜ ସେବା

ସମାଜ କାମ ବା ସମାଜ ସେବା ନିମିତ୍ତ ପାଣ୍ଠୀ ବା ଅର୍ଥର ଆବଶ୍ୟକତା ପ୍ରଶ୍ନକୁ ଗୌଣ ମନେ କରାଯାଇ ନ ପାରେ। ମାତ୍ର ପାଣ୍ଠି ଯଦି ବହିରାଗତ ଓ ସହଜଲବ୍ଧ ତେଣୁ ତାର ଯଥାର୍ଥ ମୂଲ୍ୟ ନିରୂପଣ ସହଜ ନୁହେଁ। ସେ କ୍ଷେତ୍ରରେ ପାଣ୍ଠୀର ଅପବ୍ୟବହାର ହୁଏ; ଯେଉଁ ଉଦ୍ଦେଶ୍ୟରେ ତାହା ଲବ୍ଧ, ତାହା ସାଧିତ ମଧ୍ୟ ହୁଏ ନାହିଁ; କର୍ମୀମାନଙ୍କ ମଧ୍ୟରେ ଦଳାଚକଟା ଚାଲେ, ଗୋଷ୍ଠୀ କନ୍ଦଳ ଆରଂଭ ହୁଏ। ଅନ୍ୟ ଅର୍ଥରେ କହିଲେ, ପାଣ୍ଠି (ଯଦି ସହଜଲବ୍ଧ ଓ ବହିରାଗତ) ଓ ସମାଜ କାମ ମଧ୍ୟରେ ଏକ ଅର୍ନ୍ତଦ୍ୱନ୍ଦ୍ୱ ଥିଲା ଭଳି ମନେ ହୁଏ। ଅସହଯୋଗ ଆଂଦୋଳନର ଠିକ ପରବର୍ତ୍ତି ସମୟର- ୧୯୨୩ ମସିହାରୁ ୧୯୨୭ ମସିହା ପର୍ଯ୍ୟନ୍ତ– ଆଧୁନିକ ଓଡ଼ିଶା ଇତିହାସର ରାଜନୈତିକ ଘଟଣାବଳୀକୁ ଅନୁଧ୍ୟାନ କଲେ ଏହାର ସତ୍ୟତା ଉପଲବ୍ଧି କରିହୁଏ।

ଓଡ଼ିଶାରେ ଜାତୀୟ କଂଗ୍ରେସର ପ୍ରାନ୍ତୀୟ ଶାଖାର ଶୁଭାରଂଭ ହେଲା ୧୯୨୦ ମସିହାର ଡିସେଂବର ମାସରେ, ଅସହଯୋଗ ଆଂଦୋଳନର ଅବ୍ୟବହିତ ପୂର୍ବରୁ। ଶିଶୁ ଅବସ୍ଥାରେ ଏକ ରାଜନୈତିକ ଦଳ ଓ ତାର କର୍ମୀମାନଂକୁ ଯେଉଁ ସବୁ ଦୁଃସ୍ଥିତିର ସମ୍ମୁଖୀନ ହେବାକୁ ପଡ଼େ, ପ୍ରାନ୍ତୀୟ ଶାଖାକୁ ମଧ୍ୟ ସେସବୁ କଷ୍ଟ ସ୍ୱୀକାର କରିବାକୁ ହେଲା। ପାଣ୍ଠୀର ଅଭାବ ଥିଲା ତନ୍ମଧ୍ୟରୁ ଅନ୍ୟତମ। ନେତୃବୃନ୍ଦଂକ ସଂଶୟ ଯେ, ପାଣ୍ଠୀର ଅଭାବ ଯୋଗୁଁ ଜନ ଆଂଦୋଳନ ଏଠି ଯେତେ ମାତ୍ରାରେ ବ୍ୟାପକ ହେବା କଥା, ତା' ନୋହିଲା। ଶାଖାର ସଭାପତି ଭାବରେ ଗୋପବଂଧୁ ଦାସ ଅଭିଯୋଗ କଲେ, ଆବଶ୍ୟକ ମାତ୍ରାରେ ପାଣ୍ଠୀ ନାହିଁ। ଜାତୀୟ କଂଗ୍ରେସର ଧାର୍ଯ୍ୟ ଲକ୍ଷ୍ୟ ଅନୁଯାୟୀ, ପାଂଚ ଲକ୍ଷ ଟଂକାର ପାଣ୍ଠି ତିଲକ ସ୍ୱରାଜ ଫଣ୍ଡ ନିମନ୍ତେ ଉତ୍କଳରୁ ଯୋଗାଡ଼ ହେବା କଥା। ମାତ୍ର ସମୟ ସୀମା ଶେଷ ହେଲା ପରେ, ପ୍ରାନ୍ତୀୟ ଶାଖା ମୋଟ ୩୦,୦୦୦ ଟଂକାରୁ ଅଧିକ ପାଣ୍ଠି ସଂଗ୍ରହ କରି ପାରିଲା ନାହିଁ। (ସମାଜ, ୨୩ ଜୁଲାଇ ୧୯୨୧)।

୧୯୨୨ ମସିହା ଫେବୃଆରୀ ମାସରେ ଚୌରୀ ଚୌରା ହିଂସାକାଂଡ଼ ପରେ ଅସହଯୋଗ ଆଂଦୋଳନ ଅନିର୍ଦ୍ଦିଷ୍ଟ କାଳ ପାଇଁ ସ୍ଥଗିତ ହେଲା। ଚରଖା ତଥା ଖଦି ପ୍ରଚାର, ଅସ୍ପୃଶ୍ୟତା ଓ ନିଶା ନିବାରଣ, ଜାତୀୟ ବିଦ୍ୟାଳୟ ସ୍ଥାପନ ଇତ୍ୟାଦି ଗଠନମୂଳକ କାର୍ଯ୍ୟରେ ସମସ୍ତ ଧ୍ୟାନ ନିବିଷ୍ଟ କରିବା ନିମିତ୍ତ କର୍ମୀମାନଙ୍କୁ ମହାତ୍ମା ଗାଂଧି ପରାମର୍ଶ ଦେଲେ। ଏସବୁ ଗଠନମୂଳକ କାର୍ଯ୍ୟ ବା ସମାଜ କାମ ତୁଲାଇବା ପାଇଁ ଜାତୀୟ କଂଗ୍ରେସରୁ, ଅଖିଳ ଭାରତୀୟ ଖଦି ବୋର୍ଡ଼ରୁ, ସ୍ୱରାଜ ପାଣ୍ଠିରୁ ଓଡ଼ିଶା ଭଳି ପ୍ରାନ୍ତୀୟ ଶାଖାଗୁଡ଼ିକୁ ଆର୍ଥିକ ସହଯୋଗ ମିଳିଲା। ଓଡ଼ିଶାର ବନ୍ୟା ରିଲିଫ ଓ ଦରିଦ୍ର ଅଂଚଳ ବୋଲି ଥିବା

Digitized by srujanika@gmail.com

ସର୍ବଭାରତୀୟ ଭାବମୂର୍ତ୍ତି ପାଣ୍ଠିର ଆପାତଃ ସ୍ଥିତିକୁ ଦୃଢ଼ କଲା । ଏସବୁ ସାଂଗକୁ, ସ୍ଥାପିତ ହେବାର ଦୁଇ ବର୍ଷ ପରେ ଉତ୍କଳ ପ୍ରାନ୍ତୀୟ ଶାଖା ଆଉ ଶିଶୁ ଅବସ୍ଥାରେ ନ ଥିଲା । କର୍ମୀମାନେ ଦଳୀୟ ଭାବମୂର୍ତ୍ତିର ସାହାରାରେ ଗ୍ରାମ୍ୟ ବ୍ୟାଂକ, ସମବାୟ କେନ୍ଦ୍ର ଆଦି ସ୍ଥାନୀୟ ଅନୁଷ୍ଠାନ ଗୁଡ଼ିକରେ ସକ୍ରୀୟ ହୋଇ ପଦପଦବୀ ଲାଭ କଲେ । କଥାଟିକୁ ସିଧାସଳଖ କହିଲେ ଅସହଯୋଗ ଆଂଦୋଳନ ପରେ ରାଜନୈତିକ ଶିଥିଳତା ସତ୍ତ୍ୱେ ପ୍ରାନ୍ତୀୟ କଂଗ୍ରେସ ଶାଖା ଓ ତାର ସହଯୋଗୀ ସଂଗଠନ (ଯଥା-ଖଦି ବୋର୍ଡ଼, ରିଲିଫ କମିଟୀ) ବହିରାଗତ ପାଣ୍ଠି ପାଇଲେ ଏବଂ ସମାଜ କାମର ତଦାରଖ କରୁଥିବା ଦଳୀୟ ନେତା ଓ କର୍ମୀଂକ ହାତରେ ଏହି ପାଣ୍ଠିର ବ୍ୟୟ ଭାର ନ୍ୟସ୍ତ ହେଲା । ପରିଣାମ ସ୍ୱରୂପ, ସମାଜ କାମ ସବୁ ଆଗକୁ ବଢ଼ିବ କ'ଣ; ବଢ଼ିଲା ଗୋଷ୍ଠୀ କନ୍ଦଳ, ଦଳାଚକଟା; ଆସିଲା ପାଣ୍ଠିବାନ କର୍ମୀଂକ ବିରୁଦ୍ଧରେ 'ପାଣ୍ଠି ଆଶାୟୀ' ବା ପାଣ୍ଠିବି ହୀନ କର୍ମୀଂକ ଅର୍ଥ ତୋଷାରଫ ଅଭିଯୋଗ; ନଷ୍ଟ ହେଲା ଜନ ସମୂହରେ କଂଗ୍ରେସର କଷ୍ଟଲବ୍ଧ ଭାବମୂର୍ତ୍ତି; ଏବଂ ସୃଷ୍ଟିହେଲା ଜାତୀୟତାବାଦୀ ରାଜନୀତିରେ ଟଂକା ହେରଫେର ଏବଂ ବାଟମାରଣାର ନୂଆଁ ପରଂପରା ।

ଅଭିଯୋଗର ଆରଂଭ ହେଲା ପ୍ରାନ୍ତୀୟ ଶାଖାର କାର୍ଯ୍ୟକାରୀ ସଭାପତି ଭାବେ ନିଯୁକ୍ତ ଝାରସୁଗୁଡ଼ାର ମହାବୀର ସିଂଙ୍କ ବିରୁଦ୍ଧରେ (ସେବା, ୫ ଅଗଷ୍ଟ ୧୯୨୨) । ଅଭିଯୋଗକାରୀ ହେଲେ ସଂବଲପୁର ଜିଲ୍ଲା କଂଗ୍ରେସ କର୍ମୀମାନେ । ଅଭିଯୋଗ ହେଲା- ଜିଲ୍ଲାରେ ଖଦି ପ୍ରସାର ନିମିତ୍ତି ଉତ୍କଳ ଖଦି ବୋର୍ଡ଼ରୁ ମିଳିଥିବା ୨୦୦୦ ଟଂକାର ପାଣ୍ଠି ମହାବୀର ବାବୁ ହେରଫେର କଲେ । କର୍ମୀ ଲକ୍ଷ୍ମୀନାରାୟଣ ମିଶ୍ର ଆଦିଂକର ଅଭିଯୋଗ ପରେ, ତଦନ୍ତ ପାଇଁ ପ୍ରାନ୍ତୀୟ ଶାଖା ଗୋଦାବରୀଶ ମିଶ୍ରଂକୁ ଅଡ଼ିଟର ନିଯୁକ୍ତ କଲା । ହିସାବ ତନଖି କରି ଅଡ଼ିଟର ରିପୋର୍ଟ ଦେଲେ ଯେ, ପାଣ୍ଠି କିଂବା ବ୍ୟୟର କୌଣସି ହିସାବ ନାହିଁ । ଏହା ଅଭିଯୋଗର ସତ୍ୟତା ପ୍ରମାଣ କଲା । (ବିହାର ଓଡ଼ିଶାର ପାକ୍ଷିକ ରିପୋର୍ଟ ଜୁଲାଇ, ସଂଖ୍ୟା ୨୫/୧୯୪୨, ହୋମ ପୋଲିଟିକାଲ)ଯା ସତ୍ତ୍ୱେ ମହାବୀର ବାବୁଂକୁ ଖଦିବୋର୍ଡ଼ର ସଭାପତି ପ୍ରତ୍ୟକ୍ଷ ରୂପେ ସମର୍ଥନ କଲେ ଏବଂ ତାଂକ ନାଁରେ ଖଦି କାମ ପାଇଁ ପାଣ୍ଠି ସାହାଯ୍ୟ ଦେଲେ । ୧୯୨୫ ମସିହାରେ ସଭାପତି ନିରଂଜନ ପଟ୍ଟନାୟକ ଓ ମହାବୀର ବାବୁ ପାଟନାରେ ମହାତ୍ମା ଗାଂଧିଂକୁ ଭେଟି ମହାବୀର ବାଂବୁଂକର ନିର୍ଦ୍ଦୋଷତା ଦର୍ଶାଇଲେ । (ଗାଂଧି ରଚନା ସଂଗ୍ରହ Vol.x x VIII, ପୃ. ୨୫୧) ଅନ୍ୟ ପକ୍ଷରେ ଜିଲ୍ଲା କଂଗ୍ରେସ ଦୁର୍ନୀତି ·ଗ୍ରସ୍ତ ମହାବୀର ବାବୁଂକ ପ୍ରତି ପ୍ରାନ୍ତୀୟ ଶାଖାର ସମର୍ଥନରେ ବିତସ୍ପୃହ ହୋଇ ୧୯୨୫ ମସିହାରେ ପ୍ରାନ୍ତୀୟ ଶାଖାରୁ ବିଚ୍ଛିନ୍ନ ହେଲା ଓ କେନ୍ଦ୍ର ପ୍ରଦେଶ (Central Provinces) ପ୍ରାନ୍ତୀୟ କଂଗ୍ରେସ ଶାଖାରେ ସାମିଲ ହେବା ନିମିତ୍ତ ଆବେଦନ କଲା । ମୋଟ ଉପରେ ଏହା ଉତ୍କଳ ପ୍ରାନ୍ତୀୟ ଶାଖାର ସ୍ଥିତିକୁ ଦୁର୍ବଳ କଲା । (ଉତ୍କଳ ଦୀପିକା, ୧୨ ଜୁଲାଇ ୧୯୨୪; ସାଧନା, ୨ ଜୁନ ୧୯୨୫)

Digitized by srujanika@gmail.com

୧୯୨୪ ମସିହା ଜୁଲାଇ ମାସରେ ଦୁର୍ନୀତି ଅଭିଯୋଗ ହେଲା ଖୋଦ ଉତ୍କଳ ଖଦି ବୋର୍ଡ଼ ସଭାପତି ନିରଂଜନ ପଟ୍ଟନାୟକଂକ ବିରୁଦ୍ଧରେ। ପାଣ୍ଠି ଅଭାବ ଆଳରେ ବୋର୍ଡ଼ର ସ୍ୱଳ୍ପ ବେତନ ଭୋଗୀ କର୍ମୀଂକୁ ସେ କୁଆଡ଼େ କାର୍ଯ୍ୟରୁ ବରଖାସ୍ତ କରି, ୭୦୦୦ ଟଂକା ମୂଲ୍ୟରେ ଗଂଜାମରେ ଏକ ଅଫିସ ଘର କିଣିଲେ ଯାହାକି ମୁଖ୍ୟତଃ ତାଂକ ବ୍ୟକ୍ତିଗତ କାମ ପାଇଁ ବ୍ୟବହୃତ ହେଲା। ଯା' ବ୍ୟତୀତ ପାଣ୍ଠି ଅଭାବ ଜନିତ ସମସ୍ୟା ଯୋଗୁଁ ମାସିକ ୩୦/୪୦ ଟଂକା ଉଚ୍ଚ ବେତନ ପାଉଥିବା ଖଦିବୋର୍ଡ଼ କର୍ମୀମାନେ ପ୍ରଭାବିତ ହେଲେ ନାହିଁ, ନା ସେମାନଂକୁ ବହିଷ୍କାର କରାଗଲା, ନା ତାଂକର ମାସିକ ପାଉଣା କମିଲା। ଏସବୁ ବାଦ, ନିରଂଜନ ବାବୁଂକ ମହାବୀର ସିଂ ସହିତ ସଂପର୍କ ଯୋଗୁଁ ମଧ୍ୟ ସେ ଜନସାଧାରଣରେ ସମାଲୋଚିତ ହେଲେ। (ଉତ୍କଳ ଦୀପିକା, ୧୨ ଜୁଲାଇ ୧୯୨୪)।

ଉତ୍କଳ ଦୀପିକାର ୨୬ ଜୁଲାଇ ୧୯୨୪ ସଂଖ୍ୟାରେ ନିରଂଜନ ବାବୁ ନିଜ ନିର୍ଦ୍ଦୋଷତା ପ୍ରମାଣ କରି ଏକ ଦୀର୍ଘ ଲେଖା ଛାପିଲେ। ଘଟଣା ଶାନ୍ତ ପଡ଼ିଲା। କିନ୍ତୁ ଅପରାଧୀ ମନୋଭାବ ତାଂକୁ ଏତେ ମାତ୍ରାରେ ଦଂଶନ ଓ ଦହନ କଲା ଯେ, ଘଟଣାର ଛଅ ବର୍ଷ ପରେ, ୧୯୩୦ ମସିହାରେ ଆଇନ ଅମାନ୍ୟ ଆଂଦୋଳନ ସମୟରେ ସେ ଦୋଷ ସ୍ୱୀକାର କରିବାକୁ ବାଧ୍ୟ ହେଲେ। ଉତ୍କଳ ଦୀପିକାରେ (୧୮ ଜାନୁଆରୀ ୧୯୩୦) ପୁଣି ଏକ ଲେଖା ଲେଖି ସେ ସ୍ପଷ୍ଟ କଲେ ଯେ, ବ୍ୟକ୍ତିଗତ କାମ ପାଇଁ ଅନେକ ସମୟରେ ଖଦିବୋର୍ଡ଼ ପାଣ୍ଠିକୁ ସେ ହେରଫେର କରିଛନ୍ତି। ପାରିବାରିକ ଆର୍ଥିକ ଅନଟନ ଏହା କରିବାକୁ ତାଂକୁ ବାଧ୍ୟ କରିଛି। ପ୍ରାୟଶ୍ଚିତ ସ୍ୱରୂପ ସ୍ୱଇଚ୍ଛାରେ ସେ ଖଦିବୋର୍ଡ଼ରୁ ଇସ୍ତଫା ଦେଲେ ଏବଂ ଭବିଷ୍ୟତରେ ଏକ ଶୃଙ୍ଖଳିତ, ଦୁର୍ନୀତିମୁକ୍ତ କର୍ମୀପରି ଜୀବନ ଯାପନ କରିବେ ବୋଲି ପ୍ରତିଜ୍ଞା କଲେ। ଅର୍ଥାତ ୧୯୨୪ ମସିହାରେ ଜନ ଆଂଦୋଳନରେ ଭଟ୍ଟା ପଡ଼ିଥିବା ବେଳେ ନିରଂଜନ ବାବୁଂକ ଭଳି ଜଣେ ପକ୍କା ଗାଂଧିବାଦୀ ଦୁର୍ନୀତିଗ୍ରସ୍ତ ହେବା ସ୍ଥଳେ, ୧୯୩୦ ମସିହାର ଆଇନ ଅମାନ୍ୟ ଆଂଦୋଳନର ଜୁଆର ତାଂକୁ ନିର୍ଭିକ ଭାବରେ ଦୋଷ ସ୍ୱୀକାର କରି ପରିଣାମ ଓ ପରିସ୍ଥିତିର ସମ୍ମୁଖୀନ ହେବାକୁ ସାହସ ଯୋଗାଇଲା।

ପ୍ରାନ୍ତୀୟ କଂଗ୍ରେସ ଶାଖାର ମୁଖ୍ୟ ଗୋପବଂଧୁ ଦାସ ମଧ୍ୟ ଏହି ବେଳାରେ ପାଣ୍ଠି ହେରଫେର ଅଭିଯୋଗରୁ ତ୍ରାହି ପାଇ ନାହାନ୍ତି। ପ୍ରଥମ ଥର ତାଂକ ବିରୁଦ୍ଧରେ ଅଭିଯୋଗ ହେଲା ୧୯୨୫ ମସିହା ଶେଷ ଆଡ଼କୁ ଏବଂ ଦ୍ୱିତୀୟ ବାର ଅଭିଯୋଗ ହେଲା ୧୯୨୭ ମସିହାରେ। ପ୍ରଥମେ ପୁରୀରୁ ପ୍ରକାଶିତ 'ଶକ୍ତି' ନାମକ ପତ୍ରିକା ଅଭିଯୋଗ ଆଣିଲା, ବନ୍ୟା ରିଲିଫ ପାଇଁ ମିଳିଥିବା ହଜାର ହଜାର ଟଂକାର ପାଣ୍ଠିକୁ ଗୋପବଂଧୁ ବାବୁ ଖଦି କାମରେ ଖର୍ଚ୍ଚ କରିଛନ୍ତି। (ବିହାର ଓଡ଼ିଶାର ପାକ୍ଷିକ ରିପୋର୍ଟ ଡିସେଂବର, ସଂଖ୍ୟା ୧୧୨/୧୯୨୫ ହୋମ ପୋଲିଟିକାଲ) ଗୋପବଂଧୁ ବାବୁଂକୁ ବ୍ୟକ୍ତିଗତ ସ୍ତରରେ ଦୁର୍ନୀତିଗ୍ରସ୍ତ ପ୍ରମାଣ କରିବା ପାଇଁ ଅବଶ୍ୟ ଅଭିଯୋଗଟି ଉଦ୍ଦିଷ୍ଟ ନ ଥିଲା।

Digitized by srujanika@gmail.com

କ୍ରମବର୍ଦ୍ଧିଷ୍ଣୁ ଆଂଚଳିକ ମନୋଭାବର ଏହା ଥିଲା ଏକ ନଗ୍ନ ଝଲକ ମାତ୍ର। ଖଦିର ପ୍ରସାର ହେଲା ଜାତୀୟ କଂଗ୍ରେସର, ଜାତୀୟ କାର୍ଯ୍ୟକ୍ରମ, କିନ୍ତୁ ବନ୍ୟା ରିଲିଫ ହେଉଛି ପ୍ରାନ୍ତୀୟ ସ୍ତରର ସମାଜ କାମ। ପ୍ରଦେଶ ସ୍ତରୀୟ ରିଲିଫ କାମ ନିମିତ୍ତ ଉଦ୍ଦିଷ୍ଟ ପାଣ୍ଠି ଜାତୀୟ କାର୍ଯ୍ୟକ୍ରମରେ ବା ବିନିଯୋଗ ହେବ କେମିତି? ଯଦିଓ ଉଭୟ କାର୍ଯ୍ୟକ୍ରମରେ ଲାଭାନ୍ୱୀତ ହେବାକୁ ଥିବା ଲୋକ ସମୂହ ହେଲେ ସ୍ଥାନୀୟ, ଆଂଚଳିକତାର ପୃଷ୍ଠପୋଷକମାନେ ଖଦିର ପ୍ରସାର କଳ୍ପେ ବ୍ୟୟକୁ ସ୍ୱୀକାର କରିଯିବେ କେମିତି?

୧୯୨୭ ମସିହା ଡିସେଂବର ମାସରେ ଗଂଜାମରୁ ପ୍ରକାଶିତ ଗୋଦାବରୀଶ ମିଶ୍ରଂକ 'ଇଷ୍ଟକୋଷ୍ଟ' ପତ୍ରିକା ଅଭିଯୋଗ କଲା ଯେ, ଓଡ଼ିଶା ବନ୍ୟା ରିଲିଫ କମିଟୀ ୪୨,୦୦୦ ଟଂକାର ହିସାବ ନ ଦେଇ ପାଂଣ୍ଠି ହେରଫେର କରୁଛନ୍ତି। ରିଲିଫ କମିଟୀର ସଂପାଦକ ଗୋପବଂଧୁ ଦାସଂକ ନାଁରେ ଏହା ଥିଲା ଏକ ଖୋଲା ଅଭିଯୋଗ। (ସମାଜ, ୨୪ ଡିସେଂବର ୧୯୨୭) ଗୋପବଂଧୁ ବାବୁ ଅବଶ୍ୟ ତୁରନ୍ତ 'ସମାଜ'ରେ (୭ ଜାନୁଆରୀ ୧୯୨୮) କମିଟୀର ଆୟବ୍ୟୟର ତାଲିକା ପ୍ରକାଶ କଲେ ଏବଂ ଅଭିଯୋଗର ଠିକ୍‌ଣା ଜବାବ ଦେଲେ।

ଗୋପବଂଧୁ ଦାସଂକ ବିରୁଦ୍ଧରେ ଅଭିଯୋଗ ଆଣିଥିବା ଏବଂ ମହାବୀର ସିଂଙ୍କ ବିରୁଦ୍ଧରେ ଆଗତ ଦୁର୍ନୀତି ଅଭିଯୋଗର ତଦନ୍ତ କରିଥିବା ଗୋଦାବରୀଶ ମିଶ୍ରଂକ ବିରୁଦ୍ଧରେ ଅର୍ଥ ତୋଷରପାତ ଅଭିଯୋଗ ଆସିଲା ୧୯୨୪ ମସିହାର ଉତ୍ତରାର୍ଦ୍ଧରେ। ବାଣପୁର କୋଅପରେଟିଭ ବେଂକର ବୋର୍ଡ଼ ସଭ୍ୟ ଭାବେ ୧୪୦୦୦ ଟଂକା ବାଟମାରଣା କରିଥିବା ଅଭିଯୋଗରେ ଦୁଇଜଣ ଅନ୍ୟ ସହକର୍ମୀଂକ ସମେତ ତାଂକ ବିରୁଦ୍ଧରେ ପୋଲିସ ପୁରୀରେ ଏକ ଫୌଜଦାରୀ ମୋକଦ୍ଦମା ରୁଜୁ କଲେ। କଂଗ୍ରେସ ମହଲରେ ମୋକଦ୍ଦମାକୁ ନେଇ ମୌନତା ଅବଲମ୍ବନ ଆରୋପିତ ଅଭିଯୋଗର ଗାଂଭୀର୍ଯ୍ୟ ଦର୍ଶାଇଲା। (ଗଡ଼ଜାତ ବାସିନୀ, ୨୨ ନଭେଂବର ୧୯୨୪; ସାର୍ଚ୍ଚ ଲାଇଟ, ୧୭ ମେ ୧୯୨୫; ସାଧନା, ୧ ଅକ୍ଟୋବର ୧୯୨୫।)

କେବଳ ନେତା ନୁହନ୍ତି, ପାଣ୍ଠି ତୋଷରପାତ ଜନିତ ଅଭିଯୋଗରୁ ସାଧାରଣ କର୍ମୀ ମଧ ଏ ବେଳାରେ ବାଦ ଯାଇ ନାହାନ୍ତି। ଏଭଳି ଜଣେ କର୍ମୀ ହେଲେ କଟକର ଖଇରାତ ଅଲ୍ଲୀ। ୧୯୨୪ ମସିହା ମଧଭାଗରେ ଅଭିଯୋଗ ହେଲା, ଖଦି ପାଣ୍ଠିରୁ ସେ ୨୧୦୦ ଟଂକା ନେଇ ଖଦି ବୋର୍ଡ଼ର ସଭାପତିଙ୍କ ବାରଂବାର ନିର୍ଦ୍ଦେଶ ସତ୍ତ୍ୱେ ନା ଟଂକା ଫେରାଇଲେ ନା ଦେଲେ, ତାର ହିସାବ। (ଉତ୍କଳ ଦୀପିକା, ୨ ଅଗଷ୍ଟ ୧୯୨୪; ପୁରୀବାସୀ ୫ ଅଗଷ୍ଟ ୧୯୨୪)।

ସମାଜ କାମ ଓ ବହିରାଗତ ପାଣ୍ଠି ମଧରେ ପରିପୂରକତାର ଅଭାବ କଥା ଉପଲବ୍ଧି କରିଥିଲେ ଗୋପବଂଧୁ ଚୌଧୁରୀ, ପ୍ରାଣକୃଷ୍ଣ ପଡ଼ିଆରୀ, ଭାଗିରଥି ମହାପାତ୍ର, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଆଦି ତତ୍‌କାଳୀନ କଂଗ୍ରେସର ଏକ କ୍ଷୁଦ୍ର ଗୋଷ୍ଠୀ। ଏଭଳି କି ପାଣ୍ଠିରୁ ଦୂରରେ ରହି, ସେମାନେ ଗାଂଧିବାଦୀ ଗଠନମୂଳକ

Digitized by srujanika@gmail.com

କାର୍ଯ୍ୟକ୍ରମରେ ମନୋନିବେଶ କଲେ। ନିଜ ପ୍ରତିବଦ୍ଧତାକୁ ଭାଷାରେ ପ୍ରକାଶ କରି ଗୋପବଂଧୁ ଚୌଧୁରୀ କହିଛନ୍ତି ଯେ, ପାଣି ଯେତେବେଳ ପର୍ଯ୍ୟନ୍ତ ନିଜ ଭିତରେ ଏବଂ ଆଂଚଳିକ ସ୍ତରରେ ସଂଗ୍ରହ କରା ନ ଯାଇଛି, ତାର ପ୍ରକୃତ ମୂଲ୍ୟ ଓ ଉପାଦେୟତା ହୃଦୟଂଗମ କରିବା କଷ୍ଟ। ପରିଣାମ ସ୍ୱରୂପ ବହିରାଗତ ପାଣିର ଅପବ୍ୟବହାର ହେବାର ଏବଂ ତା ଯୋଗୁଁ ଦୁର୍ନୀତି ବୃଦ୍ଧି ପାଇବାର ପୂର୍ଣ୍ଣ ଆଶଂକା ରହିଥାଏ। [ଗୋପିନାଥ ମହାନ୍ତି, ଧୂଳି ମାଟିର ସନ୍ଥ- (ଗୋପବଂଧୁ ଚୌଧୁରୀଙ୍କ ଜୀବନୀ), କଟକ, ୧୯୮୫, ପୃ: ୮୮] କିନ୍ତୁ ସମାଜ କାମ ନିମନ୍ତେ ପାଣିର ଯେ ଆବଶ୍ୟକତା ରହିଛି, ତାହା ବୁଝି ପାରି ସେମାନେ ଆଂଚଳିକ ସ୍ତରରେ ଏବଂ ନିଜ ନିଜ ଭିତରେ ପାଣି ସଂଗ୍ରହ କଲେ। ଏହାର ଫଳସ୍ୱରୂପ ଜଗତସିଂହପୁରରେ ଗଢ଼ି ଉଠିଲା 'ଅଳକାଶ୍ରମ' ନାମରେ ଏକ ଗାଂଧି ଆଶ୍ରମ ଏବଂ ତରିକୁଂଦ (କଟକ ଜିଲ୍ଲା)ଠାରେ ବଢ଼ି ଉଠିଲା ଉନ୍ନତ କୃଷି ଫାର୍ମ। ଜାତୀୟ ଆଂଦୋଳନ ଶିଥିଳ ଥିବା ବେଳେ ଅଳକାଶ୍ରମରେ ଜାତୀୟ ସ୍କୁଲ ଚାଲିଲା, ଖଦି ବୁଣା ଓ ବିକ୍ରି ଅବ୍ୟାହତ ରହିଲା, ଏବଂ ଅସ୍ପୃଶ୍ୟତା ଓ ନିଶା ନିବାରଣ କଲ୍ଲେ ପ୍ରଚାର କାର୍ଯ୍ୟ ଆଗେଇଲା। ଏ ସବୁ ସମାଜ କାମ ତୁଲାଇବା ପାଇଁ ଗୋପବଂଧୁ ଚୌଧୁରୀ, ଭାଗିରଥି ମହାପାତ୍ର, ପ୍ରାଣକୃଷ୍ଣ ପଡ଼ିଆରୀ ଆଦି କର୍ମୀମାନେ ବାହାର ପାଣିର ଆଶ୍ରା ନ କରି, ଆଶ୍ରମ ଜମିରେ ଚାଷ କଲେ, ଖଦି ବୁଣି ବଜାରରେ ବିକ୍ରୀ କଲେ ଏବଂ ଗ୍ରାମ୍ୟ ସ୍ତରରେ ମୁଷ୍ଟିଭିକ୍ଷା କଲେ। (ପୁରୀବାସୀ, ୨୦ ମେ ୧୯୨୪) ଠିକ ସେହିଭଳି ତରିକୁଂଦଠାରେ କୃଷି ଉତ୍ପାଦନ କରି ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଆଦି କର୍ମୀମାନେ ସ୍ୱ ଭରଣ ପୋଷଣ ମେଣ୍ଟାଇଲେ ଏବଂ ଗ୍ରାମ ସଂଗଠନ ଭଳି ସମାଜ କାମ କଲେ। ସମାଜ ସେବା ଆଳରେ ସେମାନେ ଅନ୍ୟ ଉପରେ ବୋଝ ହେଲେ ନାହିଁ କିଂବା ବାହାରେ ଅର୍ଥ ପାଇଁ ହାତ ପତାଇଲେ ନାହିଁ। ଅନ୍ୟ ପକ୍ଷରେ ମୁଷ୍ଟିଭିକ୍ଷା କରି (ଆଂଚଳିକ ସ୍ତରରେ) ସୂଚେଇ ଦେଲେ ଯେ, ଯେଉଁମାନଙ୍କ ସେବା ପାଇଁ କର୍ମୀମାନେ ପ୍ରତିବଦ୍ଧ, ସେହି ଲୋକ ସମୂହର ମଧ ଦାୟିତ୍ୱ ରହିଛି– ନିଜକୁ 'ଗଠନ' କରିବାକୁ। ଅନ୍ୟଠାରୁ ଅର୍ଥ ଭିକ୍ଷା କରି ନିଜ ସମାଜ 'ଗଠନ' କଥା କେବଳ ଏକ ପଂଗୁ, ଅଥର୍ବ ସମାଜ ଓ ତାର ସମାଜ କର୍ମୀ ହିଁ ଚିନ୍ତା କରି ପାରନ୍ତି। ସମାଜ ସଂଗଠନ ନିମନ୍ତେ ଅଧିକ ଆବଶ୍ୟକ ନିଷ୍କପଟ ଆନ୍ତରିକତା ଏବଂ ଆଂଚଳିକ ସାମୂହିକ ଦାୟିତ୍ୱବୋଧର। ତେଣିକି ପାଣି ମିଳିବା କଷ୍ଟକର ନୋହିବ। ଅଳକାଶ୍ରମ ଏବଂ ତରିକୁଂଦର ଉଦାହରଣରୁ ଏ ଯେଉଁ ବିକଳ୍ପର ସଂଧାନ ମିଳେ, ତାର ପ୍ରୟୋଗଧାରାର ଭବିଷ୍ୟତରେ ମଧ ଗୁରୁତ୍ୱ ରହିବ–ଏକଥା ଅନସ୍ୱୀକାର୍ଯ୍ୟ।

(୧୯୯୩)

◆◆

Digitized by srujanika@gmail.com

# ପର୍ଯ୍ୟଟନ, ବିକାଶ ଓ ନାରୀ

ଶିଳ୍ପ କାରଖାନା ସ୍ଥାପନ ଓ ପୁଂଜି ଲଗାଣ ପରି ପର୍ଯ୍ୟଟନ ମଧ୍ୟ ଆଧୁନିକ ବିକାଶର ଏକ ମାଧ୍ୟମ, ମହତ୍ତ୍ୱପୂର୍ଣ୍ଣ ଉଦ୍ୟୋଗ। ଯେଉଁ 'ବିକାଶଶୀଳ' ରାଷ୍ଟ୍ରମାନେ ଅନ୍ୟ ସବୁ ଉଦ୍ୟୋଗ କ୍ଷେତ୍ରରେ ବିକଶିତ ରାଷ୍ଟ୍ରମାନଂକ ସହ ପ୍ରତିଯୋଗିତା କରିପାରୁ ନାହାନ୍ତି, ସେମାନଂକ ପାଇଁ ପର୍ଯ୍ୟଟନ ବରଂ ଏକ ସହଜ ଏବଂ ଅଧିକ ଲାଭ ପ୍ରଦ ମାଧ୍ୟମ। ସେମାନଂକ ଧାରଣା, ପ୍ରତିଯୋଗିତା ବିନା ରାଷ୍ଟ୍ରୀୟ ବିକାଶ ଅସଂଭବ, କିନ୍ତୁ ଶିଳ୍ପ କାରଖାନା ସ୍ଥାପନ, ପୁଂଜିଲଗାଣ ଆଦି ଉଦ୍ୟୋଗରେ ବିକଶିତ ରାଷ୍ଟ୍ରର ମୁକାବିଲା ଆହୁରି ଅସଂଭବ! ତେଣୁ ଆଧୁନିକ ବିକାଶର ପ୍ରସାଦ ଚାଖିବା ପାଇଁ ପର୍ଯ୍ୟଟନ ହିଁ ତାଂକ ପାଖରେ ଏକମାତ୍ର ବିକଳ୍ପ, ନିର୍ଭରଯୋଗ୍ୟ ପ୍ରତିଷ୍ଠାନ!

ଉଦ୍ୟୋଗର ସମ୍ମାନ ପ୍ରାପ୍ତି ପରେ ପର୍ଯ୍ୟଟନର ବିଶେଷ ଅର୍ଥ ହେଲା, ବିଦେଶୀ ପର୍ଯ୍ୟଟନ। ଏକମାତ୍ର ଉଦ୍ଦେଶ୍ୟ– ଅଧିକରୁ ଅଧିକ (ବିଦେଶୀ) ପର୍ଯ୍ୟଟକଂକୁ ନିଜ ଦେଶକୁ ଆକୃଷ୍ଟ କରିବା। କାରଣ ପର୍ଯ୍ୟଟକର ବ୍ୟୟ ବରାଦ ବଢ଼ିଲେ, ବିକାଶଶୀଳ ଦେଶ ବିଦେଶୀ ମୁଦ୍ରା ଅର୍ଜନ କରିବ; ଅର୍ଜିତ ବିଦେଶୀ ମୁଦ୍ରାରେ ନିଜ ରାଷ୍ଟ୍ରୀୟ ଭଣ୍ଡାର ଭରିବ; ଫଳରେ ତା ଆର୍ଥିକ ସଂକଟ ସୁଧୁରିବ। ମୋଟ ଉପରେ ବିକାଶଶୀଳ ରାଷ୍ଟ୍ରପାଇଁ ବିଦେଶୀ ମୁଦ୍ରାର ଆବଶ୍ୟକତା ଏତେ ଅଧିକ ଯେ, ପର୍ଯ୍ୟଟକର ଆଗମନ ପାଇଁ ସେ ସବୁ କିଛି ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ! ପର୍ଯ୍ୟଟନ ମାଧ୍ୟମରେ ବିକାଶର ସିଡ଼ି ଚଢ଼ିବା ପାଇଁ ଏ ଯେଉଁ ଅବସରରହିତ ଉଦ୍ୟମ ତା' କେବଳ ଆମ ଦେଶରେ ସୀମିତ ନୁହେଁ, ଥାଇଲ୍ୟାଣ୍ଡ, ମାଲେସିଆ, ଫିଲିପାଇନ୍ସ, ସିଂଗାପୁର, ଲାଟିନ ଆମେରିକାର ହାୱାଇ ଦ୍ୱୀପପୁଂଜ ଆଦି ସମଗ୍ର ବିକାଶଶୀଳ ଜଗତରେ ପରିବ୍ୟାପ୍ତ। ନୂଆଁ ନୂଆଁ ପଂଚତାରକା ହୋଟେଲ ନିର୍ମାଣ, ଐତିହାସିକ କୃତି ବା ଐତିହ୍ୟ ସମୂହର ରକ୍ଷଣା ବେକ୍ଷଣ ଆଦି ସମସ୍ତ ଉଦ୍ୟମର ମୂଳରେ ସେହି ଗୋଟାଏ ଲକ୍ଷ୍ୟ– ଅଧିକରୁ ଅଧିକ ପର୍ଯ୍ୟଟକଂକୁ ଆକୃଷ୍ଟ କରିବା ଏବଂ ତା ଦେଇ ବିଦେଶୀ ମୁଦ୍ରା ଗଣି ଆଣିବା। ରାଷ୍ଟ୍ର ନିର୍ମାଣର ଅନ୍ୟନାମ ଯେହେତୁ ଆଜି ପର୍ଯ୍ୟଟନର ପ୍ରୋତ୍ସାହନ, ଆମ ବିକାଶବାଦୀ ପୁଂଜିପତି, ବୁଦ୍ଧିଜୀବି ଓ ରାଜନେତା ଆଦି ସବୁ କାମ ଛାଡ଼ି ପର୍ଯ୍ୟଟନ ମେନେଜର ହେବା ପାଇଁ ବ୍ୟାକୁଳ!

ଆମ ବିକାଶ ପାଇଁ ପର୍ଯ୍ୟଟକର ଯେତିକି ଉପଯୋଗିତା, ପର୍ଯ୍ୟଟକର ଆରାମ ଓ ଉପଭୋଗ ପାଇଁ ଗରିବ ବିକାଶଶୀଳ ରାଷ୍ଟ୍ରର ତତୋଽଧିକ ଆବଶ୍ୟକତା। ପୁଂଜିବାଦୀ

Digitized by srujanika@gmail.com

ବିକାଶର କଳ କାରଖାନା ଓ ପ୍ରତିଯୋଗିତାପୂର୍ଣ୍ଣ କୃତ୍ରିମ ପରିବେଶ ଓ ବିଧ୍ୱସ୍ତ ପ୍ରକୃତିରୁ ସେ ସାମୟିକ ମୁକ୍ତି ଚାହେଁ। ଆର୍ଥିକ ସଂବଳର ପ୍ରାଚୁର୍ଯ୍ୟ ଯୋଗୁଁ, ଖର୍ଚ୍ଚ କରି ସୁଦ୍ଧା ହେଉ, ସେ ପରିବେଶରେ ପରିବର୍ତ୍ତନ ଖୋଜେ। ତା ରହଣିରେ ପରିବର୍ତ୍ତନ, ଖାଇବା, ଶୋଇବାରେ ପରିବର୍ତ୍ତନ, ଆରାମ ଓ ଉପଭୋଗ ସାମଗ୍ରୀରେ ପରିବର୍ତ୍ତନ। 'ଆରାମ' 'ଉପଭୋଗ' ଓ 'ପରିବର୍ତ୍ତନ'ର ମୃଗତୃଷ୍ଣା ନେଇ ସେ କଳ କାରଖାନାଶୂନ୍ୟ, ଅବିକଶିତ ଗରିବ ଏସୀୟ, ଲାଟିନ ଆମେରିକୀୟ ସମାଜକୁ ଆସେ; ବହୁଳ ଆୟରୁ କିଛି ଅଂଶ ଖର୍ଚ୍ଚ କରେ; ଆମ ବିକାଶକୁ ସାହାରା ଦିଏ।

ଦିନ ଥିଲା ଯେତେବେଳେ ଶାନ୍ତି, ସାମାଜିକ ଓ ମାନସିକ ପରିବର୍ତ୍ତନ ଉଦ୍ଦେଶ୍ୟରେ ଗୌତମ ବୁଦ୍ଧ ସାଂସାରିକ ମୋହ ମାୟା ଓ ଚରମ ଭୋଗବିଳାସ ତଥା କ୍ଷମତା, ପ୍ରଭୁତ୍ୱର ପ୍ରତୀକ ରାଜପ୍ରାସାଦ ତ୍ୟାଗ କରି ସନ୍ୟାସର ତ୍ୟାଗପୂତ ପରିବ୍ରାଜ ଜୀବନ ବରଣ କରିଥିଲେ; ବଣ ଜଂଗଲରେ ଜୀବନ ସାରା ବୁଲିଲେ। ହୁଏନ ସାଂ ଚୀନରୁ ଆସି ବର୍ଷ ବର୍ଷ ରହି ଭାରତୀୟ ସମାଜ ଓ ସଂସ୍କୃତିକୁ ଅଧ୍ୟୟନ କରିଗଲେ। ମନନ, ଅଧ୍ୟୟନ ତାଂକୁ ଆରାମ ଯୋଗାଇଲା, ମନରେ ପରିବର୍ତ୍ତନ ଆଣିଲା। ମାତ୍ର ଆଜି ଆଧୁନିକ ବସ୍ତୁବାଦୀ ସମାଜରେ ଆରାମ ଓ ଉପଭୋଗର ସଂଜ୍ଞା ବଦଳିଛି। ପରିବର୍ତ୍ତନକାମୀ ପର୍ଯ୍ୟଟକ ତାତ୍କାଳିକ ଓ ଦୈହିକ ଉପଭୋଗର ଝୁଂକରେ ମୁହ୍ୟମାନ। ବସ୍ତୁବାଦ ଏତେ ଉପରକୁ ଯାଇ ପହଂଚିଲାଣି ଯେ, ତୃତୀୟ ବିଶ୍ୱର ଦାରିଦ୍ର୍ୟ, ଐତିହାସିକ କୃତି, କଳା ସ୍ଥାପତ୍ୟ ଆଦି ତାକୁ ଆଉ ପୂର୍ବଭଳି ତାତ୍କାଳିକ ଆରାମ ସୁଦ୍ଧା ଯୋଗାଇ ପାରୁ ନାହାନ୍ତି। ଆଜି ତା ପାଇଁ ଉପଭୋଗର ଚୂଡ଼ାନ୍ତ ସାମଗ୍ରୀ ହେଲା ମୁଖ୍ୟତଃ ନାରୀ। ସେ ପର୍ଯ୍ୟଟନ କରୁଛି 'ଏସୀୟ ସୌଂଦର୍ଯ୍ୟ'ର ତଲାସରେ, 'କୃଷ୍ଣ ସୁଂଦରୀ'ର ତନୁ ସୁଖ ପାଇଁ। ସେଥିପାଇଁ ପର୍ଯ୍ୟଟନର ଅନ୍ୟନାମ ହେଲା ଆଜି ଯୌନ ପର୍ଯ୍ୟଟନ, ବେଶ୍ୟା ପରିଚର୍ଯ୍ୟନ। ପାଶ୍ଚାତ୍ୟ, ଧନାଢ଼୍ୟ ପର୍ଯ୍ୟଟକ ଆଜି ମୁଖ୍ୟତଃ ଖର୍ଚ୍ଚ କରେ ଯୌନ ଲିପ୍ସାର ପରିପୂରଣ ପାଇଁ; ବିଦେଶୀ ମୁଦ୍ରା ଢାଳିଦିଏ ଅକ୍ଷତ କୁମାରୀର ଦୈହିକ ସ୍ପର୍ଶପାଇଁ। ହୁଏନସାଂ, ଫାହିଆନ କିଂବା ପ୍ରାଚୀନ ଓ ମଧ୍ୟ ଯୁଗର ତୀର୍ଥଯାତ୍ରୀଂକ ପରି ଅମୂର୍ତ୍ତ ପରିଭ୍ରମଣ ଅଥବା ସାମାଜିକ ପର୍ଯ୍ୟବେକ୍ଷଣର ଆଗ୍ରହ ତାଠାରେ ନାହିଁ, ନାରୀଠାରୁ ନାରୀତ୍ୱ, ଡେଣ୍ଟୁ, ମଣିଷତ୍ୱ କାଢ଼ି ନେଇ ତାକୁ ଉପଭୋଗର ସାମଗ୍ରୀ କରିବା ତା'ର ମତଲବ। ନାରୀତ୍ୱ ଓ ମଣିଷତ୍ୱ ଠାରୁ ଯେହେତୁ ଆମ ପାଇଁ ବିଦେଶୀ ମୁଦ୍ରା ଓ ତଜ୍ଜନିତ ବିକାଶର ମହତ୍ତ୍ୱ ଅଧିକ ମୋହ ତତୋଽଧିକ ଆମ ଦେଶୀ ବିକାଶବାଦୀ ବିଦେଶୀ ପର୍ଯ୍ୟଟନର ଆୟୋଜକ ସାଜେ, ଯୋଡ଼ ହସ୍ତରେ ପର୍ଯ୍ୟଟକକୁ ଆମନ୍ତ୍ରଣ ଜଣାଏ। ପୁଂଜିବାଦୀ ବିକାଶ ଓ ଉଗ୍ର ପୁରୁଷକୈଂଦ୍ରିକ ସମାଜ ମଧ୍ୟରେ ଥିବା ପରିପୂରକତାର ଏଥିରୁ ଅଧିକ ଉତ୍କଟ ନିଦର୍ଶନ ଆଉ କ'ଣ ହୋଇପାରେ ?

Digitized by srujanika@gmail.com

ଅନ୍ୟ ଶବ୍ଦରେ, ପର୍ଯ୍ୟଟନ ମାଧ୍ୟମରେ ଦେଶର ଅର୍ଥ ବ୍ୟବସ୍ଥାକୁ ସ୍ୱାବଲମ୍ବୀ କରିବାର ଗୁରୁ ଦାୟିତ୍ୱ ପଡ଼େ ଏସୀୟ କୁମାରୀ 'କୃଷ୍ଣ ସୁନ୍ଦରୀ' ଉପରେ। ବିଦେଶୀ ମୁଦ୍ରା ଅର୍ଜନ କରିବା ନିମିତ୍ତ ତାକୁ ରମ୍ଭା, ମେନକା ସାଜିବାକୁ ବାଧ୍ୟ କରାଯାଏ। ଆବହମାନ କାଳରୁ ପୁରୁଷକୈନ୍ଦ୍ରିକ ପରିବାର ଚଳେଇବାର ଭାର ଲଦି ସମାଜ ତାକୁ ଯେଉଁ ବନ୍ଦୀ କରି ରଖିଛି, ସେଥିରୁ ମୁକ୍ତି ମିଳିବ କ'ଣ, ରାଷ୍ଟ୍ରୀୟ ବିକାଶର ଧାରାକୁ ପ୍ରବାହିତ କରିବାର ବୋଝ ମଧ୍ୟ ଅଯାଚିତ ଭାବେ ତା' ଉପରେ ଲଦି ଦିଆଯାଏ। ନାରୀକୁ ଏକ ଯୌନ କ୍ରୀଡ଼ନକ, ସମ୍ଭୋଗ ସାମଗ୍ରୀ ଠାରୁ ଅଧିକ ଭାବେ ଗଣାଯାଏ ନାହିଁ। ପଣ୍ୟର ବଜାରରେ ସେ ପ୍ରଚାର ବିଜ୍ଞାପନର ଅନ୍ୟତମ କଣ୍ଠାମାଳ। ମହରଗରୁ ଆସି କାନ୍ତାରରେ ପଡ଼ିଲା ଭଳି ସ୍ଥିତି!

ସେ ଗୋଆ ହେଉ ବା କେରଳର କୋଭାଲମ ସମୁଦ୍ରକୂଳ କିମ୍ବା ଲାଟିନ ଆମେରିକାର ହାୱାଇ– ଯେଉଁଠି ଆଜି ପର୍ଯ୍ୟଟକର ସଂଖ୍ୟା ବଢ଼ୁଛି, ସେ ସବୁଠି ପର୍ଯ୍ୟଟନର ସେହି ଗୋଟାଏ ଆଧାର, ଗୋଟାଏ କାହାଣୀ। 'ଏସୀୟ ସୌନ୍ଦର୍ଯ୍ୟ', କୁମାରୀ ଲଳନା ଉପଭୋଗ ପାଇଁ ପର୍ଯ୍ୟଟନ କେନ୍ଦ୍ରରେ କାମଲିପ୍ସୁ ପର୍ଯ୍ୟଟକର ନାହିଁ ନ ଥିବା ଭିଡ଼। ଜାଣି, କେତେ ବର୍ଷ ପରେ ବିକାଶଶୀଳ ସମାଜ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ନିମିତ୍ତ ଏକ ବେଶ୍ୟାଳୟରେ ପରିଣତ ହେବ! ଯୌନ-ପର୍ଯ୍ୟଟନରୁ ସ୍ଥାନୀୟ ଦେଶୀ ପର୍ଯ୍ୟଟକ ମଧ୍ୟ ଛାଡ଼ ପାଇ ନାହାନ୍ତି। କେବେ କେବେ ସେମାନେ ବି ଗୋଆ, କୋଭଲମରେ ହାଜର ହୁଅନ୍ତି ସମୁଦ୍ର ବେଳାଭୂମିରେ ସୂର୍ଯ୍ୟସ୍ନାନ କରୁଥିବା ମହିଳା ପର୍ଯ୍ୟଟକର ନଗ୍ନ ଅଂଗ ସୌଷ୍ଠବ ଦର୍ଶନ ଆଶାରେ ନୋହିଲେ ପୁରୁଷ ବେଶ୍ୟା ସାଜିବାର କାମନାରେ। ଲାଗେ, ଆଧୁନିକ ପର୍ଯ୍ୟଟନର ଭବିଷ୍ୟତ ନାରୀର ଉପଭୋଗ୍ୟା ହେବା ଉପରେ ହିଁ ନିର୍ଭର କରେ।

ଖଜୁରାହୋ ମନ୍ଦିରକୁ ପର୍ଯ୍ୟଟନ ପ୍ରୋତ୍ସାହନ ଏବଂ କୋଣାର୍କ ବେଳାଭୂମିରେ ପଂଚତାରକା ହୋଟେଲ୍ ନିର୍ମାଣ ଉଦ୍ୟମ ପଛରେ ମଧ୍ୟ ବିଦେଶୀ ପର୍ଯ୍ୟଟକର ଯୌନ ଲିପ୍ସା ପୂରଣ କରିବାର ଅଭିପ୍ରାୟ ବେଶ୍ ପ୍ରଚ୍ଛନ୍ନ। ନଗ୍ନ, କାମ କ୍ରୀଡ଼ାରତ ସ୍ଥାପତ୍ୟ କଳାର ପରିଦର୍ଶନ ପାଇଁ ମୁଖ୍ୟତଃ ପର୍ଯ୍ୟଟକ ସେଠି ଭିଡ଼ ଜମାନ୍ତି। ପ୍ରାଚୀନ କଳା ସ୍ଥାପତ୍ୟର ଅଧ୍ୟୟନ ତେଣୁ ଗୌଣ ହୁଏ। କଳା ଦର୍ଶନ ବାହାନାରେ ପର୍ଯ୍ୟଟକ ବସ୍ତୁକଳାର ବ୍ଲୁ ଫିଲ୍ମ ଦେଖିବାରେ ଆଗ୍ରହ ପ୍ରକାଶ କରେ। ସ୍ଥାନୀୟ ସରକାରୀ କଳ ମଧ୍ୟ ଏହି ବାସ୍ତବିକତାକୁ ଦୃଷ୍ଟିରେ ରଖି ପର୍ଯ୍ୟଟନ ପ୍ରୋତ୍ସାହ ଜାରି ରଖନ୍ତି ଓ ବିଜ୍ଞାପନର ବହୁ ରଂଗୀନ ଭାଷାରେ ମୁକୁଳା-ଶୃଙ୍ଗାର ଜାଚନ୍ତି। ନୋହିଲେ ଖଜୁରାହୋ ଆଖ ପାଖରେ ମହକୁଦ ବୁନ୍ଦେଲଖଣ୍ଡର ଅନ୍ୟ ବିବିଧ କଳା ଭାସ୍କର୍ଯ୍ୟକୁ ଖଜୁରାହୋ ପରି ପ୍ରୋତ୍ସାହନ ମିଳନ୍ତା ନାହିଁ? କୋଣାର୍କ ପରି ଓଡ଼ିଆ ସ୍ଥାପତ୍ୟକୁ ମହତ୍ୱ ମିଳନ୍ତା ନାହିଁ? ବାରବର୍ଷ ଧରି ମାଟିର ଘରେ ରହି ବାର ଶହ ଓଡ଼ିଆ କାରିଗର କୋଣାର୍କରେ

Digitized by srujanika@gmail.com

ଯେଉଁ ମହାନ କଳା ସୃଷ୍ଟି କରିଗଲେ, ତାକୁ ଦେଖିବାକୁ ଦୁଇ ଚାରିଦିନ ପାଇଁ ଆସୁଥିବା କଳା ଦର୍ଶନାର୍ଥୀ ପାଇଁ ପଂଚତାରକା ହୋଟେଲର ଆବଶ୍ୟକତା ପଡ଼ନ୍ତା ? ମଂଦିରରେ ଖୋଦିତ ପ୍ରସ୍ତର ମୂର୍ତ୍ତିଗୁଡ଼ିକର ନଗ୍ନରୂପ ଦେଖି କାମଲିପ୍ସା ଜାଗ୍ରତ କରିବାର ଏବଂ ଜାଗ୍ରତ କାମଲିପ୍ସାକୁ ଏସୀୟ କୁମାରୀର ଶରୀର ଆସ୍ୱାଦନରେ ସାକାର କରିବା ପାଇଁ ସିନା ପଂଚତାରକା ହୋଟେଲର ପ୍ରୟୋଜନ !

ଯୌନ ପର୍ଯ୍ୟଟନରୁ ବିଦେଶୀ ମୁଦ୍ରା ଆଦାୟ ହୁଏ ବେଶି । ଫିଲିପାଇନ୍ସର ମାନିଲା ସହରରେ ଜାପାନି ପର୍ଯ୍ୟଟକ ଗୋଟିଏ ରାତି ଉପଭୋଗ ପାଇଁ ବ୍ୟୟ କରେ ବାଷଠି ଡଲାର ବିଦେଶୀ ମୁଦ୍ରା; ଭାରତୀୟ ଅର୍ଥ ଶାସ୍ତ୍ରରେ ତିନି ହଜାରରୁ ଉର୍ଦ୍ଧ୍ୱ ଟଙ୍କା । ରାଷ୍ଟ୍ରର ବିକାଶ ପାଇଁ ଏତେ ଅଧିକ ପରିମାଣରେ ବିଦେଶୀ ମୁଦ୍ରା ଆଦାୟ କରୁଥିବା ସ୍ଥାନୀୟ 'ବେଶ୍ୟା'ର ପ୍ରାପ୍ୟ କିନ୍ତୁ ସେଥିରୁ ସାତ ଆଠ ଡଲାର । ବାକୀ ସବୁ ଅର୍ଥ ପୁରୁଷ ଟୁର ଅପରେଟର ଓ ସ୍ଥାନୀୟ ଭଡ଼ୁଆ ପକେଟ୍‌କୁ ଯାଏ । ବିକାଶର ଏହାଠାରୁ ଅଧିକ ଲାଭପ୍ରଦ ମାଧ୍ୟମ, 'ମହତ' ରାସ୍ତା ଆଉ କ'ଣ ହୋଇପାରେ ? ବିନା ପୁଂଜି ଲଗାଣରେ ଏତେ ଗୁଡ଼ାଏ ଅର୍ଥ ଆମଦାନୀ । ଏବେ 'ଏଡ୍ସ' ରୋଗର ବ୍ୟାପକ ଭୟ ଯୋଗୁଁ ଯୌନ ପର୍ଯ୍ୟଟନର ଧାରାକୁ ପ୍ରବାହିତ କରିବାର ଦାୟିତ୍ୱ ଆସି ପଡ଼ିଲାଣି ଅତି ଅଳ୍ପ ବୟସର ତରୁଣୀ ଝିଅ ଉପରେ । କାରଣ ଅକ୍ଷତ କୁମାରୀ ହେବାର ଏବଂ ପୂର୍ବରୁ ଉପଭୋଗ୍ୟା ହୋଇ ନ ଥିବାର ପ୍ରମାଣପତ୍ର ତା ଠାରେ ରହିଛି ! ଶୁଣିବାକୁ ଶ୍ରୁତିକଟୁ ଲାଗିପାରେ, ମାତ୍ର ଏହା ଅନୁମାନ କରିବା କଥା ଯେ, ପର୍ଯ୍ୟଟନକୁ ବିକାଶର ସିଡ଼ି କରିବା ଫଳରେ କେତେ ବର୍ଷପରେ ବିକାଶଶୀଳ ରାଷ୍ଟ୍ର ଏକ ଖୋଲା ବେଶ୍ୟାଳୟରେ ପରିଣତ ହେବାର ପୂର୍ଣ୍ଣ ଆଶଂକା ଅଛି । ଗତଥର ଗଲ୍‌ଫ୍ ଯୁଦ୍ଧବେଳେ ଏକଥା ପ୍ରମାଣିତ ହେଲା । ଆରବୀୟ ମରୁଭୂମିର ରଣ କ୍ଷେତ୍ରରୁ ସିଧା ପରିବାହିତ ହୋଇ ମାର୍କିନ୍ ସୈନ୍ୟମାନେ ଗଲେ ଥାଇଲାଣ୍ଡ । ସଂଗେ ସଂଗେ ସ୍ଥାନୀୟ ଖବର କାଗଜରେ ବଡ଼ ବଡ଼ ବିଜ୍ଞାପନ ବାହାରିଲା : 'ଆମ ହୋଟେଲରେ ଆମେ ଏଗାର ବର୍ଷର କିଶୋରୀଙ୍କୁ ଯୋଗାଇ ଦେଉ ।' ଏଥର ପ୍ରତିଯୋଗୀ ହୋଟେଲବାଲା ତତ୍‌କ୍ଷଣାତ୍ ବିଜ୍ଞାପନ ଛାପିଲେ : "ଆମେ ନଅ ବର୍ଷର, ସାତ ବର୍ଷର ବାଳିକାଙ୍କୁ ବାଢ଼ି ପାରୁ ।" ଆମେରିକାର ୮୦ କି:ଗ୍ରା: ଓଜନର ସୈନିକ ଉପଭୋଗ କରିବ ସାତ ବର୍ଷର ବାଳିକା । ବିଦେଶୀ ଉପଭୋକ୍ତା ନିମନ୍ତେ ଦୈହିକ ଆମୋଦ ପ୍ରମୋଦର ସୁବ୍ୟବସ୍ଥା କରିବାରେ ନିୟୋଜିତ ରହିବେ ଆଧୁନିକତାର ଦେଶୀ ଅଧିବକ୍ତାମାନେ ନିକଟ ଭବିଷ୍ୟତରେ । ପାଶ୍ଚାତ୍ୟକୁ ଉପଭୋଗର ସାମଗ୍ରୀ ଯୋଗାଇ ପ୍ରତିବଦଳରେ ବିକାଶର ନିରନ୍ତର ଗଡ଼ ଖାଇ ଖୋଳୁଥିବେ ସେମାନେ । ଦେଶର ଆଗାମୀ ନାରୀ ପୀଢ଼ିକୁ ନଗରବଧୂ ରୂପେ ବାଢ଼ି ଥୋଇବାର ସୁପରିକଳ୍ପିତ ଯୋଜନା ତାଂକ ମଗଜରେ ଅଛି !

Digitized by srujanika@gmail.com

ପର୍ଯ୍ୟଟନ ଆଧୁନିକ ବିକାଶର ଏକ ଅଭିନ୍ନ ଧାରା । ତାର ଅଭିବୃଦ୍ଧି ପାଇଁ ମାନବ ସମାଜର ଅର୍ଦ୍ଧାଂଶ, ନାରୀକୁ ମୂଲ୍ୟ ଦେବାକୁ ପଡ଼େ, 'ପଣ୍ୟ' ହେବାକୁ ପଡ଼େ। ଯେମିତି ଆର୍ଥିକ ବିକାଶ ନିମନ୍ତେ ବଣ୍ୟ ଜନ୍ତୁମାନଙ୍କୁ, ଆଦିବାସୀ ସମାଜକୁ, ଗାଁବାଲାଙ୍କୁ, ଗଛଲତାଙ୍କୁ ତ୍ୟାଗ ସ୍ୱୀକାର କରିବାକୁ ପଡ଼େ, ଠିକ ସେମିତି। ନାରୀ କ୍ଷେତ୍ରରେ ଫରକ ଏତିକି ଯେ, ସେ ଆଦିବାସୀ ଓ ଗାଁବାଲା ପରି ଚୁପ କିଂବା ଗଛ ଲତା ପରି ମୂକ ନୁହେଁ। ସେ ପଢ଼େ, ଲେଖେ, ଇଂରାଜୀ ମଧ କହେ। ତେଣୁ ପୁରୁଷକୈନ୍ଦ୍ରିକ ବିକାଶବାଦୀମାନଙ୍କର ଚେଷ୍ଟା, ସେମାନେ ତା ମୁହଁରେ କୁହାଇବେ, ଏସବୁ ବିକାଶର ମୂଲ୍ୟ ବା ତ୍ୟାଗ ନୁହେଁ; ପର୍ଯ୍ୟଟନର ପ୍ରସାରରେ ସେ କେବେ ଉପଭୋଗ୍ୟ ହେଲା ? ବରଂ ଉପଭୋକ୍ତାବାଦର ଅଭିବୃଦ୍ଧିରେ ତ ତା ମୁକ୍ତିର ବାଟ ନିହିତ ଅଛି। କେତେକ ଅଭିନେତ୍ରୀଙ୍କ ପରି ଅନେକ ଆଧୁନିକ ନାରୀ ତ ଏହା କହିବା ମଧ ଆରଂଭ କଲେଣି। ବିଶ୍ୱ ସୁନ୍ଦରୀ, ବ୍ରହ୍ମାଣ୍ଡ ସୁନ୍ଦରୀ ଆଦିର ପ୍ରତିଯୋଗିତା ତା' ପାଇଁ ମଂଚ ଯୋଗାନ୍ତି।

ସମସ୍ୟା ହେଲା, ନାରୀ ମୁକ୍ତି ଓ ଆଧୁନିକ ବିକାଶ– ସେ ପର୍ଯ୍ୟଟନ ମାଧମରେ ହେଉ ବା ସହରୀକରଣ ସାହାଯ୍ୟରେ ହେଉ– ପରସ୍ପର ପରସ୍ପରର ପରିପନ୍ଥୀ। ବିକାଶ ବଢ଼ିବା ସାଂଗରେ ନାରୀକୁ ଅଧିକରୁ ଅଧିକ ନିଜ ନାରୀତ୍ୱ, ନିଜତ୍ୱ ଏବଂ ସର୍ବୋପରି ମଣିଷତ୍ୱ ହରାଇବାକୁ ପଡ଼ିବ। ଉପଭୋକ୍ତାବାଦୀ, ପୁଂଜିବାଦୀ ସଂସ୍କୃତି ଯେହେତୁ ତୀବ୍ର ଭାବରେ ପୁରୁଷକୈନ୍ଦ୍ରିକ, କାୟ ମନୋବାକ୍ୟରେ ନାରୀ ଯାହାକୁ ଆର୍ଥିକ ସାମାଜିକ ମୁକ୍ତିର ପନ୍ଥା ବୋଲି ବିଚାର କରେ, ସେଗୁଡ଼ିକ ମଧ ତାକୁ ପଣ୍ୟ କରିପକାନ୍ତି। ତେଣୁ, ଅଫିସରେ ଚାକିରୀ ଯେତିକି ମାତ୍ରାରେ ତାକୁ ଆର୍ଥିକ ସ୍ୱାଧୀନତା ଦିଏ, ତା'ଠୁ ଅଧିକ ସାମାଜିକ କର୍ତ୍ତୃତ୍ୱର ଶୀକାର କରେ; ସ୍ୱାଚ୍ଛନ୍ଦ୍ୟ ପାଇଁ ବ୍ୟବହୃତ ତାର ପରିଧାନ ଯେତିକି ମାତ୍ରାରେ ତାକୁ ଶାରୀରିକ ସ୍ୱାଚ୍ଛନ୍ଦ୍ୟ ଯୋଗାଏ ତାଠୁ ଅଧିକ 'ପରିଦର୍ଶନୀୟ' ବେଳେବେଳେ ଯୌନ ଅବଗାହୀ ଓ ଉତ୍ତେଜକ କରି ପକାଏ। ଏହି ସବୁ ଦ୍ୱନ୍ଦାତ୍ମକ ପ୍ରଭାବକୁ ଦୃଷ୍ଟି ନ ଦେଇ ଆଜି ନାରୀର ଆତ୍ମସମ୍ମାନ କିଂବା ମୁକ୍ତି ଆଂଦୋଳନ କଥା ଚିନ୍ତା କରିହେବ ନାହିଁ। ମନୁସ୍ମୃତିର ଆଧାରରେ ଯଦି ଆମେ ଜାଣିଲେ ପ୍ରାଚୀନ ସଭ୍ୟତା ଓ ତାର ରୀତି ନୀତି ନାରୀକୁ ପଶୁତୁଲ୍ୟ ଦାସୀର ଆସନ ଦେଇଛି, ତେବେ ପର୍ଯ୍ୟଟନର ଉଦାହରଣରୁ ଜାଣିବା କଥା ଯେ, ଆଧୁନିକ ସଭ୍ୟତା ତାକୁ ଦ୍ୱୈତ ଦାସତ୍ୱର ଶୀକାର କରିଛି। ଉପଭୋକ୍ତାବାଦ, ସହରୀକରଣ, ଶିଳ୍ପ ସଂସ୍ଥା ସ୍ଥାପନ ଆଦି, ଆଧୁନିକ ବିକାଶର ଅନ୍ୟାନ୍ୟ ଧାରାରେ ମଧ ନାରୀର ତଦ୍ରୂପ ଦୁରବସ୍ଥା। ତେଣୁ ଉପର ଠାଉରିଆଭାବେ ଆଧୁନିକତାରୁ ଲବ୍ଧ 'ସୁବିଧା ସୁଯୋଗ'କୁ ନାରୀ ଆତ୍ମସମ୍ମାନର ଚାବିକାଠି ରୂପେ ଗ୍ରହଣ କରିବା କେତେଦୂର ସମୀଚୀନ ହେବ ତାହା ବିଚାର କରିବାର ବେଳ ଆସିଛି।

◆◆

Digitized by srujanika@gmail.com

# ବିକଳ୍ପ ବିକାଶ ଓ ଅରୁଣାଚଳ ପ୍ରସଂଗ

ଓଡ଼ିଶାର ବିକାଶ ପ୍ରସଂଗ ଉଠିଲେ ଚିନ୍ତକ ଗୋଷ୍ଠୀ ମତ ଦିଅନ୍ତି, ରାଜ୍ୟରେ ଉପଲବ୍ଧ ବହୁଳ ଖଣିଜ ପଦାର୍ଥକୁ ଦୃଷ୍ଟିରେ ରଖି ଆଉ କେତେଗୋଟି ଶିଳ୍ପ ପ୍ରତିଷ୍ଠାନ ସ୍ଥାପିତ ହେବା କଥା। ଜନ ମାନସରେ ଏ ଯୁକ୍ତିର ଏତେ କାଟତି ଯେ, ରାଜନୈତିକ ଦଳଗୁଡ଼ିକ ଏହାକୁ ଇସ୍ତାହାର କରି ପ୍ରତ୍ୟେକ ଥର ନିର୍ବାଚନ ଲଢ଼ନ୍ତି। କୌଣସି ଦଳ ରାଜ୍ୟରେ ହଜାରେ ଶିଳ୍ପ ପ୍ରତିଷ୍ଠାର ପ୍ରତିଶ୍ରୁତି ଦିଅନ୍ତି ତ' ଭିନ୍ନ ଏକ ଦଳ ଦ୍ୱିତୀୟ ଇସ୍ପାତ କାରଖାନାର ଭୂମି ପୂଜା କରି ନିର୍ବାଚନ ଲଢ଼ନ୍ତି। ପୁଣି, ଉଭୟ ଦଳ ଏବଂ ସରକାରକୁ ଜନ ବିରୋଧୀ ବୋଲି ପ୍ରମାଣିତ କରିବାର ଚେଷ୍ଟାରେ ତୃତୀୟ ଗୋଷ୍ଠୀ ସ୍ୱାଧୀନଚେତା ବୁଦ୍ଧିଜୀବି ଓ ସାଂବାଦିକମାନେ ଯୁକ୍ତି କରନ୍ତି, ନିର୍ବାଚନ ପ୍ରତିଶ୍ରୁତି ପାଳିତ ହୋଇ ନାହିଁ; ଶିଳ୍ପ ପ୍ରତିଷ୍ଠା କେହି କରୁନାହାନ୍ତି। ତେଣୁ ରାଜନୈତିକ ଦଳ ତଥା ଅନେକ ବୁଦ୍ଧିଜୀବିଙ୍କ ଧାରଣା ପ୍ରଚୁର ପରିମାଣରେ ଶିଳ୍ପ ପ୍ରତିଷ୍ଠା ହେଲେ ବିକାଶ ହେବ, ରାଜ୍ୟର ଅବସ୍ଥା ସୁଧୁରି ଯିବ। ଦାରିଦ୍ର୍ୟ, ଅନାହାର ମୃତ୍ୟୁ, ସାମାଜିକ ବିଶୃଙ୍ଖଳା, ବେକାରୀ ରାଜନୈତିକ ସ୍ଖଳନ ତଥା ମାନସିକ ଅସୁନ୍ତଳନ, ଆଦି ସମସ୍ୟା ମୂଳ ପୋଛ ହୋଇଯିବ।

ପୁଣି ଆଉ କେତେକ ପଦପଦବୀଧାରୀ ସରକାରୀ ବ୍ୟକ୍ତି ରେଳପଥ ବିସ୍ତାର, ରେଳଷ୍ଟେସନ ପୁନର୍ନିର୍ମାଣ, ନୂତନ ଦୂରଦର୍ଶନ କେନ୍ଦ୍ରସ୍ଥାପନ ଆଦି ଶିଳ୍ପ ଭଳି ସଂସ୍ଥା ପ୍ରତିଷ୍ଠା ଦ୍ୱାରା ରାଜ୍ୟର ବିକାଶ ହେବ ବୋଲି ଭାବୁଛନ୍ତି। ଏହି ଧରଣର ବିକାଶକାମୀ ନେତୃବର୍ଗଙ୍କୁ ତାଂକ ବିରୋଧୀ ଲୋକ ବି ରାଜ୍ୟର ବିକାଶ କଳ୍ପେ ଅଧିକ ସମୟ ପଦ ପଦବୀ ମିଳୁ ବୋଲି ଓକିଲାତି କରୁଛନ୍ତି।

ପ୍ରଶ୍ନ ଉଠେ, ଲୋକ ସାଧାରଣଂକ ସାମାଜିକ ଓ ଆର୍ଥିକ ବିକାଶ ବାସ୍ତବରେ କ'ଣ ଶିଳ୍ପ ପ୍ରତିଷ୍ଠାନ ଦ୍ୱାରା ସଂଭବ? କୃଷି ବଦଳରେ ସରକାରୀ କିଂବା ଶିଳ୍ପ ଉଦ୍ୟୋଗରେ ନିଯୁକ୍ତି ନିମନ୍ତେ ଆଗ୍ରହୀ ସମସ୍ତ ବ୍ୟକ୍ତିଂକୁ କ'ଣ ଚାକିରୀ ଦେବା ସଂଭବ? ପୁଣି, ସମସ୍ତଂକୁ ଚାକିରୀ ଓ ଦରମା ମିଳିବା ନିଶ୍ଚିତ ହେଲେ, କ'ଣ ରାଜ୍ୟର ସାମଗ୍ରିକ ବିକାଶ ହେଲା ବୋଲି ବୁଝାଯିବ?

ଏ ସବୁ ପ୍ରଶ୍ନର ବିଚାର ପାଇଁ ଶିଳ୍ପ ପ୍ରତିଷ୍ଠିତ ହୋଇ ସାରିଥିବା ଏକ କ୍ଷେତ୍ରକୁ ନିଆଯାଉ। ଦେଖା ଯାଉଛି ଯେ ଶିଳ୍ପ ପ୍ରତିଷ୍ଠା ପରେ ସୁଦ୍ଧା ସେଠି ଜନ ସାଧାରଣଂକ କୌଣସି ସାମଗ୍ରିକ ବିକାଶ ହେଉନାହିଁ। ନୂତନ ଦୂରଦର୍ଶନ କେନ୍ଦ୍ର

Digitized by srujanika@gmail.com

ସ୍ଥାପନ ଏବଂ ସ୍ଥାନୀୟ ଲୋକଂକ ଆ୍‌ର୍ଥିକ ସ୍ୱଚ୍ଛଳତା ମଧ୍ୟରେ ଯେମିତି କୌଣସି ସଂପର୍କ ନାହିଁ, ଶିଳ୍ପ ଓ ସ୍ଥାନୀୟ ଲୋକଂକ ଆର୍ଥିକ ପ୍ରଗତି ମଧ୍ୟରେ ସେମିତି କୌଣସି ସଂବଂଧ ନାହିଁ। ଓଡ଼ିଶାର ଯେତେ ହଜାର ଲୋକ ରାଉରକେଲା ଇସ୍ପାତ କାରଖାନାରେ ଚାକିରୀ ପାଇଥାନ୍ତୁ ନା କାହିଁକି, ଏକଥା ଅନସ୍ୱୀକାର୍ଯ୍ୟ ଯେ, ସେଠିକା ସ୍ଥାନୀୟ ଅଧିବାସୀ ପୂର୍ବ ତୁଳନାରେ ଏବେ ଅଧିକ ମାନସିକ ଓ ଆର୍ଥିକ ଦରିଦ୍ରତାର ସମ୍ମୁଖୀନ, ଅଧିକ ସାମାଜିକ ଅସୁରକ୍ଷାର ଶୀକାର। ସ୍ଥାନୀୟ ହେବା ସତ୍ତ୍ୱେ ରାସ୍ତା ଘାଟରେ ଦାଦାଗିରୀ କରିବାର ଅଧିକାର ସୁଦ୍ଧା ସେମାନଂକର ନାହିଁ। ସବୁ ବାହାର ଲୋକେ କବ୍ଜା କରି ନେଇଛନ୍ତି। ଶିଳ୍ପ ସଭ୍ୟତାର ଚାପରେ ନିତି ପ୍ରତି ସେମାନେ ନିଜ ଭିଟା ମାଟିରୁ ବିତାଡ଼ିତ ହେଉଛନ୍ତି। ଶିଳ୍ପାଂଚଳରେ ବିଶୃଙ୍ଖଳା ଓ ବିପ୍ଳବ ବଢ଼ିଛି; ସ୍ଥାନୀୟ ନାରୀର ଇଜ୍ଜତ ହରିଲୁଟ ହେଉଛି। ଜଂଗଲର ବିଲୁପ୍ତ ପ୍ରାୟ ପ୍ରାଣୀ ଭଳି ସେମାନଂକ ଜୀବନ 'ସଭ୍ୟତାର' ଖଣ୍ଡାଧାରରେ ବଳି ପଡ଼ୁଛି। କଳକାରଖାନା ପୂର୍ଣ୍ଣ ରାଉରକେଲାରୁ କଳକାରଖାନା ଶୂନ୍ୟ ଜଂଗଲ ଆଡ଼େ ଧାଇଁଛନ୍ତି ସେମାନେ। ଏହି ସତ୍ୟକୁ ଉପଲବ୍ଧ କରିବା ପାଇଁ ଆମକୁ ସରକାରୀ ପରିସଂଖ୍ୟାନରେ ଗୋଳେଇ ଘାଣ୍ଟି ହେବାକୁ ପଡ଼ିବ ନାହିଁ ବା ଶିଳ୍ପବାଦୀମାନଂକର ବାକ୍‌ଚାତୁରୀ ଶୁଣିବାକୁ ପଡ଼ିବ ନାହିଁ। କେବେ ରାଉରକେଲା ଗଲେ ଆପେ ଆପେ ଆସି ପଡ଼ିଯିବ ଏ ଦୃଶ୍ୟ ଆଖି ଆଗରେ। ଶିଳ୍ପ-ବିକାଶ-ପରଦା ଆଢୁଆଳରେ ବିଦ୍ୟମାନ ଦୃଶ୍ୟ ଦେଖିବା ପାଇଁ ଆଖି ଖୋଲା ରଖିବା କଥା ଯାହା।

ଯେ'ତ ଗଲା କଳ କାରଖାନା ଯୋଗୁଁ ବିସ୍ଥାପିତ ସ୍ଥାନୀୟ ଲୋକଂକ କଥା। ସେଠି ଚାକିରୀ ପାଇ ସ୍ଥାପିତ ହୋଇଥିବା ଲୋକଂକର ହେଲେ କ'ଣ ବିକାଶ ସଂଭବ ହୋଇଛି? ଯେଉଁ ଚାକିରୀରେ ଅଛନ୍ତି, ଯେତେ ପଇସା ମିଳୁଛି, ଯେତେ ସବୁ ଜିନିଷ ପତ୍ର ଘରେ ରଖି ସାରିଲେଣି, ସେଥିରେ କ'ଣ ସନ୍ତୁଷ୍ଟ ସେମାନେ? 'ଏକ୍ସଟ୍ରା' ଆମଦାନି ପାଇଁ ଚେଷ୍ଟିତ ନୁହଁନ୍ତି? ଚାକିରୀ ମିଳିବା ପୂର୍ବାବସ୍ଥାରେ ସେମାନେ ଯେଉଁ ସ୍ଥିତିରେ ଥିଲେ ନିଜ ମତରେ ହୁଏତ ତା'ଠାରୁ ଦୁଃସ୍ଥିତିକୁ ଯାଇ'ଥାଇ ନ ପାରନ୍ତି, ମାତ୍ର ତା'ଠାରୁ ଅଧିକ ସୁସ୍ଥ ଅବସ୍ଥାକୁ ଚଢ଼ି ଆସିଛନ୍ତି ବୋଲି କେତେଜଣ ସେମାନଂକ ମଧ୍ୟରୁ ସ୍ୱୀକାର କରିବେ? ଯଦି ନାହିଁ, ତେବେ ଏତେ ବଡ଼ ପର୍ବତ ଖୋଦନ ପରେ କ'ଣ ମୂଷିକର ସୁଦ୍ଧା ପ୍ରାପ୍ତି ହୋଇଛି? ସଦ୍ୟତମ ଅନୁଭୂତି ହେଲା ଯେ ରାଉରକେଲା ଇସ୍ପାତ କାରଖାନା ସଂପ୍ରତି ପ୍ରାୟତଃ ଅଚଳ। ବିଦେଶରୁ ଆମଦାନୀ କରା ଇସ୍ପାତର ମୂଲ୍ୟ ଦେଶୀ ଉତ୍ପାଦିତ ଇସ୍ପାତ ଠାରୁ କମ୍ ଦାମରେ ବଜାରରେ ଉପଲବ୍ଧ।

ଏସବୁ ପ୍ରଶ୍ନର ଉତ୍ତର ଆଜି ପ୍ରତ୍ୟେକ ଯନ୍ତ୍ର ସଭ୍ୟତାର ପୃଷ୍ଠପୋଷକଂକୁ ଦେବାକୁ ପଡ଼ିବ। ଦାର୍ଶନିକ, ଅବାସ୍ତବ ବୋଲି ଆଡ଼େଇ ଦେଲେ ଏ ପ୍ରଶ୍ନ ଗୁଡ଼ିକର ସମାଧାନ ହୋଇ ଯିବ ନାହିଁ।

Digitized by srujanika@gmail.com

ଅସଲ କଥା ହେଲା, ଶିଳ୍ପ ପ୍ରତିଷ୍ଠା ଦ୍ୱାରା ସ୍ଥାନୀୟ ଅଧିବାସୀ ତ ବିକାଶର ମୂଲ୍ୟ ଦେଇ ଚାଲିଛନ୍ତି, କିନ୍ତୁ ଚାକିରିଆ, ଶିଳ୍ପପତି ଓ ବ୍ୟବସାୟୀମାନେ ସୁଦ୍ଧା ମାନସିକ ଓ ସାମାଜିକ ଶାନ୍ତି ହରାଇଛନ୍ତି, ଚାଲିଚଳଣରେ ସେମାନଙ୍କର ସ୍ୱାଭାବିକତା ନାହିଁ, କୃତ୍ରିମତା ଭରି ଯାଇଛି ଏବଂ ଆର୍ଥିକ ଜୀବନ ମଧ୍ୟ ଅଧିକ ପ୍ରତିଯୋଗୀ ଓ କଷ୍ଟପୂର୍ଣ୍ଣ ହୋଇ ପଡ଼ିଛି। ଏଭଳି ଏକ ସ୍ଥିତିର ବିକଳ୍ପ ଖୋଜିବା ନିମନ୍ତେ ଆଜି କେତେକ ବୁଦ୍ଧିଜୀବି ଚିନ୍ତାରତ। ସେମାନଙ୍କ ଧାରଣା, ବୃହତ ଶିଳ୍ପ, ବୃହତ ଡ୍ୟାମ, ବୃହତ ସହର ଏବଂ ବଜାର, ଜଗତିକରଣ ଯୋଗୁ ଏ ସମସ୍ୟା। ଯଦି ବୃହତ ଶିଳ୍ପ ସ୍ଥାନରେ କ୍ଷୁଦ୍ର ଶିଳ୍ପ ଉପରେ ଗୁରୁତ୍ୱ ଦିଆଯାଏ, ବା ଜଳସେଚନ ନିମନ୍ତେ ଡ୍ୟାମର ଆକାର ଛୋଟ ହୁଏ ଏବଂ ବଜାର, ରାଷ୍ଟ୍ର ବା ରାଜ୍ୟ ସ୍ତରରେ ସୀମିତ ରହେ, ସମସ୍ୟାର ସମାଧାନ ହୋଇଯିବ। ଅର୍ଥାତ୍ ଯନ୍ତ୍ର, ବିକାଶ କିଂବା ଆଧୁନିକୀକରଣକୁ ସେମାନେ ବିରୋଧ କରନ୍ତି ନାହିଁ; କେବଳ ତାର ଲଗାମ ଛଡ଼ା ଗତି ଯୋଗୁଁ ବିଚାରେ ବିତସ୍ପୃହ। ଯନ୍ତ୍ର ସଭ୍ୟତାର ଗତି ଯଦି ନିୟନ୍ତ୍ରଣ ଭିତରେ ତେବେ ତାଙ୍କର କିଛି ଆପତ୍ତି ନାହିଁ।

କିନ୍ତୁ, ପଚାଶ ହଜାର ବା ଲକ୍ଷେ ଲୋକଙ୍କୁ କର୍ମ ସଂସ୍ଥାନ ଯୋଗାଉ ଥିବା ବୃହତ ଶିଳ୍ପ ତୁଳନାରେ ଦୁଇ ଶହ ବା ଚାରି ଶହ ଲୋକଙ୍କୁ ନିଯୁକ୍ତି ଦେଇଥିବା କ୍ଷୁଦ୍ରଶିଳ୍ପ କ'ଣ କମ ଯନ୍ତ୍ରଣା ଦାୟକ? କର୍ମଚାରୀ କ'ଣ ତା'ର କମ ଶୋଷଣର ଶୀକାର? ବୃହତ ଡ୍ୟାମର ବିସ୍ଥାପନ ତୁଳନାରେ କ୍ଷୁଦ୍ର ଡ୍ୟାମର ବିସ୍ଥାପନ କ'ଣ ବିସ୍ଥାପିତ ପାଇଁ କମ ମାରାତ୍ମକ? ସଂଭବତଃ ନୁହେଁ। ତେବେ ଯଦି କୌଣସି ଅମୂର୍ତ୍ତ ବୈଚାରିକ ପ୍ରତିବଦ୍ଧତାର ବଂଧନ ନାହିଁ, କାହିଁକି କ୍ଷୁଦ୍ରଶିଳ୍ପ, କ୍ଷୁଦ୍ର ଡ୍ୟାମ ବା କ୍ଷୁଦ୍ର ସହରର ଶୀକାର ବ୍ୟକ୍ତି ନିଜ ସ୍ଥିତିରେ ଆତ୍ମତୃପ୍ତି ଲାଭ କରିବ? ତେଣୁ ବ୍ରଡ଼ ଗଜ ରେଳ ସ୍ଥାନରେ ମିଟର ଗଜ ରେଳ ଚାଲିଲେ, ବା ଉଚ୍ଚ ଶକ୍ତି ସଂପନ୍ନ ଟେଲିଭିଜନ ଟ୍ରାନ୍ସମିଶନ ସ୍ଥାନରେ କ୍ଷୁଦ୍ରଶକ୍ତି ସଂପନ୍ନ ଟ୍ରାନ୍ସମିଶନ, କିଂବା ବୃହତ ସହର ସ୍ଥାନରେ କ୍ଷୁଦ୍ର ସହର ଯେମିତି ସାମାଜିକ ସମସ୍ୟାର ସମାଧାନ କରିପାରେ ନାହିଁ, କ୍ଷୁଦ୍ର ଡ୍ୟାମ ଓ କ୍ଷୁଦ୍ର ଶିଳ୍ପ ମଧ୍ୟ ସେମିତି ମୂଳ ସମସ୍ୟାକୁ ଅତୁଟ ରଖେ।

ଅର୍ଥାତ୍ ବେ-ଲଗାମ ବିକାଶବାଦୀ କେବଳ ଲୋକ ସଂଖ୍ୟାକୁ ବାଦ ଦେଲେ, ଅନ୍ୟସବୁ କିଛିର–ନିଜ ରାଷ୍ଟ୍ରଠାରୁ ଆରଂଭ କରି କ୍ଷମତା, ଶିଳ୍ପ, ଡ୍ୟାମ, ଚାଷ ଜମି, ବ୍ୟାଂକ ଋଣର ପରିମାଣ ପର୍ଯ୍ୟନ୍ତ– 'ବୃହତ' ହେବାରେ ଯେମିତି ସମସ୍ତ ସାମାଜିକ ସମସ୍ୟାର ସମାଧାନ ସଂଭବ ବୋଲି ପ୍ରଚାର କରନ୍ତି, ଲଗାମବାଲା ବିକାଶବାଦୀ ଶିଳ୍ପ ସହର, କ୍ଷମତା, ବଜାର– ଏପରି କି ରାଷ୍ଟ୍ରର ପରିସୀମା– କ୍ଷୁଦ୍ର ହେବାରେ ଜାଗତିକ ସମସ୍ୟାଗୁଡ଼ିକର ସମାଧାନର ରାସ୍ତା ଖୋଜନ୍ତି। ଫଳ ସ୍ୱରୂପ ଉଭୟ ଗୋଷ୍ଠୀକୁ ସନ୍ତୁଷ୍ଟ କରିବା ପାଇଁ ସରକାର କେତେ ଗୋଟି ବୃହତ ଶିଳ୍ପ

Digitized by srujanika@gmail.com

ସାଂଗରେ କେତେଗୋଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରନ୍ତି, ଉଚ୍ଚଶକ୍ତି ସଂପନ୍ନ ଟ୍ରାକ୍ଟରମିଶନ ସାଂଗରେ ଅଳ୍ପ ଶକ୍ତି ସଂପନ୍ନ ଟ୍ରାକ୍ଟରମିଶନ ଓ ବ୍ରଡ଼ଗଜ ସହ ତାଳ ଦେଇ ମିଟର ଓ ନେରୋଗଜ ରେଳ ଲାଇନ ବିଛେଇ ଦିଅନ୍ତି, ଏବଂ ବୃହତ ରାଜ୍ୟ ୟୁ.ପି. ସାଂଗକୁ କ୍ଷୁଦ୍ର ରାଜ୍ୟ ଗୋଆକୁ ସ୍ୱୀକୃତି ଦିଅନ୍ତି। ଅବସ୍ଥା ଯେମିତିକୁ ସେମିତି ରହେ। 'ପ୍ରଗତି' ଓ 'ବିକାଶ'ର ଚକ ଗଡ଼ି ଚାଲେ।

ଲଗାମବାଲା ବା ନିୟନ୍ତ୍ରିତ ବିକାଶର ଉଦ୍ଦେଶ୍ୟ ହେଲା ଯନ୍ତ୍ର ରହୁ, ବିକାଶର ଲାଭ ମିଳୁ। କିନ୍ତୁ ତା ସାଂଗରେ ପରିବେଶ ମଧ୍ୟ ପ୍ରଦୂଷିତ ନ ହେଉ। ଜଂଗଲ କାଟିବା ପାଇଁ ଯନ୍ତ୍ର ରହୁ, ସାଂଗରେ ଜଂଗଲ ବି ରହୁ, ବଣ୍ୟଜନ୍ତୁ ଭରପୂର ଥାଆନ୍ତୁ ସେଠାରେ। ମହଂଗା ଶିଳ୍ପ ସଂସ୍ଥା ଥାଉ, ସାଂଗରେ ଶିଳ୍ପର ମାଲିକ ବା ପ୍ରଶାସକ ଓ ଖଟିଖିଆ ମଧ୍ୟରେ ସମାନତା ବି ରହିଥାଉ। ବଜାର ରହୁ, କିନ୍ତୁ ବଜାରଦ୍ୱାରା ଶୋଷଣ ନ ହେଉ। ସହରିକରଣ ହେଉ, କିନ୍ତୁ ସେଠିକା ସାମାଜିକ ଜୀବନରେ କୃତ୍ରିମତା ନ ଥାଉ। ସତ କଥା। କିଏ ନ ଚାହେଁ ଏସବୁ ? ଲଗାମ-ହୀନ ବିକାଶର ଉଦ୍ଦେଶ୍ୟ କ'ଣ ଏଥିରୁ ଭିନ୍ନ କିଛି? ହେଲେ, ଏହା କି କେବେ ସଂଭବ? ବିକାଶ ଓ ପରିବେଶ, ଯନ୍ତ୍ର ଓ ସାମାଜିକ ସମାନତା ଭିତରେ ଥିବା ଅନ୍ତର୍ବିରୋଧ ଯୋଗୁଁ ଏସବୁ ଯଦି ସଂଭବ ନୁହେଁ, ସାମାଜିକ ବିକାଶର କ'ଣ କିଛି ଭିନ୍ନ ବିକଳ୍ପ କଥା ଚିନ୍ତା କରାଯାଇ ନ ପାରେ?

ଏହି ପରିପ୍ରେକ୍ଷୀରେ ଆଦିବାସୀ ଅଧ୍ୟୁଷିତ ଅରୁଣାଚଳ ପ୍ରଦେଶର ଏକ ଅଣ ଆଧୁନିକ ବା ପାରଂପରିକ ଗାଁର ଉଦାହରଣ ନିଆଯାଇପାରେ। ଗାଁର ନା ଆୟେଂଗ। ଇଟାନଗରରୁ ଦୁଇଶହ ପଚାଶ କି.ମି. ଦୂର ପାଶିଘାଟ ଏକ ଜିଲ୍ଲାସ୍ତରୀୟ ସହର। ସେଠୁ ଡଂଗାରେ ସିଆଂଗ ନଦୀ ପାର ହୋଇ ପ୍ରାୟ ପନ୍ଦର କି.ମି. ଚାଲିଲା ପରେ ପଡ଼େ ଗାଁଟି। ପରିବାର ସଂଖ୍ୟା ଶହେରୁ ସାମାନ୍ୟ ବେଶି। ଗାଁରେ ଗୋଟାଏ ସୁଦ୍ଧା ଦୋକାନ ନାହିଁ। ଯାହା ବି କିଣିବାର ଥିବ ପନ୍ଦର କି.ମି. ଦୂର ସହରକୁ ପାଦରେ ଯାଇ କିଣିବାକୁ ପଡ଼ିବ। କେତେ ଜଣଙ୍କୁ ବାଦ ଦେଲେ ଗାଁର ପ୍ରାୟ ଲୋକ ପାସିଘାଟ ଯାଏଁ ବି ଆସି ନାହାନ୍ତି। ଜଂଗଲରେ ଦିନ ଦିନ ଧରି ବୁଲିଛନ୍ତି, ବାଘ, ହାତୀ ଦେଖିଛନ୍ତି; ହେଲେ ସହର ଦେଖି ନାହାନ୍ତି।

ଦୁଇଦିନ ଧରି ମୁଁ ଅତିଥି ଥିଲି ନୋଲିଂ ଯିରାଂଗ ଘରେ। ନୋଲିଂ ଚାକିରୀ କରେ ସହରରେ। ତେଣୁ ତା' ଘରେ ସୋରିଷ ତେଲ, ଚିନି ଓ ଅମୁଲ ସ୍ପ୍ରେ ଟିକିଏ ଲେଖା ମିଳେ। ନୋହିଲେ ଅନ୍ୟମାନଙ୍କ ଘରେ ଲୁଣ, ଆଲୁମିନିଅମ କେଟଲି ଏବଂ ଲୁହାର ହାତ ତିଆରି ଦୁଇ ଚାରୋଟି ସରଳ ହତିଆରକୁ ଛାଡ଼ିଦେଲେ ବଜାରରୁ କିଣା ଜିନିଷ କିଛି ନାହିଁ। ଧାନ ନିଜ ଆମଦାନି; ଘର ନିଜ ଶ୍ରମରେ ତିଆରିଛନ୍ତି; କପଡ଼ା ନିଜେ ବୁଣିଛନ୍ତି। ଚଟୁ, ଡଂକୀ ସବୁ ବାଉଁଶ ତିଆରି। ପନିପରିବା ସବୁ

Digitized by srujanika@gmail.com

ଜଂଗଲରୁ–ସେ ମାଂସ ହେଉ ବା ଶାଗ। ତେଲ, ମଶଲା ଚିନି ଖାଆନ୍ତି ନାହିଁ। ରୋଜ ସକାଳୁ ସ୍ତ୍ରୀଲୋକମାନେ ହାତ ଢିଂକିରେ ଧାନ କୁଟି ଚାଉଳ ବାହାର କରନ୍ତି; ଭାତ ରଂଧା ହୁଏ; ଆପଂଗ (ଚାଉଳ ମଦ) ତିଆରି ହୁଏ। ବଜାରରୁ ତାଂକର ନା କିଛି ଚିଜ କିଣିବାର ଅଛି, ନା ବିକ୍ରି କରିବାର ଅଛି। ପରିବାରର ପ୍ରତିଟି ଆବଶ୍ୟକତା ପୂରଣ ପାଇଁ ପରିବାରର ସଭ୍ୟମାନଂକର ସହଯୋଗ ହିଁ ଯଥେଷ୍ଟ। ପରିବାରରୁ କାମ ବଳିଲେ ଗାଁ। ସାହାଯ୍ୟ ପାଇଁ ଗାଁ ବାହାରକୁ ଯିବାର ଆବଶ୍ୟକତା ପଡ଼େ ନାହିଁ। ଗାଁର ଏହି ସ୍ୱୟଂ ସଂପୂର୍ଣ୍ଣତା ହେଲା ଆଦିବାସୀ ଅର୍ଥନୀତିର ମୂଳ ପିଣ୍ଡ, ସ୍ୱାଭିମାନର ଚାବି କାଠି।

ପରିଭ୍ରାମକ ଭାବରେ ମୋର ଅନୁଭବ ହେଲା, ପ୍ରଥମ ଚିହ୍ନାରେ ହିଁ ଯାହା ଘରେ ପହଂଚିବି, ଭାତ, ମାଂସ, ଆପଂଗ ନ ଖୋଇ ଛାଡ଼ିବେନି ଏବଂ ସେ ମଧ ପେଟପୁରା। ବାରଂବାର ଖାଇବାଟା ଥିଲା ମୋ ପରି ପରିଭ୍ରାମକ ପାଇଁ ସବୁଠାରୁ ବଡ଼ ସମସ୍ୟା। ଏହି ଭ୍ରମଣର କିଛି ଦିନ ଉତ୍ତାରୁ ଦିଲ୍ଲୀରେ ଜଣେ ପୁରୁଣା ବଂଧୁଂକ ସହ ପ୍ରାୟ ଦେଢ଼ ବର୍ଷ ପରେ ମୋର ଦେଖା ହେଲା। ତାଂକ ପ୍ରଥମ ବାକ୍ୟ ଥିଲା, ମାତ୍ର ପାଂଚ ମିନିଟ ସମୟ ହାତରେ ତାଂକର କଥାଭାଷା ପାଇଁ। ରହିବା, ଖାଇବା କଥା କିଏ ପଚାରେ! ଆୟେଂଗର ଅଧିବାସୀଂକ ତୁଳନାରେ ବଂଧୁଂକ ପାଖରେ ଅତି କମରେ ହଜାରେ ଗୁଣ ଅଧିକ ସଂପତ୍ତି ଏବଂ ଦୁଇ ହଜାର ଗୁଣ ଅଧିକ ଆଧୁନିକତା ଥିଲା। କେବଳ ନ ଥିଲା ବୋଇଲେ ହାତରେ 'ସମୟ' ଯାହା ତାଂକ ସେଆର ବିକା କିଣାରେ ବଂଧାପଡ଼ି ସାରିଥିଲା ବହୁଦିନରୁ।

ମୋର ଦୃଢ଼ ଧାରଣା, ଆୟେଂଗର ଅଧିବାସୀଂକୁ ବିଦେଶୀ ପରିବ୍ରାଜକ ଏବଂ ଦେଶୀ ଅତ୍ୟାଧୁନିକ ଲୋକ ସାହାଯ୍ୟରେ, ରଂଗୀନ ଟି.ଭି. ପରଦାରେ ଓ ଆଧୁନିକତା ନାଁରେ ଯଦି ପଇସା ଦେଖାଇ ନ ଦିଆଯାଏ ବା ବାରଂବାର କାନରେ କୁହାନ ଯାଏ : ତୁମେ ଗରିବ, ଅସଭ୍ୟ, ଅନୁନ୍ନତ, ଅଣ-ଆଧୁନିକ ଏବଂ ଅଣଆଧୁନିକ ହେବାଟା ଗୋଟାଏ ମସ୍ତବଡ଼ ଅପରାଧ, ତେବେ କଳ, କାରଖାନା, ଟି.ଭି. ଫ୍ରିଜ, କୁଲର ତୁଳନାରେ ନିଜର ସେହି ବଜାରଶୂନ୍ୟ ଶିଳ୍ପବିହୀନ ଜଂଗଲି ଜୀବନକୁ ହିଁ ସେମାନେ ଅଧିକ ପସଂଦ କରିବେ। ସେଠି ବଜାର ନାହିଁ; କଳକାରଖାନା ନାହିଁ; ସଭ୍ୟତା ଓ ଆଧୁନିକତା ନାହିଁ; ସାଂଗରେ ଗରିବି ନାହିଁ; ମାନସିକ ରୋଗୀ ନାହାନ୍ତି; ଚାଲି ଚଳଣିରେ କୃତ୍ରିମତା ନାହିଁ; ବରଂ ରହିଛି ଅନୁପମ ସ୍ନେହ ସୌହାର୍ଦ୍ଦ୍ୟ ଓ ସଂପ୍ରୀତି, ଅନ୍ୟକୁ ବୁଝିବାକୁ ହାତରେ ରହିଛି ପର୍ଯ୍ୟାପ୍ତ ସମୟ।

ଚଳଣି ପାଇଁ ଯେତିକି ଆବଶ୍ୟକ, ବେଶ ସେତିକି ଉତ୍ପାଦନ/ ସଂଗ୍ରହ କରନ୍ତି ସେମାନେ। ସାମାଜିକ ଅସୁରକ୍ଷାର ଆଳରେ କୁଢ଼ କୁଢ଼ ଧନ ସଂପତ୍ତି ଠୁଳ ରଖିବାର ପରଂପରା କିଂବା ଲୋଭ ନାହିଁ ତାଂକର। ବଢ଼ିଲା କ୍ଷେତ ଓ ଜଂଗଲ ତାଂକ ଆଗରେ।

Digitized by srujanika@gmail.com

ସବୁ ଆବଶ୍ୟକତା ପୂରଣ କରିବ ତାହା। ମାତ୍ର ତହିଁରୁ ଆବଶ୍ୟକତାର ପ୍ରତ୍ୟେକଟି କଣିକା ସଂଗ୍ରହ କରିବା ପାଇଁ ସେମାନଙ୍କୁ ଶାରୀରିକ ପରିଶ୍ରମ କରିବାକୁ ପଡ଼େ। ସହାୟତା ଓ ଆରାମ ପାଇଁ ଯନ୍ତ୍ରଶିଳ୍ପ ନଥାଏ ପାଖରେ। ଫଳରେ କୁଢ଼ କୁଢ଼ ଉତ୍ପାଦନ/ସଂଗ୍ରହ ହେବାର ଭୟ ନ ଥାଏ କି ବଜାର ଓ ଯନ୍ତ୍ରର ମାଲିକ ମାନବ ସଭ୍ୟତା ଓ ପ୍ରକୃତିର ମାଲିକ ରୂପେ ବଢ଼ି ଉଠିବାର ଆଶଂକା ନ ଥାଏ। ନିଜର ଆବଶ୍ୟକତା ବ୍ୟକ୍ତି ନିଜେ ପୂରଣ କରି ପାରୁଥିବାରୁ ତଥା ରାସ୍ତା ଘାଟରେ ସୁବିଧା ନଥିବାରୁ ବଜାର ବ୍ୟବସ୍ଥା ସୃଷ୍ଟି ହୋଇ ପାରେ ନା, ବଜାର ପାଇଁ ମାନସିକତା, ଅର୍ଥ ଏବଂ ସର୍ବୋପରି ଲୋଭ ସୃଷ୍ଟି ହୋଇ ପାରେ ନା।

ଏହା ଏମିତି ଏକ ସ୍ୱାଭାବିକ ବ୍ୟବସ୍ଥା ଯାହାକି ଉଭୟ ମାନବ ଓ ପ୍ରକୃତିର ସୁରକ୍ଷା କରେ, ଉଭୟଙ୍କର ପରସ୍ପର ପ୍ରତି ପରିପୂରକତା ସ୍ପଷ୍ଟ କରେ, ପୁଷ୍ଟ ବି କରେ। କୌଣସି ତାତ୍ତ୍ୱିକ ଆଦର୍ଶର ପ୍ରତିବଦ୍ଧତା ନେଇ ଏଠି ମାନବ ପ୍ରକୃତିର ରକ୍ଷା କରେ ନାହିଁ। ବରଂ ତା'ର ସୀମିତ ଅବଶ୍ୟକତା ପୂରଣ ପରେ ସୁଦ୍ଧା ପ୍ରକୃତିର କ୍ଷତି ହେଉ ନ ଥିବାରୁ, ସେ (ପ୍ରକୃତି) ସଂରକ୍ଷିତ ରହେ। ଆବଶ୍ୟକତା ପୂରଣ ପାଇଁ ତଥା ସାମାଜିକ ବିକାଶ ପାଇଁ ମାନବକୁ ଏଠି ନା ପ୍ରକୃତି ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ପଡ଼େ ନା ପ୍ରକୃତି ଉପରେ ବିଜୟ ଘୋଷଣା କରିବାକୁ ପଡ଼େ, ନା ବିଜୟ ଯୋଗୁ ଓ ବିକାଶ ନିମନ୍ତେ ମାନବ ସମାଜର ଗୋଟାଏ ବର୍ଗ ଅନ୍ୟ ବର୍ଗକୁ ଭୃତ୍ୟ ଓ ହେୟ ପ୍ରମାଣିତ କରେ !!

ଯଦି ସ୍ଥିର ହେଲା, ମଣିଷ ଅଧୀନରେ ଶିକାରୀ କୁକୁର ପରି ଉନ୍ନତ ଓ ମହଂଗା ଯନ୍ତ୍ର ରହିବ, ମାଲିକ ଓ ନିଜର ଆରାମ ପାଇଁ (କେବଳ ଅବଶ୍ୟକତା ପୂରଣ ପାଇ ନୁହେଁ।) ଯନ୍ତ୍ର ପ୍ରଥମେ ପ୍ରକୃତି ଏବଂ ତା ସାଂଗକୁ ଅର୍ଦ୍ଧାଧିକ ମଣିଷର ଶିକାର କରିବ, ତେବେ ପ୍ରକୃତି ଓ ସମାଜ ନଷ୍ଟ ହେବା ସ୍ୱାଭାବିକ। ତା ଉତ୍ତାରୁ ଯେତେ ପରିମାଣରେ ଦୂରଦର୍ଶନ ପରଦାରେ ପରିବେଶ ରକ୍ଷା କହେ 'ସିରିଆଲ' ଓ ସ୍କୁଲ ପାଠ୍ୟ ପୁସ୍ତକରେ ସାମାଜିକ ସମତା ରକ୍ଷା କହେ 'ନୀତିବାଣୀ' ପ୍ରଚାର କଲେ କିଛି ଲାଭ ନାହିଁ। ବରଂ 'ସିରିଆଲ' ଓ 'ନୀତିବାଣୀ' ଅର୍ଥର ସ୍ରୋତ ରୂପେ ସାମାଜିକ ବିଷମତାର ମାତ୍ରାକୁ ଆହୁରି ବୃଦ୍ଧି ଓ ବିକଟାଳ କରିବେ।

'ଆଯେଂଗ'ର ଉଦାହରଣରୁ ସିଦ୍ଧ ହୁଏ, ସମତା ଓ ସଂରକ୍ଷଣକୁ ଦୃଷ୍ଟିରେ ରଖି ଯଦି ଆଜି ଆମେ ବିକାଶ କଥା ଚିନ୍ତା କରିବା ତେବେ ଆଧୁନିକ ଯନ୍ତ୍ର ସଭ୍ୟତାର ପ୍ରତ୍ୟାଖ୍ୟାନ ହିଁ ଏକ ମାତ୍ର ପନ୍ଥା, ସୁରକ୍ଷିତ ବିକଳ୍ପ। ସେଥିପାଇଁ ସଭ୍ୟତାକୁ ପଛକୁ ଫେରିଯିବାକୁ ପଡ଼ିବ, ଶିଳ୍ପ ବିପ୍ଳବର ପଛକୁ, ଉପନିବେଶବାଦର ପଛକୁ, ବହୁରାଷ୍ଟ୍ରୀୟ କଂପାନୀର ପଛକୁ, ଉପଭୋକ୍ତାବାଦର ପଛକୁ! ଡଂକେଲ ପ୍ରସ୍ତାବର ପଛକୁ। ତା ପାଇଁ ଯେତେ କଷ୍ଟ କରିବାକୁ ପଡ଼ିବ ପଡୁ ପଛେ।

Digitized by srujanika@gmail.com

ମାତ୍ର ଏତେ ଆଗକୁ ବଢ଼ି ଆସିଲା ପରେ ପଛକୁ ଫେରିବା କ'ଣ ସଂଭବ? ଅସଂଭବ ନୁହେଁ। ଏବେ ସୁଦ୍ଧା ଗାଁ ସହର ତୁଳନାରେ ପଛରେ - ଆଧୁନିକତା କ୍ଷେତ୍ରରେ ପଛରେ, ହତ୍ୟା ଓ ଲୁଟତରାଚରେ ପଛରେ, କୃତ୍ରିମତାରେ ପଛରେ, ଦୂଷିତ ପରିବେଶ କ୍ଷେତ୍ରରେ ପଛରେ। ସମାଜର ଅର୍ଦ୍ଧାଧିକ ଲୋକ ଯଦି ଗାଁରେ ଏବଂ ଗାଁ ପୁଣି ପଛରେ, ତେବେ ସମାଜ ଆଗରେ ବୋଲି ଆମେ କହିବା କେମିତି? ବରଂ ଯନ୍ତ୍ର ସଭ୍ୟତାରୁ ଦୂରେଇ ରହିବାଟା ଯଦି ବିକାଶ ନିମନ୍ତେ ପ୍ରକୃତ ବିକଳ୍ପ, ସହର ଗାଁର ଅନୁକରଣ କରିବା କଥା।

ପରିବେଶ ବିଜ୍ଞାନୀ, ସମତାକାମୀ ପ୍ରତ୍ୟେକ ସାମାଜିକ ଓ ରାଜନୈତିକ କର୍ମୀଙ୍କୁ ଏ ଦିଗରେ କିଛି ନା କିଛି କରିବାକୁ ପଡ଼ିବ, ମୋଟର ସାଇକେଲ ସ୍ଥାନରେ ସାଇକେଲ, ଜିନ୍ ବଦଳରେ ଖଦି, ସହର ପରିବର୍ତ୍ତେ ଗାଁ, ସିମେଣ୍ଟ ଜାଗାରେ ମାଟିଘର, ପୁରି ପଲାଉ-ମାଂସକୁ ଏଡ଼ାଇ ସାଧା ଭାତ ଡାଲି ଏବଂ କୋଲ ଡ୍ରିଂକ୍ସକୁ ବାଦ ଦେଇ ପଇଡ଼, ଲେମ୍ବୁପାଣି, ବେଲ ପଣାକୁ ଆଦରି ନେବାକୁ ପଡ଼ିବ। ଏହା ସମାଜର ଅନ୍ୟମାନଂକ ଆଗରେ ଆଦର୍ଶ ରୂପେ ପ୍ରତିଭାତ ହେବ। ଫଳରେ ଗାଁ ଲୋକ ଏବଂ କେବେ କେବେ ସହର ଲୋକ ବି ବଜାରରୁ ଦୂରରେ ରହୁଥିବାର ଭୟରେ, କୁଟି ଖାଇ କାଟି ପିଂଧିବା 'ଅପରାଧ'ରେ, ସୁଖାରୁଖା ଦେଖାଯିବାର ଶଂକାରେ ଲଜ୍ଜିତ ହେବେ ନାହିଁ। ବରଂ ନିଜ କାର୍ଯ୍ୟରେ ସେମାନଂକ ସ୍ୱାଭିମାନ ବଢ଼ିବ। ନୋହିଲେ ସ୍ୱୟଂ ସଂପୂର୍ଣ୍ଣତାକୁ କୃପଣତାର ସଂକେତ ବୋଲି ଗ୍ରହଣ କରି ସେମାନେ 'ଆଧୁନିକ'ର ଦ୍ୱାର ଦେଶରେ ଦରିଦ୍ର ଭିଖାରୀ ସାଜିବେ। ଏ ଦୁରବସ୍ଥା 'ଆୟେଂଗ'ର ମଧ କିଛି ଦିନ ପରେ ହେବ - ଏହା ନିଃସଂଦେହ।

ପୁଣି, ସହରି, ଶିକ୍ଷିତ ସମାଜ ପାଇଁ ଚିନ୍ତିତ ବ୍ୟକ୍ତି ଯଦି ବିକାଶର ଏ ଅଣ-ଆଧୁନିକବାଲା ପନ୍ଥାକୁ ଆଦରି ନ ନେବେ 'ଅଶିକ୍ଷିତ' 'ଦରିଦ୍ର' ଏବଂ ଗାଁ ଲୋକଂକୁ ନିଜ ଅଣ-ଆଧୁନିକତା ପୂର୍ଣ୍ଣ ଜୀବନ ଶୈଳୀରେ ଆତ୍ମତୁଷ୍ଟୀ ଲାଭ କରିବାକୁ କହି କିଛିଲାଭ ନାହିଁ।

ଏକା ଡିଆଁରେ ପାଂଚଶହ ବର୍ଷ ପଛକୁ; ଆଧୁନିକ ସଭ୍ୟତାର ପଛକୁ ଫେରିବା ନିଶ୍ଚୟ ସହଜ ବ୍ୟାପାର ନୁହେଁ; ମାତ୍ର ନ ଫେରିବା ମଧ କେବେ ବୁଦ୍ଧିମାନର କାର୍ଯ୍ୟ ହେବ ନାହିଁ। ବରଂ ଯେଉଁମାନେ ଏତେ ପଛକୁ ଫେରିବା କଷ୍ଟ ବୋଲି ମନେ କରନ୍ତି, ଶହେ ବା ଦୁଇଶହ ବର୍ଷ ପଛକୁ ଫେରନ୍ତୁ, ଅଥବା ଶହେ ବର୍ଷ କଷ୍ଟକର ମନେ ହେଲେ କୋଡ଼ିଏ ତିରିଶ ବର୍ଷରୁ ପଛକୁ ଫେରି ଚାଲିଯାନ୍ତୁ। କାରଣ ଏବର ଯାତ୍ରା, ଶିଳ୍ପ ଓ ବଜାରର ଯାତ୍ରା, ପ୍ରଗତିର ଯାତ୍ରା ନୁହେଁ; ଦୁର୍ଗତିର ଯାତ୍ରା, ଧ୍ୱଂସର ଯାତ୍ରା, ମାନବ ସମାଜ ନଷ୍ଟ ବିନଷ୍ଟ ହେବାର ପ୍ରାକ-ସୂଚନା। ପଛକୁ ଫେରିଯିବା ମାନେ ଦୁର୍ଗତି ଓ ଧ୍ୱଂସରୁ ପଛକୁ ଫେରିଯିବା, ବିନଷ୍ଟତା ଓ ତୀବ୍ର

Digitized by srujanika@gmail.com

ପ୍ରତିଯୋଗିତାରୁ ପଛକୁ ଫେରିଯିବା, ଅସମତା ଓ ବିଷମତାରୁ ପଛକୁ ଫେରିଯିବା, ପ୍ରକୃତିର କୋଳକୁ ଫେରିଯିବା, ସ୍ୱାଭାବିକତାକୁ ଫେରିଯିବା। କେବଳ ଦିନକର ଦିନ ନୁହେଁ, ବର୍ଷ ସାରା ପ୍ରକୃତିର କୋଳକୁ ଫେରିବା, ବଜାରି ବିକାଶରେ ସାମିଲ ନ ହେବା ଏକ ବ୍ୟକ୍ତିଗତ ଆବଶ୍ୟକତା ମଧ୍ୟ। ଆଧୁନିକତାର ବିରୋଧ କରିବା, କଳ କାରଖାନାର ବିରୋଧ କରିବା, ବଜାର ବ୍ୟବସ୍ଥାର ବିରୋଧ କରିବା ବର୍ତ୍ତମାନ ପରିସ୍ଥିତିରେ ଆଉ ରକ୍ଷଣଶୀଳତା ନୁହେଁ, ବରଂ ସଂରକ୍ଷଣଶୀଳତା; ପ୍ରତିକ୍ରିୟାବାଦର ସଙ୍କେତ ନୁହେଁ, ବିକାଶର ବାସ୍ତବ ମାର୍ଗ। ଏ ଧରଣର ବିକାଶ ପାଇଁ ବ୍ୟକ୍ତିକୁ ନା ସରକାରର ସାହାଯ୍ୟ ନେବାକୁ ପଡ଼ିବ ନା ବିଶ୍ୱବ୍ୟାଙ୍କରୁ ଋଣ ! କାୟ ମନୋବାକ୍ୟରେ ସ୍ୱୟଂ ସଂପୂର୍ଣ୍ଣ, ତେଣୁ ଅନୁନ୍ନତ ଓ ଅଣ ଆଧୁନିକ ପଦବାଚ୍ୟ ଅରୁଣାଚଳ ଏବଂ ତା' ଆୟେଂଗକୁ ଆମକୁ ଆଦର୍ଶ ରୂପେ ଗ୍ରହଣ କରିବାକୁ ପଡ଼ିବ। ଯେଉଁଠି ଆୟେଂଗ ନାହିଁ; ସେଠି ନିପଟ ମଫସଲ ଗାଁ ହେଲେ ବି ଚଳିବ। ଯନ୍ତ୍ର ସଭ୍ୟତା ତଥାକଥିତ ଆରାମ ଆଣିବ, ତା' ସହିତ ନୂଆ ନୂଆ ବ୍ୟାଧିକୁ ଆଣିବ। ଅନ୍ତଲପେଟ, ମଧୁମେହ, ରକ୍ତଚାପ ଭଳି ଅଣ ସଂକ୍ରାମକ ସହିତ ଏଡ୍‌ସ୍ ଭଳି ସଂକ୍ରାମକକୁ ନିମନ୍ତ୍ରି ଆଣିବ। ଝରଣାର ସ୍ୱଚ୍ଛ ପାଣି ବଦଳରେ ବଜାର ସର୍ବସ୍ୱ ବୋତଲ ପାଣି ମିଳିବ। ଏୟାର କୁଲରର ଶୀତଳତା ମିଳିବ ମାତ୍ର ଅମୂଲ୍ୟଜାନ ସେଥିରେ ନଥିବା ମଣିଷ ହୋଇପଡ଼ିବ ପ୍ରକୃତି ଛଡ଼ା, ପାଲଟିବ ଯନ୍ତ୍ରମଣିଷ, ଖଣିଜ ମଣିଷ; ରକ୍ତ ମାଂସର ଆବେଗମୟ ମଣିଷ ନୁହେଁ।

(୧୯୯୪)

◆◆

Digitized by srujanika@gmail.com

# ଅରୁଣାଚଳର କେବାଂଗ ଓ ବିକଳ୍ପ ବିଚାର ବ୍ୟବସ୍ଥା

ଅରୁଣାଚଳର ରାଜଧାନୀ ଇଟାନଗରରେ ବିଗତ ଛଅ ବର୍ଷର ଦୀର୍ଘ ରହଣି ଭିତରେ କଳା କୋଟଧାରୀ ଓକିଲଟାଏ ଦେଖିବାର କେବେ ମୁଁ ସୁଯୋଗ ପାଇନାହିଁ। ରାଜଧାନୀର ଏଭଳି ସ୍ଥିତିରୁ ବାକୀ ସହରର କଳାକୋଟ କଥା ସହଜରେ ଅନୁମାନ କରିହେବ। ଏହାର ଅର୍ଥ ନୁହେଁ ଯେ ଲୋକଙ୍କ ଭିତରେ ଏଠି କଳି ଗୋଳମାଳ ନାହିଁ। ପ୍ରତ୍ୟେକ ଗ୍ରାମିଣ ସମାଜ ପରି ଏଠି ମଧ୍ୟ ଲୋକଙ୍କ ଭିତରେ ଝଗଡ଼ା ଝାଟି ଅଛି, ମନାନ୍ତର ମତାନ୍ତର ଘଟୁଛି। ମାତ୍ର ମାମଲାର ସମାଧାନ ପାଇଁ ଲୋକେ ସରକାରୀ ଅଦାଲତକୁ ଯାଉ ନାହାନ୍ତି; 'କେବାଂଗ' ବା ପ୍ରଚଳିତ ଗ୍ରାମ ପଂଚାୟତର ଦ୍ୱାରସ୍ଥ ହେଉଛନ୍ତି। ଫଳରେ ସହରରେ ସରକାରୀ ଅଦାଲତ ନାହିଁ, ସ୍ୱତନ୍ତ୍ର ବିଚାରପତି ନାହାନ୍ତି, ମଝି ସହରରେ ବୁଢ଼ା ବରଗଛ ନାହିଁ, କି ତା' ମୂଳରେ ଓକିଲ ଓ ମହକିଲଂକ ଭିଡ଼ ନାହିଁ। ଯାଁ ଭାଁ କେତୋଟି ମୋକଦ୍ଦମାର ଶୁଣାଣି ବାରଂବାର ତାରିଖ ଘୋଷଣା କରିବା ପାଇଁ ପ୍ରଶାସନର ଏସ.ଡ଼ି.ଓ, କଲେକ୍ଟର ଯଥେଷ୍ଟ। ନ୍ୟାୟର ସ୍ରୋତ ରୂପେ ସବୁ କ୍ଷେତ୍ରରେ କେବାଂଗର ମହତ୍ତ୍ୱ ପ୍ରତିଭାତ ଓ ପ୍ରତିପାଦିତ ହେଉଛି। ଅରୁଣାଚଳର ଯେଉଁ ଜଣେ ଦି ଜଣ ଛାତ୍ର ଆଇନ୍ ଡିଗ୍ରୀ ପଢ଼ିବା ପାଇଁ ଦିଲ୍ଲୀ, ଗୌହାଟୀ ଯାଉଛନ୍ତି, ପେଟ ପୋଷିବା ପାଇଁ ସେମାନଂକୁ ସେହି ଗୌହାଟୀ, ଡିବ୍ରୁଗଡ଼ ଆଦି ବାହାର ସହରରେ କଳାକୋଟ ପିଂଧି ବୁଲିବାକୁ ପଡୁଛି। ସାଧାରଣ ଗୋଳମାଳଠାରୁ ଆରଂଭ କରି ଜଟିଳ ମାଲିମୋକଦ୍ଦମାର ବିଚାର କେବାଂଗରେ ସମାହିତ ହେଉଛି। କେବେ କେବେ ଏମିତି ହେଉଛି ମୁଦେଇ ପକ୍ଷ ସରକାରୀ ଅଦାଲତକୁ ମାମଲା ଟାଣିବା ପାଇଁ ଆଗ୍ରହ ଦେଖାଉଛି, ମାତ୍ର ସାମାଜିକ ଓ ପାରିପାର୍ଶ୍ୱିକ ଚାପ ଏତେ ବେଶି ଯେ, ତାହା ସଂଭବପର ହେଉନାହିଁ।

କେବାଂଗର ଗଠନ ଓ କାର୍ଯ୍ୟ ପ୍ରଣାଳୀ ନିପଟ ମଫସଲ ହେବା ଯୋଗୁଁ ଅପନ୍ତରା ବୋଲାଉଥିବା ଗାଁର ପଂଚାୟତ ପରି। କେବାଂବଆବୁ ବା ବୁଲିୟାଂଗ ବା ଗାଁର ବୟୋଜ୍ୟେଷ୍ଠ ବ୍ୟକ୍ତିମାନଂକ ତତ୍ତ୍ୱାବଧାନରେ କେବାଂଗ ପରିଚାଳିତ। ବୈଠକ ଚାଲେ 'ମୋସୁପ' ବା 'ଦେରେ' ନାମକ ଗ୍ରାମର ସାର୍ବଜନୀନ ଗୃହରେ। କେବାଂଗ ଆବୁର କୌଣସି ବିଶେଷ କ୍ଷମତା ନଥାଏ; ତାର କୌଣସି ଅଫିସ ନ ଥାଏ; କିଂବା ସେଥିରେ ସାମିଲ ହେବା ପାଇଁ କୌଣସି ଜାତିଗତ ବା ଜନ୍ମଗତ ଯୋଗ୍ୟତାର ଆବଶ୍ୟକତା ନ ଥାଏ। ଗ୍ରାମର ସାମୂହିକ ଉନ୍ନତି କଳ୍ପେ ଯଦ୍ ସାମାନ୍ୟ ସମୟ ଦେଉଥିବା,

Digitized by srujanika@gmail.com

ସାମାଜିକ ରୀତି ନୀତି ଜାଣିଥିବା ବୟୋଜ୍ୟେଷ୍ଠମାନେ ହିଁ ଏହାର ଅଂଗ। ମନୋନୟନ ସଂପୂର୍ଣ୍ଣରୂପେ ବ୍ୟକ୍ତିର ବୟସ, ଅଭିଜ୍ଞତା ଓ ଗାଂଭୀର୍ଯ୍ୟ ଉପରେ ନିର୍ଭର କରେ। ଯଦିଓ କେବାଂଗ-ଆବୁ ପଂଚାୟତର ତତ୍ତ୍ୱାବଧାରକ, ଅନ୍ୟମାନେ ମଧ୍ୟ କେବାଂଗରେ ଅଂଶ ଗ୍ରହଣ କରିବା ପାଇଁ ସଂପୂର୍ଣ୍ଣ ଅଧିକାର ପ୍ରାପ୍ତ। କେବାଂଗ-ଆବୁ କେବାଂଗର ସଭାପତି ତୁଲ୍ୟ ସମ୍ମାନାସ୍ପଦ, ମାତ୍ର ସ୍ୱତନ୍ତ୍ର ଅଧିକାରରହିତ। ପଦ ସହିତ ବିଶେଷ ସୁଖ ସୁବିଧା ନ ଥିବାଟା ପଦବୀ ପାଇଁ ବ୍ୟକ୍ତି ବିଶେଷକୁ ଲାଳାୟିତ କରେ ନାହିଁ। ପୁଣି କେବାଂଗ ଆବୁ କେତେଜଣ ବ୍ୟକ୍ତିଂକୁ ନେଇ ଗଠିତ। ପଂଚାୟତରେ କାହାରି ଏକଚାଟିଆ କାରବାର ନାହିଁ। ତେଣୁ କେବାଂଗର ନିଷ୍ପତ୍ତି କେବଳ କେବାଂଗ ଆବୁର ନୁହେଁ, ପ୍ରକୃତ ପକ୍ଷେ ଗାଁର ସମ୍ମିଳିତ ସ୍ୱର, ସେ ଭଲ ହେଉ ବା ଖରାପ। କେବଳ ମାଲିମୋକଦ୍ଦମା କାହିଁକି, ଗାଁର ସାଧାରଣ ପ୍ରଶାସନ, ସୁବିଧା ସୁଯୋଗ କଥା, ସୁରକ୍ଷାର ଦାୟିତ୍ୱ ମଧ୍ୟ କେବାଂଗ ହାତରେ। ତେଣୁ ତାତ୍ତ୍ୱିକ ଆଲୋଚନାରେ କେବଳ ହେଉପଛେ, ଆଧୁନିକ ସଭ୍ୟତା ପ୍ରଶାସନ, ଆଇନ ପ୍ରଣୟନ ଓ ବିଚାର ବ୍ୟବସ୍ଥାକୁ ଭିନ୍ନ ଭିନ୍ନ ସଂସ୍ଥା ହାତରେ ଦେବାକୁ ସଂକଳ୍ପବଦ୍ଧ ଥିବା ବେଳେ ଏଠି ତିନୋଟି ଯାକ କ୍ଷମତାର ସ୍ରୋତ ଏକ ମାତ୍ର କେବାଂଗ। ତାପରେ ସୁଦ୍ଧା କ୍ଷମତା ବିକେନ୍ଦ୍ରୀତ।

କେବାଂଗରେ ବିଚାର ବେଳେ ଉଭୟ ପକ୍ଷକୁ ନିଜ ନିଜର ପକ୍ଷ ପ୍ରତିପକ୍ଷ ପେଶ କରିବା ପାଇଁ ଅନୁମତି ଦିଆଯାଏ। ଉପସ୍ଥିତ ଗ୍ରାମବାସୀଗଣ ନିଜ ନିଜର ଇଚ୍ଛା ମତେ ଯୁକ୍ତି ସବୁ ବାଢ଼ନ୍ତି। କୌଣସି ପକ୍ଷର ଯୁକ୍ତି ବାକୀ ଥିବା ଯାକେ ନିଷ୍ପତ୍ତି ନିଆଯାଏ ନାହିଁ। ବିଚାର ଆଲୋଚନାରୁ ହିଁ ସିଦ୍ଧ ହୁଏ ଦୋଷୀ କିଏ ଏବଂ ଦୋଷର ମାତ୍ରା କେତେ। ଅପରାଧର ସ୍ୱରୂପ ଏବଂ ଅପରାଧୀର ରୂପ ସଂପର୍କରେ ଗ୍ରାମବାସୀଂକର ଯତ ସାମାନ୍ୟ ଧାରଣା ଥିବାରୁ ଏବଂ ପ୍ରତ୍ୟେକ ବ୍ୟକ୍ତି ବିଚାର ଆଲୋଚନାରେ ସକ୍ରୀୟ ଅଂଶ ଗ୍ରହଣ କରୁଥିବାରୁ ଦୋଷ ସ୍ୱୀକୃତ ହେବାରେ ଅଧିକ ସମୟ ଲାଗେ ନାହିଁ। ଏଥିପାଇଁ ନା ପୋଲିସର ତୃତୀୟ ଡିଗ୍ରୀର ଆବଶ୍ୟକତା ପଡ଼େ ନା ମିଛ ସାକ୍ଷୀର ଖର୍ଚ୍ଚ ବହନ କରିବାକୁ ପଡ଼େ। ଅଂଧ ହାତରେ ଝୁଲୁଥିବା ନିକିତି ପରି ଏଠି ନ୍ୟାୟ ଓ ନ୍ୟାୟକାରୀ ଅଂଧ ନୁହନ୍ତି; ବରଂ ତାଂକର ଅନେକ ଆଖି। ତାକୁ ଏଡ଼ାଇ ଯିବାର ବାଟନାହିଁ। ତାପରେ ସୁଦ୍ଧା ଯଦି ସତ୍ୟ ଅନାବିଷ୍କୃତ ରହେ, ଆଦିବାସୀ ରୀତିରେ ସତ୍ୟ ଉଦ୍‌ଘାଟନ ପାଇଁ ଦୈବୀ ଶକ୍ତିକୁ ଆବାହନ କରାଯାଏ। ଦୈବୀ ଶକ୍ତିର ନିଷ୍ପତ୍ତିକୁ ଚୂଡ଼ାନ୍ତ ସତ୍ୟ ବା ରାୟ ବୋଲି ଗ୍ରହଣ କରାଯାଏ।

ଏଠି ନିଶିଂ ଆଦିବାସୀ ସଂପ୍ରଦାୟର ଦୈବୀ ଆବାହନ ପଦ୍ଧତିକୁ ଉଦାହରଣ ସ୍ୱରୂପ ନିଆଯାଇପାରେ। ଏହି ରୀତି ଅନୁଯାୟୀ ଭଗବାନଂକୁ ସାକ୍ଷୀ ରଖି ଅଭିଯୁକ୍ତ

Digitized by srujanika@gmail.com

ଗରମ ପାଣିରେ ହାତକୁ ବୁଡ଼େଇ ରଖେ। ଯଦି ସେ ଦୋଷୀ, ହାତ ପୋଡ଼ି ଯାଏ; ଯଦି ଦୋଷୀ ନୁହେଁ, କିଛି କ୍ଷତି ହୁଏ ନାହିଁ। ଯଦି ଅଭିଯୁକ୍ତ ମିଛ ଅଭିଯୋଗର ଶିକାର ବୋଲି ସିଦ୍ଧ ହୁଏ, ତେବେ ଅଭିଯୋଗକାରୀଙ୍କୁ ସମପରିମାଣର ଦଣ୍ଡ ଭୋଗ କରିବାକୁ ପଡ଼େ। ତେଣୁ ଉଭୟ ଅଭିଯୁକ୍ତ ଓ ଅଭିଯୋଗକାରୀ ମଧ୍ୟରେ ଦୈବୀ ଆବାହନର ପ୍ରକ୍ରିୟା ରହସ୍ୟୋଦଘାଟନ ପାଇଁ ମାନସିକ ଚାପ ସୃଷ୍ଟି କରେ। ଅର୍ଥାତ୍ ସତ୍ୟ ଏବଂ ତାର ଉଦ୍‌ଘାଟନ ପରେ ଦୋଷୀ ଉପରେ ଦଣ୍ଡ ପ୍ରୟୋଗ ନିଶ୍ଚିତ ହୋଇଥିବା ଯୋଗୁଁ ଦୈବୀ ଶକ୍ତି ଆବାହନ ପ୍ରକ୍ରିୟା ଆରଂଭ ହେବା ପୂର୍ବରୁ ଦୋଷୀ ଦୋଷ ସ୍ୱୀକାର କରିଯାଏ। ଆଦିବାସୀ ଜୀବନଦୃଷ୍ଟି ଏବଂ ବିଶ୍ୱାସ ପ୍ରଣାଳୀକୁ ଅଲଗା ରଖି ଏହି ପଦ୍ଧତିକୁ ଏବଂ ତାର ଉପାଦେୟତାକୁ ହୃଦୟଂଗମ କରାଯାଇପାରେନା।

ଅରୁଣାଚଳର ଆଦିବାସୀ ବିଚାର ପ୍ରଣାଳୀରେ ଅପରାଧୀକୁ ଦଣ୍ଡ ମିଳିବା ଯେମିତି ଏକ ସ୍ୱାଭାବିକ ପ୍ରକ୍ରିୟା, ଅପରାଧୀ ମନରେ ପ୍ରତିଶୋଧ ପରାୟଣ ଭାବ ବା ଅପରାଧୀ ମନୋଭାବକୁ ସବୁ ଦିନିଆ ସମସ୍ୟାରେ ପରିଣତ ନ କରିବା ବି ସେମିତି ଏକ ସ୍ୱାଭାବିକ ଉଦ୍ଦେଶ୍ୟ। ତେଣୁ ମୃତ୍ୟୁ ଦଣ୍ଡ, ଜେଲ ଦଣ୍ଡ ବା ଚାବୁକ ମାଡ଼ ଆଦି କେବାଂଗ ଦଣ୍ଡ ପ୍ରକ୍ରିୟାରେ ଅନ୍ତର୍ଭୁକ୍ତ ନୁହନ୍ତି। ପକ୍ଷକୁ କ୍ଷତିପୂରଣ ଦେବା ବା ତା ଉପରେ ସଂଘଟିତ ହୋଇଥିବା ଅନ୍ୟାୟର ଆଶୁ ପ୍ରତିକାର କରିବା ହେଲା ଏହି ନ୍ୟାୟର ମୁଖ୍ୟ ଉଦ୍ଦେଶ୍ୟ। ତେଣୁ ପ୍ରାୟ କ୍ଷେତ୍ରରେ ଦୋଷୀକୁ ଅର୍ଥଦଣ୍ଡହିଁ ମିଳିଥାଏ। ଲବ୍ଧ ଅର୍ଥ ଅଭିଯୁକ୍ତ ପାଖକୁ ଯାଏ। ଅର୍ଥ ଦଣ୍ଡ ଦେଲା ପରେ ଅପରାଧୀ ସ୍ୱକୃତ ଅପରାଧ ପାଇଁ ପୁଣି ସର୍ବଶକ୍ତିମାନଂକ ଦରବାରରେ ଦଣ୍ଡିତ ନ ହେବାର ଆଶା ରଖୁଥିବାରୁ, କେବାଂଗର ନିଷ୍ପତ୍ତିକୁ ଗ୍ରହଣ କରିବାରେ ଅବହେଳା କରେ ନାହିଁ। ତେଣୁ ଏ କ୍ଷେତ୍ରରେ ମଧ୍ୟ ଆଦିବାସୀର ସରଳ ଜୀବନ ଦୃଷ୍ଟି ଏବଂ ବିଶ୍ୱାସ ପ୍ରଣାଳୀରେ ହିଁ କେବାଂଗର ସଫଳତା ନିର୍ଭର କରେ। ସର୍ବଶକ୍ତିମାନ ଈଶ୍ୱର ଏବଂ ତାର ଅଦାଲତ ଉପରେ ବିଶ୍ୱାସ ରଖୁନଥିବା ଆଧୁନିକ ବିଜ୍ଞାନବାଦୀ ମଣିଷକୁ ଏହି ପ୍ରଣାଳୀ ଅବାସ୍ତବ ମନେହେବା କିଛି ଅସ୍ୱାଭାବିକ ନୁହେଁ।

ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଲା ନିଷ୍ପତ୍ତି ପାଇଁ ବ୍ୟୟ ହେଉଥିବା ସମୟର ସ୍ୱଳ୍ପତା। ପ୍ରାୟ କ୍ଷେତ୍ରରେ କେବାଂଗ ଗୋଟାଏ ବୈଠକରେ ବା ଅତି ବେଶି ହେଲେ ଦୁଇ ତିନିଗୋଟି ବୈଠକରେ ଅଭିଯୋଗ ଆସିବା ଦିନ ହିଁ ମାମଲାର ବିଚାର କରିଦିଏ। ଏଥିପାଇଁ ପାଂଚଦଶ ବର୍ଷ ସମୟର ଆବଶ୍ୟକତା ପଡ଼େ ନାହିଁ କି ନିଷ୍ପତ୍ତି ପାଇଁ ଉଭୟ ପକ୍ଷକୁ ସର୍ବସ୍ୱାନ୍ତ ହେବାଯାଏ ଅପେକ୍ଷା କରିବାକୁ ପଡ଼େ ନାହିଁ। ଅଥବା ସେମାନଂକୁ ସର୍ବସ୍ୱାନ୍ତ କରି ଓକିଲ ଓ ବିଚାରକ ନାମକ ଦୁଇଟି ପରଜୀବି ଗୋଷ୍ଠୀ ଉତ୍ତରୋତ୍ତର ଉନ୍ନତି ଲାଭ କରନ୍ତି ନାହିଁ। ପୁଣି, କଳହ ଏବଂ କେବାଂଗରେ ତାର ନିଷ୍ପତ୍ତି ପରେ ଉଭୟ ପକ୍ଷ ମଧ୍ୟରେ ଆପୋଷ ମିଳାମିଶାର

Digitized by srujanika@gmail.com

ଅନ୍ତରଂଗ ସଂପର୍କ ଗଢ଼ି ଉଠେ। କିଛି ଦିନ ତଳେ ଦୁଇଜଣ ବ୍ୟକ୍ତିଂକ ମଧ୍ୟରେ କଳହ ଏବଂ ତାର ଅଳ୍ପ ଦିନ ପରେ ସ୍ୱାଭାବିକ କଥାବାର୍ତ୍ତା ଦେଖି ମୋର ତ ବିଶ୍ୱାସ ହେଉ ନ ଥିଲା ଯେ ଉଭୟ ଘଟଣା ସମଭାବରେ ସତ। ଏହା ସାଧାରଣ ଜୀବନରେ ଜଣଙ୍କ ପାଇଁ ଅନ୍ୟର ପରିପୂରକତା ଦର୍ଶାଇବା ସଂଗେ ସଂଗେ ପୁଂଜିବାଦୀ ସମାଜର ତୀବ୍ର ପ୍ରତିଯୋଗିତା—ମଣିଷ ଓ ଅନ୍ୟ ପ୍ରାଣୀ ଭିତରେ, ରାଷ୍ଟ୍ର ଓ ରାଷ୍ଟ୍ର ମଧ୍ୟରେ ଏବଂ ସର୍ବୋପରି ମଣିଷ ଓ ଅନ୍ୟ ପ୍ରାଣୀ ଭିତରେ—ଯନ୍ତ୍ର ସଭ୍ୟତା ତୁଲ୍ୟ ସଂପୂର୍ଣ୍ଣରୂପେ ମଣିଷକୃତ ବୋଲି ଧାରଣାକୁ ଦୃଢ଼ କରେ।

ଆଧୁନିକ ନ୍ୟାୟ ପ୍ରଣାଳୀର ଏକ ବିଶେଷ ଲକ୍ଷ୍ୟ ହେଲା, ନିରପରାଧକୁ ଦଣ୍ଡ ନ ଦେବା। ଏହି ଲକ୍ଷ୍ୟ ପୂରଣ ପାଇଁ ଶହେ ଅପରାଧୀ ପଛେ ମୁକ୍ତି ପାଇ ଯାନ୍ତୁ, କିଛି ଯାଏ ଆସେ ନାହିଁ। କିନ୍ତୁ ଏବେ ବାସ୍ତବିକତା ହେଲା ଯେ, ନିରପରାଧକୁ ଦଣ୍ଡ ନ ମିଳିବା କଥା ତ କହି ହେବ ନି, ମାତ୍ର ଶହେ ଅପରାଧୀଂକ ଛାଡ଼ ପାଇବା ନିଶ୍ଚିତ। ବିଚାରପତି ଯେତେ ଧର୍ମ ପୁରୁଷ ହୁଅନ୍ତୁ ନା କାହିଁକି, ବିଚାର ବ୍ୟବସ୍ଥାରେ ଏତେ ଝରକା କବାଟ ଯେ ତାକୁ ଠେଲିଠାଲି ପଶିବା ପାଇଁ ଯେତେ ପରିମାଣର ଶକ୍ତି ଦରକାର ସାଧାରଣ ବ୍ୟକ୍ତିର ତାହା ନାହିଁ। ଅର୍ଥର ବିନା ସହାୟତାରେ କବିତା ଓ ଲତା ପରି ସେ ନିରାଶ୍ରୟ। ଅନ୍ୟ ପକ୍ଷରେ ପିଂଜରା ବନ୍ଧ ପକ୍ଷୀ ପରି ନ୍ୟାୟ ତଳ କୋର୍ଟରୁ ଉପର କୋର୍ଟ, ସେଠୁ ପର ଏବଂ ତା ଉପର କୋର୍ଟ ହୋଇ ନ୍ୟାୟ ପିପାସୁ ସାଂଗରେ ଲୁଚକାଳି ଖେଳୁଛି। ପରିଣାମ ସ୍ୱରୂପ ଅର୍ଥବଳରହିତ ପକ୍ଷ, ନ୍ୟାୟ ପ୍ରଣାଳୀର ଦ୍ୱାର ମାଡ଼ି ପାରୁ ନାହିଁ ଏବଂ ଅର୍ଥବଳରେ ବଳବାନ ପକ୍ଷ ଦୁଃସାହସୀ ଓ ଦୁରାଚାରୀ ହୋଇ ପଡୁଛି। ନ୍ୟାୟର ମାୟା ମୃଗକୁ କବ୍ଜା କରିବାର ସାମର୍ଥ୍ୟ ତା ପାଖରେ ଅଛି। ଆବଶ୍ୟକ ସ୍ଥଳେ ସଉକିରେ ଅନ୍ୟାୟ କରିବାକୁ ସୁଦ୍ଧା ସେ ପଛାଇବ ନାହିଁ। ମୋଟ କଥା ହେଲା ଆଧୁନିକ ବିଚାର ବ୍ୟବସ୍ଥାରେ ନୀତିଗତ ଦୃଷ୍ଟିରୁ ସମାନତା ଥିଲେ ସୁଦ୍ଧା, ଜଟିଳତା ଏତେ ଅଧିକ ଯେ ତାହା ବିଷମ ମନେ ହେଉଛି।

ଜୈବାଂଗ ପ୍ରଣାଳୀ ଏହାର ଠିକ ଓଲଟା। ଚିରାଚରିତ ଆଦିବାସୀ ସମାଜରେ ତ ଧନୀ ଦରିଦ୍ରର ପ୍ରଭେଦ ନ ଥାଏ। ଏବେ ଯେଉଁଠି ପ୍ରଭେଦ ବି ରହୁଛି, ଦଣ୍ଡାଦେଶ ଅପରାଧୀର ଆର୍ଥିକ ସ୍ୱଚ୍ଛଳତାକୁ ଦୃଷ୍ଟିରେ ରଖି ସ୍ଥିର ହେଉଛି। ଅର୍ଥାତ୍ ଅପରାଧ ସାଧାରଣ ହୋଇଥିବା ସ୍ଥଳେ ଅପରାଧୀ ଅସାଧାରଣ ବା ସ୍ୱଚ୍ଛଳ ହେଲେ ଅର୍ଥ ଦଣ୍ଡର ମାତ୍ରା ଅଧିକ ହେବାର ପୂର୍ଣ୍ଣ ସଂଭାବନା ରହୁଛି। ବିଚାରକମଣ୍ଡଳୀ ଯେହେତୁ ସ୍ଥାନୀୟ ଅପରାଧୀର ଆର୍ଥିକ ସ୍ଥିତିର ପ୍ରମାଣ ପାଇଁ କୌଣସି ପ୍ରମାଣ ପତ୍ରର ଆବଶ୍ୟକତା ରହୁ ନାହିଁ। ଫଳ ସ୍ୱରୂପ ଅନେକ କ୍ଷେତ୍ରରେ ଆଜିକାଲି

Digitized by srujanika@gmail.com

ଧନୀ ଲୋକ ଚାହୁଁଛନ୍ତି ମାମଲା ସରକାରୀ କୋର୍ଟକୁ ଯାଉ; କେବାଂଗରେ ନ ରହୁ। କାରଣ କେବାଂଗ ହାତରୁ ଖସି ଯିବାର ରାସ୍ତା କମ୍ ସୀମିତ, ସଂକୀର୍ଣ୍ଣ–ପ୍ରାୟ ନାହିଁ।

ଦୋଷ ବାରିବା ଲୋକ ଏବଂ ସରକାରୀ ଅଦାଲତରୁ ଫାଇଦା ମାରିବା ଲୋକ (କେବଳ ଓକିଲ ଓ କୋର୍ଟବାବୁ ନୁହଁନ୍ତି, ପ୍ରତ୍ୟେକ ଶିକ୍ଷିତ, ସହରି ଏବଂ ଧନବାନ ଜଣେ ଅଶିକ୍ଷିତ, ଗାଉଁଲି ଏବଂ ଦରିଦ୍ର ତୁଳନାରେ ଏ ଫାଇଦାର ଭାଗୀଦାର।) ଯେ କେବାଂଗ ନ୍ୟାୟ ପ୍ରଣାଳୀରେ ଭୂଲ ଭଟକା ଦେଖିବେ ଏଥିରେ ସଂଦେହ ନାହିଁ ଏବଂ କେତେ ଗୋଟି ଭୂଲ ରହିବା ବି ଅସ୍ୱାଭାବିକ ନୁହେଁ। ମାତ୍ର ଆଧୁନିକ ଅଦାଲତ ତୁଳନାରେ ଏହା ଅନେକ ଗୁଣରେ ଭଲ। ପକ୍ଷ ବା ପ୍ରତିପକ୍ଷକୁ ସମର୍ଥନ ଜଣାଇ ଯୁକ୍ତି କରିବା ଲୋକ ଏଠି ନିଜ ବିବେକକୁ ପଚାରି ଯୁକ୍ତି କରେ। 'ଫିସ୍' ମିଳିଲେ ଓକିଲ ପରି ସେ ଯେ କୌଣସି ପକ୍ଷକୁ ନିଜ ସମର୍ଥନ ଦେଇ ପାରେ ନାହିଁ। ପଇସା ମିଳିଲେ ନିଜ ପକ୍ଷକୁ ସଂପୂର୍ଣ୍ଣ ନିର୍ଦ୍ଦୋଷ ଏବଂ ପ୍ରତିପକ୍ଷକୁ ସର୍ବଦା ଦୋଷଯୁକ୍ତ ବୋଲି ସେ ପ୍ରମାଣ ପେଶ୍ କରେ ନା। ଅର୍ଥ ଲୋଭରୁ ଦୂରରେ ରହି ଅମୂର୍ତ୍ତ ନ୍ୟାୟ ଓ ସତ୍ୟ ପ୍ରତିଷ୍ଠା ପାଇଁ ସେ କୃତସଂକଳ୍ପ। ଦ୍ୱିତୀୟରେ ଅପରାଧ ଯାହା ଏବଂ ଅପରାଧୀ ଯେ କେହି ହେଉନା କାହିଁକି, କେବାଂଗର ସରଳ ଗ୍ରାମୀଣ ନ୍ୟାୟ ପ୍ରଣାଳୀ ଯୋଗୁଁ ଉଭୟ ପକ୍ଷ ଆଶ୍ୱସ୍ତ ହୁଅନ୍ତି। ବିଚାରକ ମଣ୍ଡଳୀର ଅବୁଝା ଭାଷା ତଥା ବିଚାରଗୃହର ଜଟିଳ ପରିବେଶ ସେମାନଂକୁ ଭାବହୀନ, ଶକ୍ତି ବିହୀନ କରି ପକାଏ ନାହିଁ। ନୋହିଲେ ଅରୁଣାଚଳର ସରଳ ଆଦିବାସୀ ଆଧୁନିକ ଆଇନର ଜାଲ, ଅଦାଲତର ଜଂଜାଳ ଏବଂ ଆଇନଜ୍ଞର କବଳରୁ ମୁକ୍ତି ଓ ନ୍ୟାୟ କଥା ଆଜି ଚିନ୍ତା କରି ପାରନ୍ତା ନାହିଁ।

ପ୍ରଶ୍ନ ଉଠେ, ଆଧୁନିକତା ଏବଂ ତାର ସମସ୍ତ ଗୁଣ ଅବଗୁଣକୁ ଆମନ୍ତ୍ରଣ କରି ଆଜି ଯେତେବେଳେ ପ୍ରତ୍ୟେକ ସମାଜ ବଢ଼ି ଚାଲିଛି ଏପରି ଏକ ସରଳ ଅଣ-ଆଧୁନିକ ଆଇନ ବ୍ୟବସ୍ଥା କ'ଣ ବେଶି ଦିନ ତିଷ୍ଠି ପାରିବ? ଦ୍ୱିତୀୟରେ, ଯେଉଁ ସମାଜ ଏଭଳି ସରଳ ଆଇନ ଅବସ୍ଥାରୁ ବଂଚିତ, ତାହିଁଲେ କ'ଣ ସେଠି ଏହାକୁ ପ୍ରତିଷ୍ଠା କରାଯାଇ ପାରିବ? ତୃତୀୟରେ ଆଧୁନିକତା ସାଂଗରେ ତାଳ ଦେଇ ଏ ବ୍ୟବସ୍ଥା କ'ଣ ବଂଚି ପାରିବ?

ଅରୁଣାଚଳର କେବାଂଗର ସଫଳତାକୁ ଅଧ୍ୟୟନ କଲେ ମନେହୁଏ ଏଠିକା ସମାଜର ଶ୍ରେଣୀହୀନ, ଜାତିହୀନ ଭାବ ଏବଂ ନିର୍ଲୋଭ ମନୋଭାବ ହିଁ ଏହାର ମୁଖ୍ୟ କାରଣ। ଭୂଲ ପାଇଁ ଶାସ୍ତି ଗ୍ରହଣ ହେଉଛି ଚିରାଚରିତ ଆଦିବାସୀ ବିଶ୍ୱାସ ରାଜ୍ୟର ଏକ ଦୃଢ଼ ମାଇଲ ଖୁଣ୍ଟ। ଗ୍ରାମରେ, ସମାଜରେ ଅମୂର୍ତ୍ତ ନ୍ୟାୟ ଓ ସତ୍ୟର ପ୍ରତିଷ୍ଠା କେବାଂଗ-ଆବୁ ଏବଂ ଅନ୍ୟ ଗ୍ରାମବାସୀମାନଂକ ପାଇଁ ଏକ କର୍ତ୍ତବ୍ୟ।

Digitized by srujanika@gmail.com

ଯେଉଁଦିନ ନ୍ୟାୟର ପ୍ରତିଷ୍ଠା ତାତ୍କାଳିକ ଅର୍ଥ ଲାଭ ତୁଳନାରେ ଗୌଣ, ଅବାସ୍ତବ ହୋଇ ପଡ଼ିବ କିଂବା କେବାଂଗ ଦ୍ୱାରା ପ୍ରଦତ୍ତ ଆର୍ଥିକ ଦଣ୍ଡକୁ ବ୍ୟକ୍ତି ଏକ ଅପୂରଣୀୟ କ୍ଷତି ବା ଲାଭ ଅଥବା ସମ୍ମାନ କିଂବା ଅସମ୍ମାନ୍ ବୋଲି ବିବେଚନା କରିବ ଏ ବିଚାର ବ୍ୟବସ୍ଥାକୁ ଭେଙ୍ଗାଇ ଦେବାରେ ବେଶି ଡେରି ଲାଗିବ ନାହିଁ। ତେଣିକି ପଇସା ବଳରେ କେବାଂଗ-ଆବୁ ବା ଯୁକ୍ତି କରିବା ଲୋକଙ୍କୁ ନିଜ ଆଡ଼କୁ ଆକର୍ଷିତ କରିବା ଏକ ସ୍ୱାଭାବିକ ଘଟଣା ହୋଇ ପଡ଼ିବ। ଅରୁଣାଚଳକୁ ଆଧୁନିକ ସଭ୍ୟତା ଏବଂ ତାର ଅପରିହାର୍ଯ୍ୟ ଗୃପକ ଯନ୍ତ୍ର, ଶିଳ୍ପ, କାରିଗରୀ, ବଜାର ବ୍ୟବସ୍ଥା ଏବଂ ମାଳକୁ ମାଳ ଉପଭୋକ୍ତା ସାମଗ୍ରୀର ସ୍ୱଚ୍ଛଳ ଆଗମନ ଯେତେବେଳେ ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ଆରଂଭ ହୋଇ ଗଲାଣି, ଅର୍ଥଲାଭ ନିମିତ୍ତ ଲୋଭ ସୃଷ୍ଟି ହେବାରେ ବା ଆଉ କେତେ ଡେରି? ସେତେବେଳକୁ କେବାଂଗ ଥିବ, ମାତ୍ର ସେଥିରେ ସରଳତା ନ ଥିବ। ସରକାରୀ ଅଦାଲତର ତାହା ଏକ ପ୍ରତିଶବ୍ଦ ମାତ୍ର ହୋଇ ରହିଥିବ।

ଓଡ଼ିଶାର ପଶ୍ଚିମାଂଚଳର କେଉଁ ଏକ ନିପଟ ମଫସଲରେ ଆମ ଗାଁ। ଗାଁରେ ଜନ ସଂଖ୍ୟା ସାଢ଼େ ତିନି ହଜାରରୁ କମ ନୁହେଁ। ମାତ୍ର ବର୍ତ୍ତମାନ ସ୍ଥିତିରେ ଗାଁରୁ କେବଳ ଗୋଟାଏ ମାମଲା ସରକାରୀ କୋର୍ଟର ବିଚାରାଧୀନ। ଗାଁର ବାକୀ ସବୁ ନ୍ୟାୟ ନିଷ୍ପତ୍ତି ଗାଁ ପଂଚାୟତ ଦ୍ୱାରା ସମାହିତ। ଗତ କିଛି ଦିନ ତଳେ ଏକ ମାଡ଼ପିଟ ଜନିତ କଳହର ବିଚାର ବେଳେ ଦେଖାଗଲା ଯେ, ଅପରାଧୀର ଅପରାଧ ଯେହେତୁ ଏ କ୍ଷେତ୍ରରେ ଦିବାଲୋକ ପରି ସୁସ୍ପଷ୍ଟ, ତାର ପକ୍ଷ ନେଇ ଯୁକ୍ତି କରିବା ବା ଆର୍ଥିକ ସମୃଦ୍ଧିର ଚାପରେ ତାକୁ ଦଣ୍ଡ ନ ଦେବା ନୋହିବ। ବରଂ ଆର୍ଥିକ ସଂପତ୍ତି ଯୋଗୁଁ ତାର ଦଣ୍ଡ ପାଇବା ନିଶ୍ଚିତ ସେଠି। ମନେହେଲା, ଆର୍ଥିକ ବିପତ୍ତିଗ୍ରସ୍ତ ଗ୍ରାମର ଅନ୍ୟମାନେ ଅନ୍ତୋଃଗତଃ ଈର୍ଷା ହେତୁ ସଂପତ୍ତିବାନଙ୍କୁ ଦଣ୍ଡ ଦେବା ଆଳରେ ନିଜ ସ୍ତରକୁ ଆଣିବାକୁ ଚେଷ୍ଟା କରୁଥିଲେ। ପୁଣି ଅପରାଧୀର ଜ୍ଞାତି ପରିଜନ ମଧ୍ୟ ଖୋଲା ଖୋଲି ଭାବେ ଅପରାଧୀର ପକ୍ଷ ନେଇ ପାରୁ ନ ଥିଲେ। ଅପରାଧୀର ସମୃଦ୍ଧିହୀନତାକୁ ପ୍ରଦର୍ଶିତ କରି ଦଣ୍ଡର ପରିମାଣକୁ ଯଥାଶକ୍ତି ସେମାନେ ସୀମିତ ରଖିବାକୁ ଚେଷ୍ଟା କରୁଥାନ୍ତି ମାତ୍ର। ଅର୍ଥାତ ଆଜି ଯାଏଁ ଅରୁଣାଚଳର କେବାଂଗ ପରି ସଂପତ୍ତି ବା ଅର୍ଥ ଗାଁରେ ନ୍ୟାୟକୁ ହାତ ପାଆନ୍ତା ଏବଂ ଅର୍ଥହୀନତା ନ୍ୟାୟକୁ ଆକାଶକଇଁ କରି ପାରିନାହିଁ। ଏତଦ୍ ବ୍ୟତୀତ ଗ୍ରାମ ପଂଚାୟତର ନ୍ୟାୟିକ ପରିସୀମା ମଧ୍ୟ ଖୁବ ବ୍ୟାପକ। ଉଲ୍ଲିଖିତ ମାମଲାରେ ଅପରାଧୀ ଉପରେ ତିନି ହଜାର ଟଂକା ଜୋରିମାନା ହେବାର ଦେଖାଗଲା। ଆମ ଗାଁଠାରୁ ଅଧିକ ନିପଟ ମଫସଲ ଏକ ଗାଁରେ ତ ଦୋଷୀ ଉପରେ ଦଶହଜାର ଟଂକା ଜୋରିମାନା ହେବା କଥା ଜାଣେ। ବିଚାର ବେଳେ ପଂଚାୟତର ନିର୍ବାଚିତ ସଭ୍ୟଙ୍କ ବ୍ୟତୀତ ଗ୍ରାମର ଅନ୍ୟ ପ୍ରବୀଣ

Digitized by srujanika@gmail.com

ଲୋକମାନେ ମଧ୍ୟ ଉପସ୍ଥିତ ଥିଲେ; ଅଧିକ ମୁଖର ଥିଲେ। କମ ବୟସ୍କ ଯୁବକମାନଙ୍କୁ ବାଦ ଦେଲେ ଉପସ୍ଥିତ ଅନ୍ୟ ସମସ୍ତେ ବିଚାରରେ ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କରୁଥିଲେ। ଗାଁ'ର ପଂଚାୟତ କେବାଂଗ ଭଳି ଏତେ ଶକ୍ତିଶାଳୀ ଯେ, ହତ୍ୟା ଘଟଣାକୁ ଛାଡ଼ି, ଚୋରୀ, ଛାଡ଼ପତ୍ର, ମାଡ଼ଗୋଳ, ଜମିଜମା ସଂକ୍ରାନ୍ତୀୟ କଳହ ଏବଂ ଏପରିକି ବୁଢ଼ା ବାପକୁ ପୁଅର ଡ଼ାଦର ଜନିତ ସମସ୍ୟାର ମଧ୍ୟ ବିଚାର କରି ଆସୁଛି। ସରକାରୀ ନଥିପତ୍ରରେ ତାକୁ କେତେ କ୍ଷମତା ମିଳିଛି ସେ ଭିନେ କଥା। ପଂଚାୟତର ନିଷ୍ପତ୍ତିକୁ ଅବଜ୍ଞା କଲେ ମାମଲା ଦୁଇପକ୍ଷ ମଧ୍ୟରେ ସୀମିତ ନ ରହି, ବରଂ ଅବଜ୍ଞାକାରୀ ଏବଂ ଗାଁ ସ୍ତରକୁ ଚାଲି ଆସେ। ଫଳ ସ୍ୱରୂପ ଦଣ୍ଡର ମାତ୍ରା ବୃଦ୍ଧି ପାଏ, ଅପରାଧୀକୁ ସାମାଜିକ ବାସଂଦ, ଗାଁର ସାମୂହିକ କ୍ରୋଧର ଶିକାର ହେବାକୁ ପଡ଼େ।

ଦିଲ୍ଲୀର ନିକଟବର୍ତ୍ତି ଏକ ଗ୍ରାମରୁ ଆସିଥିବା ଜଣେ ବଂଧୁ ମୋ କଥା ଶୁଣି ବିଶ୍ୱାସ ଗଲେ ନାହିଁ। କାରଣ ତାଂକ ଗାଁ ପଂଚାୟତ ଏତେ ଶକ୍ତିଶାଳୀ ନୁହେଁ। ସରକାରୀ ପ୍ରଦତ୍ତ ସୀମା ଅନୁଯାୟୀ ପଚାଶ ଟଂକା ପର୍ଯ୍ୟନ୍ତ ଜୋରିମାନା କରିବାର ସାମର୍ଥ୍ୟ ବି ତାର ନାହିଁ। ସତକଥା, ସହରୀ ସଭ୍ୟତାର ଚାପରେ ବଂଧୁଂକ ଗାଁ ଭାରହୀନ ଭୂମି ବିହୀନ ହୋଇ ପଡ଼ିଛି। ପଂଚାୟତର ନିଷ୍ପତ୍ତିକୁ ଅମାନ୍ୟ କଲେ, ତା ବିରୁଦ୍ଧରେ କିଛି କରିବାର ସାମର୍ଥ୍ୟ ସେ ପଂଚାୟତର ନାହିଁ। ଗାଁର ଉପକଣ୍ଠରେ ସହରୀ ସଭ୍ୟତା ଏବଂ ତାର ପ୍ରତୀକ ଥାନା ଓ କୋର୍ଟର ଉପସ୍ଥିତି ଯୋଗୁଁ, ଭୟରେ ସେ ଥରହର, ସ୍ଥିତି ତାର ଦୋଦୁଲ୍ୟମାନ। ଗାଁରେ ସେଠି ସାମାଜିକ ବାସଂଦର ନା ଭୟ ଅଛି, ନା ଅମୂର୍ତ୍ତ ନ୍ୟାୟ ପ୍ରତିଷ୍ଠାର ସମ୍ଭାବନା !

ଆମ ଗାଁ କିନ୍ତୁ ସହର ଓ ସଭ୍ୟତାଠାରୁ ଦୂରରେ। ପଂଚାୟତ ଆମ ଗାଁରେ କେବାଂଗ ପରି ସରଳ, ଶକ୍ତିଶାଳୀ ଏବଂ ଗତିଶୀଳ। କେଉଁ ଦୁର୍ବଳ ମୁହୂର୍ତ୍ତରେ ସେଠି କାଁ ଭାଁ ଯଥେଚ୍ଛାଚାର ଯେ ହେଉ ନାହିଁ, ତାହା କହିବା ମୁସ୍କିଲ। ମାତ୍ର ତିଳ ପ୍ରମାଣ ଯଥେଚ୍ଛାଚାରକୁ ଦୂର କରିବା ପାଇଁ ତାଳ ପ୍ରମାଣ ସରକାରୀ ଅଦାଲତକୁ ଆମନ୍ତ୍ରଣ କରିବା ମାନେ ହେଉଛି ଅଷ୍ଟାଦଶ ଶତାବ୍ଦୀର ବଂଗଳା ଶାସକ ସିରାଜଉଦୌଲ୍ଲାକୁ ନିର୍ମୂଳ କରିବା ପାଇଁ ମିରଜାଫରର ଇଂରେଜମାନଙ୍କୁ ନିମନ୍ତ୍ରଣ ଜଣାଇବା ସଂଗେ ସମାନ ହେବ।

(୧୯୯୪)

◆◆

Digitized by srujanika@gmail.com

# ଆଧୁନିକତାର ପୃଷ୍ଠ ଭୂମି ଓ କପି ରାଜ

କିଛି ମାସ ତଳେ ଉତ୍ତର ପ୍ରଦେଶର ନବ ନିର୍ବାଚିତ ମୁଲାୟମ ସିଂ ସରକାର ରାଜ୍ୟରେ କପି ବିରୋଧୀ ଆଇନର ପ୍ରତ୍ୟାହାର କଲେ। ଅର୍ଥାତ୍ ପରୀକ୍ଷାରେ ପରୀକ୍ଷାର୍ଥୀ ଏଣିକି ଖୋଲାଖୋଲି କପି କରି ପାରିବେ। ଏହି ଘଟଣାକୁ ନେଇ ଅନେକ ବୁଦ୍ଧିଜୀବି ଯୁକ୍ତି ବାଢ଼ିଛନ୍ତି ଯେ ଏହା ଦେଶର ପ୍ରଗତିକୁ ଅବରୋଧ କରିବ। ପରିଶ୍ରମକାତର, କର୍ମକୁଣ୍ଠ ଛାତ୍ର ନକଲ ବା କପି ବଳରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସମାଜର ଶାସନ, ଆସନ ସଂଭାଳିବେ। ସଂସ୍କୃତି, ବିଜ୍ଞାନ, କାରିଗରୀ ଜ୍ଞାନ ଇତ୍ୟାଦି, ଧରାତଳକୁ ଯିବ। ପାଶ୍ଚାତ୍ୟ ପ୍ରଗତି, ଯାହାର ପ୍ରତୀକ ରୂପେ ଦ୍ରୁତ କଂପ୍ୟୁଟରୀକରଣ, ବୃହତ ଶିଳ୍ପ ସ୍ଥାପନ ବା ନୂତନ ବୈଜ୍ଞାନିକ ଉଦ୍ଭାବନକୁ ନିଆଯାଇ ପାରେ, ସେ ସବୁ ତୁଳନାରେ ଆମ ଦେଶ ପୂର୍ବ ଅନୁପାତରେ ଆହୁରି ଅଧିକ ପଛରେ ପଡ଼ିଯିବ। ଯେହେତୁ 'ପାଶ୍ଚାତ୍ୟ' 'ଆଧୁନିକ' 'ଉନ୍ନତ' ସମାଜ ପ୍ରତିଯୋଗିତା ମୁକ୍ତ ଓ କପିହୀନ ଭଦ୍ର ସମାଜ, ଆମେରିକା ଓ ଇଂଲଣ୍ଡ, ପୂର୍ବାପେକ୍ଷା ଆହୁରି ଉନ୍ନତି କରି ଯିବେ। ତେଣୁ ଭାରତ ପରି ପ୍ରଗତିକାମୀ, ବିକାଶମୁଖୀ ସମାଜର ବୁଦ୍ଧିଜୀବିମାନଙ୍କ କହିବା ଅନୁଯାୟୀ, ଅଧିକ କଡ଼ା କଡ଼ି ଆଇନ ପ୍ରଣୟନ ହେବା ଉଚିତ, ନକଲବାଜୀକୁ ପ୍ରତିହତ କରାଯିବା କଥା।

ସତକଥା। ପରୀକ୍ଷାରେ ନକଲବାଜୀ କୌଣସି ସଭ୍ୟ ରାଷ୍ଟ୍ରର ଉନ୍ନତିର ପରିଚାୟକ ହୋଇ ନ ପାରେ। କଲେଜ, ବିଶ୍ୱବିଦ୍ୟାଳୟ, ସ୍ଥାନୀୟ ଛାତ୍ରଙ୍କର, କେବଳ ପରୀକ୍ଷାରେ କାହିଁକି ପରୀକ୍ଷା ବାହାରେ ଶ୍ରେଣୀ ଗୃହରେ, ବଜାରରେ, ସିନେମା ହଲରେ ମଧ୍ୟ ବ୍ୟବହାର ଅତ୍ୟନ୍ତ ଅଶୋଭନୀୟ। ଶିକ୍ଷାର ଲକ୍ଷ୍ୟ ଓ ସେମାନଙ୍କ ଆଚରଣ ମଧ୍ୟରେ ଆକାଶ ପାତାଳ ପ୍ରଭେଦ। ତେବେ ଆଇନ ବଳରେ କ'ଣ ପରିସ୍ଥିତିକୁ ସଂଭାଳି ହେବ? କେତେକ ଯୁକ୍ତି ବାଢ଼ନ୍ତି, ଏହା ପ୍ରତ୍ୟେକ ଅଧା-ଆଧୁନିକ, ଅଧା-ଉନ୍ନତ ରାଷ୍ଟ୍ରର ସମସ୍ୟା। ତେବେ ସମସ୍ୟାର ନିରାକରଣ ପାଇଁ ଆମକୁ କ'ଣ ପୂରା 'ଉନ୍ନତ' ହେବାଯାଏ ଅପେକ୍ଷା କରିବାକୁ ପଡ଼ିବ? ପୁଣି ପ୍ରଶ୍ନ ଉଠେ ଆମେ ପୂରା 'ଉନ୍ନତ' ହେବା କେବେ? ଆମେ ପୂରା ଉନ୍ନତ ସ୍ତରକୁ ପହଞ୍ଚିଲା ବେଳକୁ ବର୍ତ୍ତମାନର ପୂରା 'ଉନ୍ନତ' 'ଅତ୍ୟାଧୁନିକ' ଆମେରିକା, ଇଂଲଣ୍ଡ ସେହି ପୂରା 'ଉନ୍ନତ' ସ୍ତରରେ ଥିବେ ନା ଅତି ପୂରା 'ଉନ୍ନତ' ସ୍ତରକୁ ଚାଲି ଯାଇଥିବେ? ସବୁଠାରୁ ବଡ଼ କଥା,

Digitized by srujanika@gmail.com

ପୂରା 'ଉନ୍ନତ' ହେଲା ପରେ କପି, ଛାତ୍ର ବିଶୃଙ୍ଖଳା ବା ନାରୀ ପ୍ରତି ଅସମ୍ମାନ ଆଦି ବ୍ୟବହାରିକ ସମସ୍ୟା ସବୁ ଅପସରି ଯିବ ତ ?

ଏହି ପରିପ୍ରେକ୍ଷୀରେ ଆମେ ଆଦିବାସୀ ଅଧ୍ୟୁଷିତ ଅରୁଣାଚଳ ପ୍ରଦେଶର ଉଦାହରଣ ନେବା ଯାହା କି 'ଆଧୁନିକତା'ର ପରିଭାଷା ଅନୁସାରେ ଅଧା-ଆଧୁନିକ ବି ନୁହେଁ, ବରଂ ଅଣ-ଆଧୁନିକ ଅଣ-ଉନ୍ନତ ପଦବାଚ୍ୟ ହେବ। କ୍ଷେତ୍ରଫଳ ଦୃଷ୍ଟିରୁ ଉତ୍ତର ପୂର୍ବାଂଚଳର ସବା ଆଗରେ–ଆସାମ ଠାରୁ ବି ସାମାନ୍ୟ ବଡ଼ – ଏବଂ ଶିକ୍ଷା ଦୃଷ୍ଟିରୁ ଦେଶର ବାକୀ ରାଜ୍ୟଠାରୁ ସବା ପଛରେ ଅରୁଣାଚଳର ସ୍ଥାନ। ତାର ରାଜ୍ୟତ୍ୱ ପ୍ରାପ୍ତି ହୋଇଛି ମାତ୍ର ଛଅ ବର୍ଷ ତଳେ। ଉଚ୍ଚ ଶିକ୍ଷାପାଇଁ ସମଗ୍ର ରାଜ୍ୟରେ ମାତ୍ର ଚାରିଗୋଟି କଲେଜ। ସବୁଠୁ ପୁରୁଣା କଲେଜର ବୟସ ୩୦ ବର୍ଷ ଏବଂ ସର୍ବକନିଷ୍ଠ କଲେଜ ବୟସ ମାତ୍ର ପାଂଚ ବର୍ଷ। ମୋଟ କଲେଜ ଛାତ୍ର ସଂଖ୍ୟା ତିନି ହଜାରରୁ ଉର୍ଦ୍ଧ୍ୱ ନୁହେଁ। ଚାରିଗୋଟି କଲେଜକୁ ନେଇ ଗୋଟାଏ ବିଶ୍ୱବିଦ୍ୟାଳୟ; ବୟସ ପାଂଚ ବର୍ଷ; ଛାତ୍ର ସଂଖ୍ୟା ଦୁଇଶହ ପଚାଶ ପ୍ରାୟ। କହିବାର ଅର୍ଥ ହେଲା, ଶିକ୍ଷା ଦୃଷ୍ଟିରୁ ଇଂଲଣ୍ଡ, ଆମେରିକା ତୁଳନାରେ ଆଧୁନିକତାର ଘୋଡ଼ା ଦୌଡ଼ରେ ଭାରତର ୟୁ.ପି., ଓଡ଼ିଶା ଆଦି ଯେତେ ପଛରେ, ୟୁ.ପି. ବିହାର ତୁଳନାରେ ଅରୁଣାଚଳ ମଧ ତତୋଽଧିକ ପଛରେ। ତେଣୁ 'ଆଧୁନିକ' ଶିକ୍ଷା ଓ 'ପ୍ରଗତି'ର ଯଦି ଆମେ ଏକ ସରଳ ରେଖା ଟାଣି ରଖୁ, ପାଶ୍ଚାତ୍ୟ ଜଗତ ଶୀର୍ଷରେ, ୟୁ.ପି. ଓଡ଼ିଶା ଆଦି ମଝିରେ ଏବଂ ଅରୁଣାଚଳ ସବା ପଛରେ ରହିବ।

ଅରୁଣାଚଳରେ ୟୁ.ପି. ପରି କପି ବିରୋଧୀ ଆଇନ ବା ତା'ର ପ୍ରତ୍ୟାହାର ନାହିଁ। ପରୀକ୍ଷା ସମୟରେ ସଶସ୍ତ୍ର ପୋଲିସ ତ ଦୂର କଥା, ହୋମ ଗାର୍ଡ଼ ଜଣକର ସୁଦ୍ଧା ମୁତୟନର ଆଜି ଯାଏଁ ଆବଶ୍ୟକତା ପଡ଼ି ନାହିଁ। ମାତ୍ର ଏସବୁ ସାଂଗକୁ ଗତ ଛଅ ବର୍ଷର ସ୍ୱ ଅନୁଭୂତିରୁ ମୁଁ ଦୃଢ଼ତାର ସହ କହିପାରେଁ, ଅରୁଣାଚଳରେ କପି ନାହି। ଗତ ବର୍ଷ ପ୍ରଥମ କରି ମୁଁ ଜଣେ ପରୀକ୍ଷାର୍ଥୀଠାରେ ହିଁ କପିର ସଂଧାନ ପାଇଲି। ଛାତ୍ରଟି ଥିଲା ଅଣ-ଆଦିବାସୀ ଘରୋଇ ପରୀକ୍ଷାର୍ଥୀ। ସ୍ଥାନୀୟ ଛାତ୍ରମାନଂକ ମତାମତ ଥିଲା, ଉକ୍ତ ପରୀକ୍ଷାର୍ଥୀକୁ ପରୀକ୍ଷା ଦେବାରୁ ବଂଚିତ କରାଯିବା ଉଚିତ, କାରଣ ସେ ଏଠିକା ଛବି ବିଗାଡ଼ୁଛି। ଏହି ଘଟଣାର ଦିନେ ଉତ୍ତାରୁ ଶୁଣିଲି ଯେ, ଓଡ଼ିଶାରେ ଜଣେ ଅଧାପକ କପି ବାରଣ କରିବା ଅପରାଧରେ ପରୀକ୍ଷାର୍ଥୀଂଙ୍କଠାରୁ ମାଡ଼ ଖାଇ ଡାକ୍ତରଖାନା ଦେଇ ଘରକୁ ବାହୁଡ଼ିଛନ୍ତି। ଏଥର ଓଡ଼ିଶା ରହଣି ସମୟରେ ଶୁଣିଲି, ଏକ ବଡ଼ ସରକାରୀ କଲେଜରେ ଜଣେ ଛାତ୍ର ସଂସଦ ସଭାପତି ପ୍ରାର୍ଥୀ ଛାତ୍ରମାନଂକୁ ପ୍ରତିଶ୍ରୁତି ଦେଉଛନ୍ତି, କପିକୁ ସେ ପରୀକ୍ଷାରେ ମାନ୍ୟତା ପ୍ରଦାନ କରିବେ।

Digitized by srujanika@gmail.com

କେବଳ ପରୀକ୍ଷାରେ ନକଲ ନୁହେଁ, କାନ୍ଥ କାଡ଼ରେ ଛାତ୍ରୀ ଓ ଅଧ୍ୟାପକଙ୍କ ନାମରେ ଅଶ୍ଳୀଳ ଅପାଠ୍ୟ ଲେଖାରେ ମଧ୍ୟ ଅରୁଣାଚଳ ଛାତ୍ର ଅନ୍ୟ ଛାତ୍ରଙ୍କ ତୁଳନାରେ ବହୁତ ପଛରେ। କାନ୍ଥରେ ତୀର ମରା ପାନପତ୍ର ନ ଥାଏ କି ଛାତ୍ର-ଛାତ୍ରୀ ନାମମାନଙ୍କର ଯୋଗ ବିଯୋଗ ଚିହ୍ନ ଦେଖାଯାଏ ନାହିଁ। ପିଲାଏ ଚୁପଚାପ ବସି ଅଧ୍ୟାପନା ଶୁଣନ୍ତି; ଟଂଦା ଅଧ୍ୟାପକଙ୍କ ମୁଣ୍ଡକୁ ଚକଖଡ଼ି ଫିଂଗନ୍ତି ନାହିଁ; ଶ୍ରେଣୀରେ ଟେବୁଲ, ଚୌକି, ପଂଖା ଅକ୍ଷତ ଥାଏ।

ଏହି ସଂଦର୍ଭରେ ଆମ ଓଡ଼ିଶା ବିହାର ଛାତ୍ର କେତେ ଧୁରଂଧର ତାହା କଳନା କରାଯାଇ ନ ପାରେ। କେତେ ବର୍ଷ ତଳେ ସଂବଲପୁରର ସ୍କୁଲ କଲେଜମାନଙ୍କରେ ଏମିତି କୌଣସି କାନ୍ଥ ନ ଥିଲା, ଯେଉଁଠି ଜଣେ ନିର୍ଦ୍ଦିଷ୍ଟ ଶୃଙ୍ଖଳା-ପଟୁ ଶିକ୍ଷକଙ୍କ ନାଁରେ ଅଶ୍ଳୀଳ ବାଣୀ ଲେଖା ଯାଇ ନଥିଲା। କାନ୍ଥ ଲେଖକମାନଙ୍କ ବିଶ୍ୱାସ ଥିଲା ଯେ ସେମାନେ ବୋକାରୋ-ମାଡ୍ରାସ ରେଳଗାଡ଼ିର ଡବାକୁ ବ୍ୟବହାର କରି ଶିକ୍ଷକ ମହାଶୟଂକୁ ଓଡ଼ିଶା ବାହାରେ ମଧ୍ୟ ବଦନାମ କରିବାରେ ସଫଳ ହୋଇଛନ୍ତି।

ଛଅ ବର୍ଷ ତଳେ ବିହାରର ରାଜଧାନୀ ପାଟନା ସହରରେ ଟାଉନ ବସରେ ଯାତ୍ରାର ସୁଯୋଗ ମିଳିଥିଲା। ବସଟି କଲେଜ ରାସ୍ତାରେ ଏବଂ ଦିନ ଦଶଟାରେ ଯାତ୍ରା କରୁଥିବାରୁ 'କଲେଜ ବସ' ନାମରେ ପରିଚିତ ଥିଲା। ଦୁର୍ଭାଗ୍ୟକୁ ସେଦିନ ଜଣେ ଧୋତି ପିଂଧାଳି ଅଣ-ଛାତ୍ର ବସ ଭିତରକୁ ପଶି ଆସିଥିଲେ। ତାଂକୁ ଦେଖି କେତେକ ଛାତ୍ର ପଣ କଲେ, ଯେପର୍ଯ୍ୟନ୍ତ ଅଣ ଛାତ୍ର ମହାଶୟଂକୁ ବସରୁ କଢ଼ା ନ ଯାଇଛି, ବସରୁ ଯିବା ନୋହିବ। ଫଳତଃ ଅନ୍ୟ କେତେକ ଛାତ୍ର ଧୋତି ପିଂଧାଳିଂକୁ ଜବରଦସ୍ତ ବାହାରକୁ ଆଣିଲେ। ଶହେରୁ ଊର୍ଦ୍ଧ୍ୱ ଛାତ୍ରଂକୁ ବୋହି ରଖିଥିବା ସରକାରୀ ବସଟି ସତକୁ ସତ ଧୋତି ପିଂଧାଳି ଜଣକୁ ଓହ୍ଲାଇ ଦେବା ପରେ ଉଶ୍ୱାସ, ଭାରହୀନ ପ୍ରତୀତ ହେଲା; ଆଗକୁ ଯିବାରେ ସମର୍ଥ ହେଲା!

ଗଲା କିଛି ବର୍ଷ ଭିତରେ ଓଡ଼ିଶା, ବିହାର ଆଦି ଅନେକ ପ୍ରଗତି କଲେଣି। ସେହି ଅନୁପାତରେ ଛାତ୍ରସମାଜ ମଧ୍ୟ ଅଶ୍ଳୀଳ ଓ ଅଶୋଭନୀୟ ବ୍ୟବହାର ପ୍ରଦର୍ଶନ କ୍ଷେତ୍ରରେ ଆହୁରି ପ୍ରଗତି କରି ସାରିବେଣି– ଏ ସବୁରେ ସଂଦେହ ନାହିଁ।

ଦେଶରେ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ, ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଉଚ୍ଚ ଶିକ୍ଷା କ୍ଷେତ୍ରରେ ଖୁବ ନାମକରା। ଆମ ଦୃଷ୍ଟିରେ ସେମାନେ ପଶ୍ଚାତ୍ୟ ଅକ୍ସଫୋର୍ଡ୍, କେଂବ୍ରିଜ ସହ ତୁଳନୀୟ। (ଏ ଧାରଣା ପାଶ୍ଚାତ୍ୟର ବି ବୋଲି କହିବାର ଧୃଷ୍ଟତା ଆମର ନାହିଁ।) ଅର୍ଥାତ୍ ଓଡ଼ିଶା, ବିହାର, ଦିଲ୍ଲୀ ପରି ସେଠିକା ଉଚ୍ଚଶିକ୍ଷା ମଧ୍ୟ ଅଧିକ 'ଆଧୁନିକ', ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ଅଧିକ ନିକଟତର। ତେଣୁ ଯେଉଁ ଓଡ଼ିଶା, ବିହାର ବା ୟୁପି, ଅରୁଣାଚଳକୁ ବିଚାରକୁ ନେଲେ 'ଆଧୁନିକତା'ର

Digitized by srujanika@gmail.com

ମଝି ସୋପାନରେ ସ୍ଥାନ ପାଇଥିଲେ, ଦିଲ୍ଲୀ ଆଲୋଚନାର ପରିସରକୁ ପଶିଲେ ସ୍ଥାନଚ୍ୟୁତ ହୋଇ ତଳ ସୋପାନରେ ସ୍ଥାନ ପାଇଲେ। ବର୍ତ୍ତମାନ ଦିଲ୍ଲୀ ପାଶ୍ଚାତ୍ୟ 'ପ୍ରଗତି'ର ମଝି ସୋପାନରେ। (ଆଧୁନିକ-ପ୍ରଗତି-ସିଡ଼ିର ଏକ ବଡ଼ ବିଶେଷତ୍ୱ ହେଲା, ସେଠି ଅସଂଖ୍ୟ ସୋପାନ ଥାଏ ଏବଂ ସୋପାନରେ କାହାରି ପାଇଁ ସ୍ଥାନ ଆରକ୍ଷିତ ହୋଇ ନ ଥାଏ। ଉପରବାଲାର ଆହୁରି ଉପରକୁ ଉଠିବା ପାଇଁ ତଳବାଲାକୁ ଲାତମାରି ଠେଲିବା ଅନିବାର୍ଯ୍ୟ ହୋଇଥିବାରୁ, ମଝିବାଲାର ତଳକୁ ଏବଂ (ତେଣୁ) ତଳବାଲାର ପାତାଳକୁ ପଶିଯିବାର ସର୍ବଦା ଆଶଂକା ଲାଗି ରହିଥାଏ।)

ନିକଟରେ ଦିଲ୍ଲୀ ଭ୍ରମଣ ଅବସରରେ ଜାଣିଲି ଯେ, ବିଶ୍ୱବିଦ୍ୟାଳୟର ବାହାର କାନ୍ଥବାଡ଼ ନିଶ୍ଚିତ ରୂପେ ଅଶ୍ଳୀଳ ଲେଖାରୁ ବଂଚିତ। ମାତ୍ର ପରିସ୍ରାଗାରର କାନ୍ଥ, ଲିଫ୍ଟର କବାଟ ସେ ସବୁରେ ପରିପୂରିତ। ଆଧୁନିକତାର ଚାପରେ ଅଶ୍ଳୀଳ ଲେଖା ବାହାରୁ ଯାଇ ପରିସ୍ରାଗାର ଓ ଲିଫ୍ଟ ଭିତରକୁ ପଶିଛନ୍ତି କି ବୋଲି ପ୍ରଶ୍ନ କରିବାରୁ ଜଣେ ଉତ୍ତର ଦେଲେ, "ଲିଫ୍ଟ ଏବଂ ଆଧୁନିକ ପରିସ୍ରାଗାରର ପ୍ରାଚୁର୍ଯ୍ୟ ଯୋଗୁଁ ଦୋଅକ୍ଷରି ଲେଖକ ବାହାର କାନ୍ଥ ବାଡ଼ର ଆବଶ୍ୟକତା ଅନୁଭବ କରୁ ନାହାନ୍ତି।" ଓଡ଼ିଶା, ବିହାରରେ ବି ଯଦି କର୍ତ୍ତୃପକ୍ଷ କାନ୍ଥ ବାଡ଼କୁ ପରିଷ୍କାର ଦେଖିବା ଚାହାନ୍ତି ପ୍ରତ୍ୟେକ ବିଲଡ଼ିଂରେ ଲିଫ୍ଟ ଏବଂ ଚାରିଆଡ଼େ ମୋଜାଇକ ଲଗା ପରିସ୍ରାଗାର ତିଆରି କରାନ୍ତୁ, ଅଶ୍ଳୀଳ ଲେଖା ତା ଭିତରକୁ ଚାଲିଯିବ। କ୍ରମ ଆଧୁନିକତା ସାଂଗରେ ତାଳ ଦେଇ ଅଶ୍ଳୀଳତାର ନିରନ୍ତର ସ୍ଥାନ ପରିବର୍ତ୍ତନ ଏବଂ ଅନୁଗମନ ଦେଖି ମୋର ଆଧୁନିକତା ତ' ନୁହେଁ ଅଶ୍ଳୀଳତା ଉପରେ ଦୟା ହେଲା। ଆଇନ ଆଉ କେତେ ଡିଗ୍ରୀ କଡ଼ା ହେଲେ କାନ୍ଥ ବିଚାରେ– ସେ ଶ୍ରେଣୀ ଗୃହର ହୁଅନ୍ତୁ କି ପରିସ୍ରାଗାରର– ଦୋ ଅକ୍ଷରି କବଳରୁ ଛାଡ଼ ପାଇବେ ତାହା ଦେଖିବା ବାକୀ ରହିଲା।

ଅଧା ଆଧୁନିକ ଅଂଚଳରେ କଲେଜ ଶିକ୍ଷାର ଏକ ବିଶେଷତ୍ୱ ହେଲା ଛାତ୍ରୀମାନେ ନିଜକୁ ଏବଂ ଛାତ୍ରମାନେ ଛାତ୍ରୀମାନଂକୁ ଶିକାର ବୋଲି ମନେ କରନ୍ତି। ତେଣୁ କଲେଜ ପରିସରରେ ଛାତ୍ରମାନେ ଜଂଗଲର ବାଘ ଭଳି ଏକା ଏକା ବୁଲିଲା ବେଳେ ଛାତ୍ରୀମାନେ ହରିଣ ମଇଁଷି ପରି ଗୋଠରେ ବୁଲନ୍ତି; ଗୋଠ ଛଡ଼ା ହେଲେ ତ୍ରାହି ନାହିଁ।

ଏହି ପରିପ୍ରେକ୍ଷୀରେ ଓଡ଼ିଶାର ଏକ ସହର କଥା ମନେ ପଡ଼େ। ସେଠି ଦୁଇଟି ଉଚ୍ଚ ଏବଂ ପୂର୍ଣ୍ଣ ପାଚେରୀ ବିଶିଷ୍ଟ ଘର– ଗୋଟାଏ ଜେଲ ଅନ୍ୟଟି ମହିଳା କଲେଜ ଛାତ୍ରୀନିବାସ। ଗୋଟାକର ଉଚ୍ଚ ପାଚେରୀ ଅନ୍ତେବାସୀ ସମାଜରେ ପଶି ବିଘ୍ନାତ ସୃଷ୍ଟି ନ କରିବେ ବୋଲି ଅନ୍ୟଟିର ଉଚ୍ଚ ପାଚେରୀ ଗଢ଼ାଯାଇଛି ଏହାର ଅନ୍ତେବାସୀଂକ ଭିତରେ ପଶି ସମାଜ ବିଘ୍ନାତ ନ କରିବ ବୋଲି। ଏହି ଆବଦ୍ଧତାର

ପରିଣାମ କ'ଣ ?

Digitized by srujanika@gmail.com

ଛାତ୍ର ତୁଳନାରେ ସାଧାରଣ ଛାତ୍ରୀ ପଛେଇ ଯାଉଛି। ଯାହାଁ କେଉଁଠି [illegible] ରହୁଥିବା ଜଣେ ଅଧେ ଛାତ୍ରୀ ପରୀକ୍ଷାରେ ଭଲ କରୁଥିଲେ ବି ଲାଗେ [illegible] ସାଧାରଣ ସ୍ଥାନରେ ପଛେଇ ଯାଉଛନ୍ତି। ସତକଥା, ଶାରୀରିକ ସୁରକ୍ଷା ଯେଉଁଠି [illegible] ସମସ୍ୟା, ସେଠାରେ ଅଧ୍ୟୟନରେ ମନୋନିବେଶ ହେବ କେମିତି ?

ଏବେ ଦିଲ୍ଲୀ ପରି 'ଉନ୍ନତ' ସମାଜ କଥା ବିଚାରକୁ ନିଆଯାଉ। ମୋର ଜଣେ ବ୍ୟକ୍ତିଗତ ଚିହ୍ନା, ଉଚ୍ଚ ଶିକ୍ଷିତା ଛାତ୍ରୀଙ୍କ କଥା ଯଦି ସତ, ତେବେ ପ୍ରତିଦିନ ଘରୁ ବାହାରିଲା ବେଳେ ରୁମାଲ, ମନିପର୍ସ ସାଂଗରେ ସେ କେତେ ଗୋଟି ପିନ ଜଷା ବି ସାଇତି ରଖନ୍ତି। ବସ ଭିତରେ ଅଶ୍ଳୀଳ ଆଚରଣ ପ୍ରଦର୍ଶନ କରୁଥିବା ଯୁବକଙ୍କ ବିରୁଦ୍ଧରେ ତାହା କୁଆଡ଼େ ପିସ୍ତଲ ପରି ଆତ୍ମସୁରକ୍ଷା ପ୍ରଦାନ କରେ।

ଏହାର ସଂପୂର୍ଣ୍ଣ ବିପରୀତ ପରିବେଶ ଅରୁଣାଚଳରେ। ଛାତ୍ର ଛାତ୍ରୀ ମଧ୍ୟରେ ଆପୋଷ କଥାବାର୍ତ୍ତା, ମିଳାମିଶା ଦେଖିଲେ ଯୌନ ବିକୃତି ଗ୍ରସ୍ତ ଅଧା-ଆଧୁନିକତାର ଶିକାର ବ୍ୟକ୍ତିମାନଙ୍କରେ ନାନା ଓଲଟ ସିଧା ପ୍ରଶ୍ନ ଉଂକି ମାରେ। ଛାତ୍ର ଛାତ୍ରୀଂକ ଅଭିବ୍ୟକ୍ତିରୁ ସୁସ୍ପଷ୍ଟ ହୁଏ ଯେ କେହି କାହାକୁ ବା ନିଜକୁ ଶିକାର ପ୍ରାୟ ପ୍ରତୀତ ହୁଅନ୍ତି ନାହିଁ। ବସରେ ବା ଶ୍ରେଣୀ ଗୃହରେ ଛାତ୍ରୀଂଙ୍କ ପାଇଁ ସ୍ଥାନ ଆରକ୍ଷିତ ରହେ ନାହିଁ। ଛାତ୍ର ନିବାସ ଭିତରକୁ ଛାତ୍ରୀର ଆଗମନରେ ନା ଥାଏ ବାରଣ ନା କୌତୂହଳ। ବିଶ୍ୱବିଦ୍ୟାଳୟ ସ୍ତରରେ ତ ଛାତ୍ରୀ ନିବାସ ଭିତରକୁ ଛାତ୍ରର ଆସିବାରେ ସୁଦ୍ଧା ବାରଣ ନାହିଁ।

କହିବାର ତାତ୍ପର୍ଯ୍ୟ ହେଲା, ଛାତ୍ରମାନଂକ ମଧ୍ୟରେ ଅଶ୍ଳୀଳତା, ପରୀକ୍ଷାରେ ଅସାଧୁତା, ଅଧ୍ୟାପକଂଙ୍କ ପ୍ରତି ଦୁର୍ବ୍ୟବହାର, ଇତ୍ୟାଦି, ସାମାଜିକ ବିକୃତିର ନିରାକରଣ ନିମନ୍ତେ ଅଧା-ଆଧୁନିକଂକୁ ନିଜ ଦେଶର ଉପାନ୍ତ ଅରୁଣାଚଳ ଆଡ଼େ ମୁହାଁଇବାକୁ ପଡ଼ିବ କି ଆଧୁନିକ ଦିଲ୍ଲୀ, ଲଣ୍ଡନ ଆଡ଼େ ? ପୁଣି ପ୍ରଶ୍ନ ଉଠେ, ଆଧୁନିକ ଶିକ୍ଷା ଓ ଉପରୋକ୍ତ ବିକୃତିଗୁଡ଼ିକ ମଧ୍ୟରେ କିଛି ଗହୀରା ସଂପର୍କ ଅଛି କି ?

ଚର୍ଚ୍ଚାର ମୁଖ୍ୟ ପ୍ରସଂଗ ଥିଲା ପରୀକ୍ଷାରେ କପି, ସାମାଜିକ ବିକୃତିର ଏକ ରୂପ। କପିର ଏକ ବିଶେଷ ଅର୍ଥ ଥିଲା ପରିଶ୍ରମ ରହିତ କଷ୍ଟବିହୀନ ସଫଳତା। ବିନା କଷ୍ଟରେ କୃଷ୍ଣ ପ୍ରାପ୍ତି। ପରୀକ୍ଷା କଥା ଯଦି ମନରୁ ହଟେଇ ଦିଆଯାଏ, ତେବେ ଏହା କ'ଣ ଆଧୁନିକ ସଭ୍ୟତା, ବୈଜ୍ଞାନିକ ଉଦ୍ଭାବନ ଏବଂ ପ୍ରତିଟି ବୈଷୟିକ ପ୍ରଗତିର ମୂଳ ଲକ୍ଷ୍ୟ ନୁହେଁ ? ବିଜ୍ଞାନ ଆଜି କ'ଣ ଉଦ୍ୟମରତ ନୁହେଁ ଯନ୍ତ୍ରଣା ବିହୀନ ସୁଖଲାଭ ନିମିତ୍ତ, ପରିଶ୍ରମ ରହିତ ଆନନ୍ଦ ପାଇଁ। ବିଜ୍ଞାନବାଦୀ ମଣିଷ କ'ଣ ଭୁଲରେ ବି ଚାହେଁ ଗ୍ରୀଷ୍ମର ତୀବ୍ରତା, ଶୀତର ପ୍ରକୋପ, ପାହାଡ଼ ଚଢ଼ାର କ୍ଳାନ୍ତି ? ତାର ଆବଶ୍ୟକ ଗ୍ରୀଷ୍ମରେ ଥଣ୍ଡା, ବର୍ଷାରେ ଶରତ, ପୁଣି ଶୀତରେ ଉଷ୍ଣତା।

Digitized by srujanika@gmail.com

ଦୁଇଟି ଶରତ ମଝିରେ ସେ ଗ୍ରୀଷ୍ମକୁ ସହ୍ୟ କରିବନି; ଦୁଇଟି ଦିନ ମଝିରେ ରାତ୍ରୀର ଆଗମନକୁ ସେ ପସଂଦ କରେନା। ତାକୁ କେବଳ ଆରାମ ଓ ଆନଂଦ ଚାହି। ତାର ସମସ୍ତ ବୁଦ୍ଧିବିବେକ ଆରାମର ଉପ୍ସ ଖୋଜିବାରେ ବିନିଯୁକ୍ତ।

ମାତ୍ର ଏହା କ'ଣ ପ୍ରକୃତି ନିୟମର ସଂପୂର୍ଣ୍ଣ ପରିପନ୍ଥୀ ନୁହେଁ। ଜୀବନ ଯେ ସୁଖ ଦୁଃଖ, ହସ-କାଂଦ, ଆହ୍ଲାଦ ଯନ୍ତ୍ରଣାର ଏକ ଗାଢ଼ ମିଶ୍ରଣ। ଜନ୍ମ ଦେବାବେଳେ ଯନ୍ତ୍ରଣାର ଅନୁଭୂତି ପରେ ସୃଜନର ଆନଂଦରେ ଯେଉଁ ସ୍ୱାଦ ଅଛି, ଯନ୍ତ୍ରଣା ବିହୀନ ଜନ୍ମରେ ସେ ସ୍ୱାଦ କେମିତି ସଂଭବ ! ଯଦି 'ଆଧୁନିକ' ମଣିଷକୁ କେବଳ ଦୁଃଖଶୂନ୍ୟ ସୁଖ, କାଂଦ ରହିତ ହସ ଏବଂ କଷ୍ଟବିହୀନ କୃଷ୍ଣର ଆବଶ୍ୟକତା, ପ୍ରାକୃତିକ ନିୟମର ଉଲଂଘନ ତା' ପାଇଁ ଅନିବାର୍ଯ୍ୟ, ଏକ ସଟ୍ କଟ୍ (Short cut) ଧାରାର ଆବିଷ୍କାର ଅବଶ୍ୟଂଭାବୀ। ବସ୍ତୁ ତାନ୍ତ୍ରିକ ବିଜ୍ଞାନ, ଆଧୁନିକତା, ଭୌତିକ ପ୍ରଗତି ଯେମିତି ଉକ୍ତ ସର୍ଟ କଟ୍ ଧାରା ପର୍ଯ୍ୟାୟ ଭୁକ୍ତ, କପି ମଧ ସେମିତି ଅନ୍ତର୍ଭୁକ୍ତ। ପ୍ରକୃତି ଉପରେ ବିଜୟର ଆତୁଆଳରେ ପ୍ରକୃତି ନିୟମ ଉଲଂଘନର ପରିଚାୟକ। ମଣିଷ ଯେମିତି ଆଉ ଦେହ, ମନ, ପ୍ରାଣଶକ୍ତି ଓ ଚୈତସରାର ଉପଯୋଗ କରିବାକୁ ଚାହୁଁନାହିଁ।

ବିଜ୍ଞାନର ଅଥକ ପ୍ରୟାସ ପରେ ସୁଦ୍ଧା ଯେମିତି ପ୍ରକୃତିରେ ରାତ୍ରୀ ବିହୀନ ଦିନ କିଂବା ଶ୍ରମ ବିହୀନ ସୃଷ୍ଟି ସଂଭବ ନୁହେଁ, ମାନବ ଜୀବନକୁ ସେମିତି କଷ୍ଟ ଶୂନ୍ୟ କରାଯାଇ ନ ପାରେ। ଫଳରେ ବିଜ୍ଞାନର ସମସ୍ତ ବାହାସ୍ଫୋଟ ସତ୍ତ୍ୱେ ନା ରୋଗର ସଂଖ୍ୟା କମିଛି ନା ତା'ର ମାରାତ୍ମକତାର, ମୃତ୍ୟୁ ଲୋପ ପାଇଛି ନା ତାର ଭୟାବହତା। ବରଂ ପ୍ରକୃତିର ସ୍ୱାଭାବିକ ଗତିରେ ବାଧା ପଡୁଥିବାରୁ, କଷ୍ଟ ଓ ଯନ୍ତ୍ରଣାର ରୂପ ବଦଳିଛି, ଭୟାବହତା ବୃଦ୍ଧି ପାଇଛି, ସାମାଜିକ ବିକୃତି ବଢୁଛି। ତେଣୁ ଏଲୋପାଥିରେ ଯେମିତି ପାର୍ଶ୍ୱ-ଅବଗୁଣ ରହିବା ନିଶ୍ଚିତ; ଆଧୁନିକ ସମାଜରେ ସେମିତି ସାମାଜିକ ବିକୃତି ରହିବା ସ୍ୱାଭାବିକ। ପାଣିରେ ଘର କରି କୁମ୍ଭୀର ବିରୁଦ୍ଧରେ ଲଢ଼ିଲା ପରି, ଆଧୁନିକତାର ଦୁହାଇ ଦେଇ ଅଶ୍ଳୀଳତା ସାଂଗରେ ଲଢ଼ିବା ବା ଲଢ଼ିଲେ ବି ଜିତିବା ଅସଂଭବ। କାରଣ କପି ପରୀକ୍ଷାରେ ପାସ କରାଉଛି, ଭୌତିକ ପ୍ରଗତିର ସୋପାନ ଚଢ଼ିବା ପାଇଁ ରାସ୍ତା ଦେଖାଉଛି, ଯାହାକି ଆଧୁନିକ ସଭ୍ୟତାର ମୁଖ୍ୟ ଲକ୍ଷ୍ୟ। ଅମୂର୍ତ୍ତ ଜ୍ଞାନ ଲାଭ ବଦଳରେ 'ପାସ' ଯେହେତୁ ପ୍ରତିଯୋଗୀ ଶିକ୍ଷିତର ଶ୍ରେଷ୍ଠ ମାଗୁଣି, ଶିକ୍ଷା ଦାତା ସଂଗେ ଅନ୍ତରଂଗ ସଂପର୍କର ଆବଶ୍ୟକତା ପଡୁନାହିଁ, ଦୁର୍ବ୍ୟବହାର ପ୍ରଦର୍ଶନ ସ୍ୱାଭାବିକ ହୋଇ ପଡ଼ିଛି। ଏମିତି ବି 'ପାସ' ନିମନ୍ତେ ପରିଶ୍ରମର ଆବଶ୍ୟକତା ନ ଥିବାରୁ ଛାତ୍ରକୁ ଖାଲି ସମୟରେ ତ ଅନ୍ୟ କିଛି କରିବାକୁ ପଡ଼ିବ। ନିୟମଟି ସମାଜର ଅନ୍ୟମାନଂକ ପାଇଁ ବି ସମପରିମାଣରେ ପ୍ରଯୁଜ୍ୟ।

Digitized by srujanika@gmail.com

ପରୀକ୍ଷାରେ ନକଲକୁ ଆମେ ଯେତେ ତୀବ୍ର ସ୍ୱରରେ ବିରୋଧ କଲେ କ'ଣ ହେବ, ଆଧୁନିକତାର ପୃଷ୍ଠ ଭୂମି ହେଲା ନକଲ କପି। ପ୍ରତ୍ୟେକ ଆଧୁନିକତାବାଦୀ ନିଜ ସାମାଜିକ ଓ ସାଂସ୍କୃତିକ ଜୀବନରେ ନକଲର ଉପାସକ, ସଭ୍ୟତାର ନକଲ, ସଂସ୍କୃତିର ନକଲ, ଆଚାର ବ୍ୟବହାରର ନକଲ। ଆଧୁନିକ ପନ୍ଥୀର ପସଂଦ ବିଦେଶୀ ସଭ୍ୟତା, ବିଦେଶୀ ସଂସ୍କୃତି, ବିଦେଶୀ ବିକୃତି, ବିଦେଶୀ ହସ, ବିଦେଶୀ ମଦ୍ୟ, ବିଦେଶୀ ରୋଗ, ବିଦେଶୀ ଫେସନ ଏପରି କି ଆତ୍ମହତ୍ୟା ପାଇଁ ବିଦେଶୀ ବିଷ। ଏଥିପାଇଁ କେବଳ ଆମର ଉପନିବେଶବାଦୀ ଇତିହାସ ଓ ଅତୀତକୁ ଗାଳି କଲେ ହେବ ନାହିଁ, କାରଣ ଅତୀତରେ ଉପନିବେଶବାଦର ଶିକାର ହୋଇ ନ ଥିବା ପୂର୍ବ ଜର୍ମାନୀ ବି ପଶ୍ଚିମ ଜର୍ମାନୀର ପ୍ରେମରେ, ରୁଷିଆ ମଧ୍ୟ ଆମେରିକାର ପ୍ରେମରେ ଏବଂ ଚୀନ ପାଶ୍ଚାତ୍ୟର ବଶରେ। ଏପରିକି ଆମେରିକା ଓ ଇଂଲଣ୍ଡର ଗାଁ ବି ମୁହାଁଇଛି ସହର ଆଡ଼େ। ଗାଁ ନ କଲ କରୁଛି ସହରର, ପ୍ରାଚ୍ୟ ନକଲ କରୁଛି ପାଶ୍ଚାତ୍ୟର, ବିଦେଶର ନକଲ ଚାଲିଛି ସ୍ୱଦେଶରେ। ଏହାହିଁ ହେଉଛି ଆଧୁନିକତାର ଭିନ୍ନ ସ୍ୱର, ପ୍ରଗତିର ସନ୍ତକ। ତେବେ ପରୀକ୍ଷାରେ ନକଲ ବା କାହିଁକି ଅପରାଧ ହେବ ?

ଯେତେଦିନ ପର୍ଯ୍ୟନ୍ତ ଏତେ ସବୁ ନକଲ ଥିବ, ତା ସପକ୍ଷରେ ବୁଦ୍ଧିଜୀବିମାନଙ୍କ 'ଅକାଟ୍ୟ' ଯୁକ୍ତି ଥିବ, ତାକୁ ସମାଜ ଆଗରେ ଅଭିନବ ବେଶରେ ପେଶ କରିବା ପାଇଁ ଆଧୁନିକତାବାଦୀଙ୍କ ବାକଚାତୁରୀ ଥିବ, ସେତେଦିନ ପର୍ଯ୍ୟନ୍ତ ପରୀକ୍ଷା ହଲରେ ବି ନକଲ, କପି ରହିବ, ଅଲବତ ରହିବ। କପି ବିରୋଧୀ ଆଇନ ତା'ର କିଛି କରି ପାରିବ ନାହିଁ। ତେଣୁ ଆଇନ ଥିବାରେ ବା ହଟିବାରେ କିଛି ଫରକ ପଡ଼ିବ ନାହିଁ।

(୧୯୯୩)

◆◆

Digitized by srujanika@gmail.com

# ସ୍ୱାଭିମାନରେ ପ୍ରଶ୍ନଚିହ୍ନ

ଦିନେ ବଡ଼ ପିଲାଟିଏ ଅନ୍ୟ ଜଣେ ସାନ ପିଲାକୁ ଚଟକଣାଟିଏ ମାରିଲା। ସାନ ପିଲାଟି ଦେଖିଲା, ବଡ଼ ପିଲାଟିକୁ ସେ ମାରି ପାରିବ ନାହିଁ। ତେଣୁ ପାଖରେ ଖେଳୁଥିବା ନିଜଠାରୁ ସାନ ପିଲାଟିଏ ଖୋଜି ସେ ଚଟକଣାଟି ଫେରାଇ ଦେଲା। ଏବେ ବଡ଼ ପିଲା ଖୁସ ସେ ସାନ ପିଲାକୁ ଚଟକଣା ମାରିଛି; ସାନ ଖୁସ ଯେ ସେ ଆହୁରି ସାନ ପିଲାଟିକୁ ଚଟକଣାଟି ଫେରାଇ ଦେଇଛି।

ଆଜିର ରାଜନେତା, ପ୍ରଶାସନିକ ଅଧିକାରୀ ଏବଂ ସାଧାରଣ ଲୋକଙ୍କ ଭିତରେ ସଂପର୍କ କିଛି କିଛି ଏ ଭଳିଆ। ଉଚ୍ଚପଦସ୍ଥ ଅଧିକାରୀ ରାଜନେତାଙ୍କ ହାତରେ କଣ୍ଢେଇ ସାଜିଛନ୍ତି, ତ ମଳିମୁଣ୍ଡିଆ ସାଧାରଣ ଲୋକଙ୍କ ସହ ପୁଣି ସେମାନେ କଣ୍ଢେଇ ଭଳି ଖେଳୁଛନ୍ତି। ତେଣୁ ଟି.ଏନ. ଶେଷନ, ଖୈରନାର ଭଳି ଅଫିସରଂକ ରାଜନେତାଂକ କାର୍ଯ୍ୟ ବିରୁଦ୍ଧରେ ପ୍ରତିବାଦ ଯେତିକି ମହତ୍ୱପୂର୍ଣ୍ଣ, ସାଧାରଣ ଲୋକଂକ ଉପରେ ଅମଲାତାନ୍ତ୍ରିକ ଅତ୍ୟାଚାର ବିରୁଦ୍ଧରେ ଜନଚେତନାର ତତୋଽଧିକ ଆବଶ୍ୟକତା ରହିଛି। ଶୁଣିବାକୁ ଶ୍ରୁତିକଟୁ ଲାଗିପାରେ, ହେଲେ ଅଧିକାରୀମାନେ ଦେଶୀୟ ରାଜା, ଜମିଦାର ପରି ଯଥେଚ୍ଛାଚାର କରୁଛନ୍ତି; ପ୍ରଶାସନରେ ପଶି ଯାଇଥିବାରୁ ବର୍ଣ୍ଣ-ଶୋଣିତ ଦର୍ପ, ଆତ୍ମଗର୍ବରେ ଫାଟି ପଡୁଛନ୍ତି ସେମାନେ। ସାଧାରଣ ଲୋକଂକ ଦୁଃଖ ଦୁର୍ଦ୍ଦଶା କଥା ଚିନ୍ତା କରିବା କଥା ତ ଦୂରର କଥା, ପଦୋନ୍ନତି 'କେରିଅର' ଓ 'ପବ୍ଲିସିଟି'ର ଦୁନିଆଁରେ ଏତେ ନିମଗ୍ନ ସେମାନେ ଯେ, ତା'ଦ୍ୱାରା ଜନସାଧାରଣଂକ ଅନିଷ୍ଟ ଛଡ଼ା ଭିନ୍ନ କିଛି କରୁ ନାହାନ୍ତି। ସାମାଜିକ ଜୀବନର ପ୍ରତିକ୍ଷେତ୍ରରେ ତାଂକ ଜରିଆରେ ରାଷ୍ଟ୍ର ଏତେ ଅଧିକ ମାତ୍ରାରେ ଅନଧିକାର କର୍ତ୍ତୃତ୍ୱ ଜାହିର କରୁଛି ଯେ, ଏକବିଂଶ ଶତାବ୍ଦୀ ବେଳକୁ ଟାଉଟରି ଓ ଧପାବାଜି ରାଜନୀତି ବିନା ମଣିଷର ବଂଚିରହିବା କଷ୍ଟକର, ଘର୍ମାକ୍ତ ହୋଇ ପଡ଼ିବ। ରାଷ୍ଟ୍ର ସେମାନଂକୁ 'ସୁରକ୍ଷା', ବିକାଶ, ଉନ୍ନତି ନାଁରେ କ୍ଷମତା ଦେଇଛି। ମନମୁଖୀ ଭାବରେ ତାର (ଅପ) ବ୍ୟବହାର କରିବା ହେଲା ତାଂକର କାମ। 'ବଡ଼ପିଲା' ରାଜନେତା ବ୍ୟତୀତ ଭିନ୍ନ କେହି ପାଟି କଲେ, ସରକାରୀ କାର୍ଯ୍ୟରେ ବାଧା ସୃଷ୍ଟି ନାଁରେ ସେମାନେ ଦାଉ ସାଧିବେ ତା ଉପରେ। ଟିକିଏ ଅନୁନ୍ନତ, ଗାଁଉଲି ଅଂଚଳରେ ତ ସେମାନଂକ ପ୍ରାଦୁର୍ଭାବ ସୀମା ଡେଇଁ ଯାଉଛି। ବ୍ରିଟିଶ ଉପନିବେଶବାଦୀ ଶାସନଠାରୁ ସ୍ୱାଧୀନ ଭାରତୀୟ

Digitized by srujanika@gmail.com

ପ୍ରଶାସନିକ ଅଧିକାରୀଂକ ରାଜୁତି କେଉଁ ଗୁଣରେ ଭିନ୍ନ - ତାହା ଆଜି ପରଖିବା ମୁସ୍କିଲ। ସେମାନଂକ ମନମୁଖୀ ଶାସନର କାହାଣୀ କେବେ କେଉଁ ସଂବାଦପତ୍ରର ପୃଷ୍ଠା ମଣ୍ଡନ କଲା ତ ଭାଗ୍ୟର କଥା। ନୋହିଲେ ପ୍ରାୟ କ୍ଷେତ୍ରରେ ସେସବୁ ସାଧାରଣ ଘଟଣା ଭାବରେ ଲୁଚି ଯାଉଚି; ସ୍ୱାଧୀନ ଦେଶର ଏକ 'ବାସ୍ତବିକତା' ରୂପରେ ଲୋକ ତାକୁ ନଜର ଅଂଦାଜ କରି ଦେଉଛନ୍ତି।

ଏମିତି ଏକ ଘଟଣା ସଂପର୍କରେ କିଛି ଦିନ ତଳେ କେତୋଟି ଓଡ଼ିଆ ଓ ଇଂରାଜୀ ସଂବାଦପତ୍ରରେ ରିପୋର୍ଟ ପ୍ରକାଶିତ। ଘଟଣାଟି ହେଲା କଳାହାଣ୍ଡି ଜିଲ୍ଲାର ଭବାନିପାଟଣା ସହରର। ଅଶୋକ ଦଳଭାଇ ନାମରେ ସେଠି ଜଣେ ଜିଲ୍ଲାପାଳ ଅଛନ୍ତି। କର୍ଣ୍ଣାଟକ ଲୋକ; ଯୁବକ ଏବଂ କାର୍ଯ୍ୟଦକ୍ଷ ବି! ସୁଜନପୁର ଗାଁର ରାଧାନାଥ ପ୍ରଧାନ ନାମରେ ଜଣେ ବ୍ୟକ୍ତି ସ୍ଥାନୀୟ ଜଂଗଲରୁ ଚୋରାରେ ଚାଲିଥିବା ଗଛ କଟା ବଂଦ କରିବା ପାଇଁ ଜିଲ୍ଲାପାଳଂକ ଅଭିଯୋଗ ପ୍ରକୋଷ୍ଠକୁ ଗଲେ, ରୀତିମତ ଅନୁମତି ନେଇ, ଡକରା ଆସିଲା ପରେ। ଏ ହେଲା ୧୯୯୩ ଅଗଷ୍ଟ ମାସ କଥା। ଜିଲ୍ଲାପାଳ ଅଭିଯୋଗକାରୀଂକ ଅଭିଯୋଗ ଶୁଣିବା ତ ଦୂରର କଥା, ବସିବା ପାଇଁ ଆସନଟିଏ ବି ଯାଚିଲେ ନାହିଁ। ଜଂଗଲ ଚୋରୀ କଥା ସରକାର ବୁଝିବେ, ବେ-ସରକାରୀ ଲୋକର ସେଥିରେ ମୁଣ୍ଡ ଖେଳେଇବାର କ'ଣ ଅଛି? ଅନେକ ବେଳ ଧରି ଭକୁଆ ଭଳି ଛିଡ଼ା ହେବା ପରେ ଅଭିଯୋଗକାରୀ ବସିବା ପାଇଁ ଆସନଟିଏ ମାଗନ୍ତେ ତାଂକୁ ଆରେଷ୍ଟ କରି ଜେଲକୁ ପଠେଇ ଦେଲେ ଜିଲ୍ଲାପାଳ ବାବୁ।

ଜେଲରେ ରାଧାନାଥ ବେମାର ପଡ଼ିଲେ। ସରକାରୀ ଡାକ୍ତରଖାନାକୁ ଅଣାଗଲା ତାଂକୁ ହାତକଡ଼ା ପକାଇ। କେବଳ ଏତିକି ନୁହେଁ, ଗୋଟାଏ ହାତରେ ସେଲାଇନ ଲାଗିଥିବା ବେଳେ ଅନ୍ୟ ହାତରେ ତାଂକ ହାତକଡ଼ା ଲାଗିଥାଏ। ହତ୍ୟା ଅପରାଧୀଠାରୁ ବି ଭୀଷଣ ବନ୍ଦୋବସ୍ତ ତାଂକ ଉପରେ। କେତେଜଣ ସ୍ଥାନୀୟ ଯୁବ ଓକିଲ ଯେତେବେଳେ ଏ ଦୃଶ୍ୟର ଫଟୋ ଜାତୀୟ ମାନବିକ ସୁରକ୍ଷା ଆୟୋଗ ପାଖକୁ ପଠାଇଲେ ଆୟୋଗର ଅଧକ୍ଷ ଜଷ୍ଟିସ ରଂଗନାଥ ମିଶ୍ର ଏହାର ତୀବ୍ର ନିଂଦା ମଧ କରି ସାରିଛନ୍ତି। ଶେଷରେ ପ୍ରାୟ ଛଅ ମାସ ଜେଲରେ ରଖିବା ପରେ ରାଧାନାଥବାବୁଂକୁ ସରକାରୀ କାର୍ଯ୍ୟରେ ବାଧା ସୃଷ୍ଟି ନାଁରେ ଜିଲ୍ଲାପାଳ ଦେଢ଼ ବର୍ଷ ଜେଲ ଦଣ୍ଡର ବ୍ୟବସ୍ଥା ମଧ କରିଛନ୍ତି। ରାଧାନାଥ ଏବେ ଉପର କୋର୍ଟର ଅପିଲ ପ୍ରାର୍ଥୀ।

ଏହି ଘଟଣା ପରେ ଜିଲ୍ଲାପାଳଂକ ବିରୁଦ୍ଧରେ ଭବାନିପାଟଣାରେ ଜନସଭା ଆୟୋଜିତ ହୋଇଛି; ସମାଜବାଦୀ ନେତା କିଶନ ପଟ୍ଟନାୟକ ପ୍ରଶାସନର ନିଂଦା କରିଛନ୍ତି ସଭାରେ; ମାତ୍ର ଅବସ୍ଥାର କୌଣସି ପରିବର୍ତ୍ତନ ହୋଇନାହିଁ। ଅଭିଯୋଗ

Digitized by srujanika@gmail.com

ପ୍ରକୋଷ୍ଠରେ ଘଟଣାଦିନ ଉପସ୍ଥିତ ଥିବା ଚଳ ଅଫିସରମାନେ କୁହା କୁହି ହେଉଛନ୍ତି ଯେ, ଅଯଥା ଜିଲ୍ଲାପାଳ ରାଧାନାଥ ବାବୁଙ୍କ ଅଭିଯୋଗକୁ 'ପ୍ରେଷ୍ଟିଜ ଇସ୍ୟୁ' କରି ଦାଉ ସାଧୁଛନ୍ତି। ଏସବୁ ସତ୍ତ୍ୱେ ଜିଲ୍ଲାପାଳଙ୍କ ସ୍ଥାନାନ୍ତରଣ ସୁଦ୍ଧା ହୋଇ ନାହିଁ। କି ବିଡ଼ମ୍ବନା। କେବଳ ବ୍ୟକ୍ତିଗତ ନୁହେଁ ସ୍ଥାନୀୟ ଜନ ସାଧାରଣଙ୍କ ସ୍ୱାଭିମାନର କି ଅସମ୍ମାନ। ପ୍ରଶାସନ କି କେବେ ଏଥିପ୍ରତି ଦୃଷ୍ଟିଦେବ ?

ଏମିତି ଏକ ପ୍ରଶାସନିକ ରୁଗ୍ଣତାର କ'ଣ ବିକଳ୍ପ ହୋଇ ପାରେ ? ଆଉ କେତେଗୋଟି ନୂଆ ଆଇନ ? ନା ତଦନ୍ତ କମିଟୀ ଗଠନ ? ଉପର ଏବଂ ତା ଉପର କୋର୍ଟରେ ଯାଇ କାକୁତି ବିନତି ହେବା ? ଜନସଭା ଆୟୋଜନ, କି ଧାରଣା ଓ ଅନଶନ ?

ଘଟଣାଟିକୁ ଯେବେ ମୁଁ ଜଣେ ଅରୁଣାଚଳର ଜଣେ ବଂଧୁଂକ ଆଗରେ ବଖାଣିଲି, ତାଂକର ସ୍ୱତଃସ୍ଫୂର୍ତ୍ତ ପ୍ରତିକ୍ରିୟା ହେଲା, ଲୋକେ ଜିଲ୍ଲାପାଳଙ୍କୁ ବିନା ମାଡ଼ ମାରି ସହି ଯାଇଛନ୍ତି କେମିତି ? ସତକଥା ଉତ୍ତର-ପୂର୍ବାଂଚଳର ଅରୁଣାଚଳରୁ ଆରଂଭ କରି ମିଜୋରାମ ଯାଏଁ - କେଉଁଠି ଯଦି ଏହା ଘଟିଥାନ୍ତା, କେତେ ଦିନରୁ ସଂପୃକ୍ତ ଅଧିକାରୀ ଅତି କମରେ ଦୁଇଛୁଡ଼ି ଉତ୍ତମ-ମଧମ ଖାଇ ସାରନ୍ତେଣି। କର୍ଣ୍ଣାଟକରୁ ଆସି ଓଡ଼ିଶା କଥା ତ ପରେ, ଏ ଜିଲ୍ଲାର ଲୋକ ଯାଇ ଅନ୍ୟ ଜିଲ୍ଲାରେ ମଧ—ପ୍ରଶାସନ ଆଇରେ ହେଉ, କି ବ୍ୟବସାୟ ନାଁରେ — ଦାଉ ସାଧିଲେ, ନିସ୍ତାର ମିଳିବା ମୁସ୍କିଲ। କାରଣ ଏ ହେଲା ସ୍ଥାନୀୟ ସ୍ୱାଭିମାନର ପ୍ରଶ୍ନ। ଏହା ଯୋଗୁଁ ଅନେକ ସମୟରେ ସ୍ଥାନୀୟ ଦୋଷୀ ବି ଛାଡ଼ ପାଇ ଯିବାର ଆଶଂକା ଅଛି ସତ, କିନ୍ତୁ ଅଣ-ସ୍ଥାନୀୟ ହୋଇ କାହାରି ଦାଦାଗିରି କରିବାର ସୁଯୋଗ ନାହିଁ। ସରକାର ବୋଲି ଏକ ବାହ୍ୟ ସଂସ୍ଥା ଅଛି। ସ୍ଥାନୀୟ ଲୋକେ କେବେ ତାକୁ କହି ନାହାନ୍ତି, 'ଆମ ଦୁଃଖ-ସୁଖ ବୁଝିବା ପାଇଁ ଆମେ ଯଥେଷ୍ଟ ନୋହୁଁ। ତେଣୁ ଏଠିକି ଦୂରଦୂରାନ୍ତରରୁ ଜଣକୁ ପଠାଅ ପ୍ରଶାସକ ଭାବରେ।' ଅଯଥା ପ୍ରେରିତ ବ୍ୟକ୍ତି ସ୍ଥାନୀୟ ଭାଷା ଜାଣନ୍ତି ନାହିଁ; ସଂସ୍କୃତ ସହ ତାଂକର ପରିଚୟ ନାହିଁ; ଲୋକଙ୍କ ରୀତି ନୀତି ବୁଝିବା ପାଇଁ ତାଂକ ପାଖରେ ସମୟ ନାହିଁ; ଲୋକଂକୁ ଖାତିର ନାହିଁ ତାଂକର। ତଥାପି ସେ 'ଉଚ୍ଚଶିକ୍ଷିତ' 'ସବଜାନତା' ଏଠି! ସରକାର ନାମରେ ଏକ ବାହ୍ୟ ସଂସ୍ଥା ତାଂକୁ ନିଯୁକ୍ତି ଦେଇଛି। ତେଣୁ ସେ ରାଜୁତି କରିବେ ସ୍ଥାନୀୟ ଅଧିବାସୀଂକ ଉପରେ। ସେମାନଂକ ହଜାର ବର୍ଷର ପୁରୁଣା ସଭ୍ୟତା ଓ ସଂସ୍କୃତିକୁ ହେୟ ମଣିବେ; ସମାଜକୁ ତୁଚ୍ଛ ପ୍ରମାଣିତ କରିବେ। କେତେ ଅପମାନର କଥା! ଯେଉଁ ଜାତିର ସ୍ୱାଭିମାନ ଅଛି, କାହିଁକି ସ୍ୱୀକାର କରିବ ସେ ଏ ସ୍ଥିତିକୁ ? ପ୍ରଶାସକମାନଙ୍କ ଦରମା ଦେବାକୁ ସରକାର ତ ଆଉ ଟଙ୍କା ଗଛ ଲଗାଇ ନାହାନ୍ତି! ସେତିକିର ସିଂହଭାଗ

Digitized by srujanika@gmail.com

ସଂଗୃହୀତ ହୁଏ ଲୋକଙ୍କ ଠାରୁ ଟିକସ ଆକାରରେ। ଲୋକଙ୍କ ସେବା କରିବା ପାଇଁ ଗଣତନ୍ତ୍ର ବ୍ୟବସ୍ଥା ନିଯୁକ୍ତ କରିଛି ପ୍ରଶାସକ। ଲୋକଙ୍କ ସେବାର ଅନ୍ୟନାମ ତେବେ କ'ଣ ଜେଲ୍ ପ୍ରେରଣ? ଏଥିପାଇଁ ପ୍ରଶାସନ ଉପରେ ଲୋକଙ୍କ ଆସ୍ଥା କେବଳ ତୁଟି ଯାଉନାହିଁ, ସେମାନଙ୍କ ପ୍ରତି ତାଚ୍ଛଲ୍ୟ ଓ ଘୃଣା କ୍ରମେ ଲୋକଙ୍କ ଭିତରେ ଘନୀଭୂତ ହେଉଛି। ଏହାର ସଜୀବ ଦୃଷ୍ଟାନ୍ତଟିଏ ହେଉଛି: ଅଫିସରଙ୍କୁ ମାଡ଼ ମାରିବାକୁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଜନସାଧାରଣଙ୍କୁ ଖୋଲାଖୋଲି ଆହ୍ୱାନ।

ଆଜି ସମଗ୍ର ଉତ୍ତର ପୂର୍ବାଂଚଳରେ ଯେଉଁ ଜନଆଂଦୋଳନର ବହ୍ନି - ତା ପଛରେ ରହିଛି ଏହି ସ୍ଥାନୀୟ ସ୍ୱାଭିମାନର ପ୍ରଶ୍ନ। ଏଠାରେ କାର୍ଯ୍ୟରତ ପ୍ରାୟ ସମସ୍ତ ପ୍ରଶାସନିକ ଅଧିକାରୀ, ଯନ୍ତ୍ରୀ, ବ୍ୟବସାୟୀ ଇତ୍ୟାଦି ବାହାର ଲୋକ। ନିଜ ପଦ ପଦବୀ ବଳରେ ସ୍ଥାନୀୟ ଅଧିବାସୀଂକ ଉପରେ କର୍ତ୍ତୃତ୍ୱ ଜାହିର କରିବାକୁ କୃତସଂକଳ୍ପ! ଅନ୍ୟ ପକ୍ଷରେ ସ୍ଥାନୀୟ ଲୋକେ ନିଜ ସ୍ୱାଭିମାନ ବଜାୟ ରଖିବାକୁ ଦୃଢ଼ପ୍ରତିଜ୍ଞ। କୋରାପୁଟ ଓ କଳାହାଣ୍ଡିର ଅଧିବାସୀ ପରି ଯଦି ସେମାନେ ସହି ଯାଆନ୍ତେ ସ୍ୱାଭିମାନର ଦଳାଚକଟାକୁ, ଦେଶ କୁହନ୍ତା, ଉତ୍ତର ପୂର୍ବାଂଚଳରେ ଶାନ୍ତି ଆସିଲା, ଭାରତୀୟ 'ସଭ୍ୟତା' ଓ ସଂସ୍କୃତି ସହ ତାର ଅନ୍ତଃକରଣ ହେଲା! ବାହାର କର୍ତ୍ତୃତ୍ୱର ପ୍ରତିବାଦ ହେଲେ, ଲାଗେ ଭାରତୀୟ ରାଜ୍ୟ-ରାଷ୍ଟ୍ରର ବିରୋଧ ହେଉଛି, ଆଇନ ଶୃଙ୍ଖଳା ପରିସ୍ଥିତି ନିୟନ୍ତ୍ରଣର ବାହାରେ! କେବଳ ଉତ୍ତର-ପୂର୍ବାଂଚଳ କାହିଁକି, ଆଂଧ୍ର ଓ ବସ୍ତରର ନକ୍ସଲବାଦୀ ଆଂଦୋଳନ, ବିହାରର ପଛୁଆ ଜାତି ବିବାଦ ତଥା ପରିବାରରେ ପତି-ପତ୍ନୀ ମନୋମାଳିନ୍ୟ ପଛରେ ମଧ୍ୟ ସ୍ୱାଭିମାନର ଏହି ପ୍ରଶ୍ନ ତୀବ୍ର ଭାବେ ଜଡ଼ିତ।

ଏ ଯାଏଁ ଯାହା ଆମେ ଶୁଣିଛୁ କେବଳ ମଣିଷର ସ୍ୱାଭିମାନ ଥାଏ, ଅନ୍ୟ ଜୀବମାନଂକର ନଥାଏ। ନିଜର ବ୍ୟକ୍ତିତ୍ୱ, ସଭ୍ୟତା, ସଂସ୍କୃତି, କୁଟୁମ୍ବ, ପରିବାର, ଅଂଚଳ, ଭୌଗଳିକ ସ୍ଥିତି, ଭାଷା, ଏଭଳିକି ପାଣି ପବନକୁ ନେଇ ସ୍ୱାଭିମାନ ଆସେ। ତାକୁ ଦଳି ଦେଇ କେବେ ଜାତୀୟତା ବା ବିଶ୍ୱ ଭାତୃତ୍ୱ କଥା ଚିନ୍ତା କରାଯାଇ ପାରେ ନାହିଁ। ସ୍ୱାଭିମାନ ପରିବାର ଓ ଅଂଚଳରୁ ଯାଇ ଯେତେବେଳେ ଦେଶ ସ୍ତରରେ ପହଂଚେ, ଆମେ ତାକୁ ଦେଶାଭିମାନ ବା ଜାତୀୟତାବାଦ ବୋଲି କହୁଁ। ତେଣୁ ପରିବାର, ଗ୍ରାମ କିଂବା ଆଂଚଳିକ ସ୍ୱାଭିମାନ ଦେଶାଭିମାନର ପରିପନ୍ଥୀ ନୁହେଁ; ବରଂ ପରିପୂରକ। ଗ୍ରାମ, ଅଂଚଳକୁ ନେଇ ଯେଉଁଠି ସ୍ୱାଭିମାନ ନାହିଁ, ସେଠି ଦେଶାଭିମାନର ପୁଷ୍ଟି ଅସଂଭବ।

Digitized by srujanika@gmail.com

କେବଳ କଳାହାଣ୍ଡି କାହିଁକି, ଦେଶର ଚାରିଆଡ଼େ ଆଜି ସ୍ୱାଭିମାନର ମଗୁଡ଼ି ପ୍ରାୟ ଛିଡି। କେଉଁଠି କର୍ଣ୍ଣାଟକ ପରି ଦୂର ଅଂଚଳରୁ ଆସି ଅଶୋକ ଦଳଭାର ତାକୁ ମାଡ଼ି ମକଚି ଗଲେଣି, ତ ଆଉ କେଉଁଠି ପେପସି ଲହରରେ ସେ ଧୋଇ ଖାଇ ଗଲାଣି। ଆଧୁନିକତା, ବିକାଶ ଓ ପ୍ରଗତି ଆଳରେ ଆମେ ପାଶ୍ଚାତ୍ୟ ସଭ୍ୟତା ପଛରେ ଦୌଡ଼ିବା ଝୁଂକରେ ତାର ଖିଆଲ ରଖିପାରିନାହୁଁ। ଦେଶାଭିମାନ ନାଁରେ କେବଳ ସାଇତି ରଖିଛୁ କେତେଗୋଟି ନକାରାତ୍ମକ (ଅବ) ଗୁଣ, ପଡ଼ୋଶୀ ଦେଶ ପ୍ରତି ପାଛିଆରେ ପାଛିଆଏ ଘୃଣା, ପ୍ରତିବେଶୀ ରାଜ୍ୟ ପ୍ରତି ବିଦ୍ୱେଷ, ଏବଂ ପାଖ ଜିଲ୍ଲା ଓ ଅଂଚଳ ପ୍ରତି ଅବଜ୍ଞା ଅହଂଭାବ। ଜାଣି, ସେଥିରେ ସକାରାତ୍ମକତାର ନାଁ ଗନ୍ଧ ମଧ୍ୟ ନାହିଁ।

ଏହି ପରିପ୍ରେକ୍ଷୀରେ ଓଡ଼ିଶାବାସୀ, ସଂବଲପୁର, କଳାହାଣ୍ଡି, ଭବାନୀପାଟଣା ଓ ସୁଚନପୁରବାସୀ ଚିନ୍ତା କରିବା କଥା ତାଂକ ସ୍ୱାଭିମାନ ଆଜି କେଉଁଠି? ଅଣସ୍ଥାନୀୟ ପ୍ରଶାସନିକ ଅଧିକାରୀଂକ ଫାଇଲ ଗଦା ଭିତରେ, ନା ଅଣ-ସ୍ଥାନୀୟ ବ୍ୟବସାୟୀଂକ ଆଲମିରା ଲକରରେ?

(୧୯୯୩)

Digitized by srujanika@gmail.com

# ଭୋଟ ମନ୍ତ୍ର

ଏବେ (୧୯୯୭) ଦେଶରେ ମଧ୍ୟବର୍ତ୍ତୀ ନିର୍ବାଚନ ହେଉଛି। ଗତ ସାଧାରଣ ନିର୍ବାଚନ ପରେ ଲୋକସଭାରେ ରାଜନୈତିକ ଦଳଗୁଡ଼ିକର ସ୍ଥିତି ଯାହା ଥିଲା ତହିଁରୁ ଏଭଳି ଏକ ଦୁଃସ୍ଥିତି ସୃଷ୍ଟି ହେବ ବୋଲି ଅଳ୍ପ ବହୁତେ ସମସ୍ତେ ଆଶଂକା କରୁଥିଲେ। ସେଥିପାଇଁ ମଧ୍ୟାବଧି ନିର୍ବାଚନକୁ ନେଇ କେହି ଆଶ୍ଚର୍ଯ୍ୟ ନୁହନ୍ତି। ଲୋକସଭାରେ ଭାରତୀୟ ଜନତା ପାର୍ଟି ତଳକୁ ଥିଲା କଂଗ୍ରେସ ଦଳର ସ୍ଥାନ। କିନ୍ତୁ ସରକାର ଗଢ଼ିଥିବା ମିଳିତ ସାମୁଖ୍ୟ ଦଳ ତାକୁ (କଂଗ୍ରେସକୁ) ସରକାରରୁ ବାହାରେ ରଖିଲେ। ସମର୍ଥନ ନେବେ; କ୍ଷମତାରେ ଭାଗ ଦେବେ ନାହିଁ; ଏକା ଏକା କ୍ଷମତାର ଦୁରପଯୋଗ କରିବେ। କଂଗ୍ରେସକୁ ବା ଏହା ସୁହାଇବ କେମିତି ? ଟାକି ଟାକି ଶେଷକୁ କଂଗ୍ରେସ ନୟାନ୍ତ ହେଲା ଏବଂ ସମର୍ଥନ ପ୍ରତ୍ୟାହାର କଲା। ସ୍ୱାଭାବିକ କଥା। ଦ୍ୱିତୀୟ କଥା ହେଲା- ଅଣ କଂଗ୍ରେସ ଦଳ କେବେ କେନ୍ଦ୍ରରେ କାଳ ପୂରିବା ଯାଏଁ କ୍ଷମତାରେ ରହିବା ଶିଖିନି। ଜଣେ ପ୍ରଧାନମନ୍ତ୍ରୀ ହେବେ; କିଛି ଦିନ ନ ଯାଉଣୁ ଅନ୍ୟ ଜଣେ ତାଂକ ଗୋଡ଼ ଟାଣି ନିଜେ ସରକାର ଗଢ଼ିବେ; ତେଣିକି କଂଗ୍ରେସ ଉଭୟଂକ ଗୋଡ଼ ଟାଣି ସରକାର ଭାଂଗିବ - ଠିକ ଏକା ରକମର ଐତିହାସିକ ପୁନରାବୃତ୍ତି ସବୁଥର। ଏଥର ନିର୍ବାଚନ ପରେ ତ ମିଳିତ ସାମୁଖ୍ୟର ପ୍ରେତ ବି ରହିବ ନାହିଁ, କାରଣ ୧୯୭୭, ୧୯୮୯ ଏବଂ ୧୯୯୭ ତିନି ଥରକୁ ମିଶାଇ ସେମାନେ ପାଂଚ ବର୍ଷିକିଆ ପୂର୍ଣ୍ଣ ଜୀବନଟିଏ ଜୀଇଁ ଦେଇଛନ୍ତି। ଅନ୍ୟଥା ତାଂକ ସରକାର ଗଠିତ ହେଲେ ଆସନ୍ତା ଦୁଇବର୍ଷରେ ଅନ୍ତତଃ ଦୁଇଜଣ ନୂଆଁ ପ୍ରଧାନମନ୍ତ୍ରୀ ଓ ଆଉ ଏକ ମଧ୍ୟବର୍ତ୍ତୀ ନିର୍ବାଚନ ହେବା ସୁନିଶ୍ଚିତ ବୋଲି ଲୋକ ଧରିନିଅନ୍ତେ।

ଲୋକ ଜାଣନ୍ତି, ସରକାର ହେଲେ ବା ନ ହେଲେ ବା ଯାହାର ହେଲେ କିଛି ଫରକ ପଡ଼େନି। ବହୁରାଷ୍ଟ୍ରୀୟ କଂପାନୀ ଆସିବା କଥା, ଆସିବ—ସରକାର କଂଗ୍ରେସର ହେଉ ବା ସମାଜବାଦୀ, ସାମ୍ୟବାଦୀଙ୍କ ହେଉ। ଠିକ ସେହିଭଳି ଅର୍ଥ ତୋଷାରପାତ ହେବ - ତେଣିକି ତୋଷରପାତକାରୀ ସମାଜବାଦୀ ଲାଲୁ ପ୍ରସାଦ ହୁଅନ୍ତୁ କି କଂଗ୍ରେସୀ ସୁଖରାମ ହୁଅନ୍ତୁ। ସେଥିରେ କିଛି ଯାଏ ଆସେ ନାହିଁ। ପଡ଼ୋଶୀ ଦେଶ ପାକିସ୍ଥାନ ସହିତ ଶତ୍ରୁତା ଓ ଅନ୍ୟ ପଡ଼ୋଶୀ ଶ୍ରୀଲଂକା, ଭୁଟାନ ଆଦିଂକ ଉପରେ ଦାଦାଗିରି ବଢ଼ିବା କଥା ବଢ଼ିବ; ମୁଦ୍ରାସ୍ଫୀତି ବଢ଼ିବା କଥା ବଢ଼ିବ; ଭାରତୀୟ ମୁଦ୍ରାର ଅବମୂଲ୍ୟନ ହେବା କଥା, ହେବ; ସୂର୍ଯ୍ୟ ଉଇଁବା କଥା, ଉଇଁବେ। କୌଣସିଥିରେ କିଛି ପରିବର୍ତ୍ତନ ହେବ ନାହିଁ। ସେଥିପାଇଁ ନିର୍ବାଚନରେ ଭାଗ ନେଇ ସରକାର ଗଢ଼ିବା ନିମନ୍ତେ ଜନତାର ଆଗ୍ରହ ଉଣା ହେବାରେ ଲାଗିଛି। ବିତସ୍ପୃହ ଭାବର ଅନ୍ୟ ଏକ ମୁଖ୍ୟ କାରଣ ହେଲା, ନିର୍ବାଚନର ବହୁଳତା। ସରପଂଚ, ସମିତି ସଭ୍ୟଠାରୁ

Digitized by srujanika@gmail.com

ଆରଂଭ କରି ଲୋକସଭା ଯାଏଁ ଯଦି ହିସାବ କରାଯାଏ ବର୍ଷକୁ ଥରେ ନିର୍ବାଚନ। ସେଥିରେ ପୁଣି 'ମଧ୍ୟବର୍ତ୍ତୀ' ମାନଂକୁ ଯୋଡ଼ିଲେ, ଖରା-ବର୍ଷା ପରି ପ୍ରତି ଋତୁରେ ନିର୍ବାଚନ ଆସିବ ଏବଂ ଯିବ। କେତେବା ଆଗ୍ରହ ହେବ ଲୋକଂକ ତହିଁରେ? ଇଏ କ'ଣ ବସନ୍ତ ଋତୁ ଯେ ଫୁଲ ଫୁଟିବ? ପେଣ୍ଟା ପେଣ୍ଟା ମହକ, ରଂଗ ଚହଟୁ ଥିଲେ, କୋଇଲି ଗାଉଥିଲେ ବି ଲୋକଙ୍କ ଦେଖିବାକୁ, ଶୁଣିବାକୁ ଡର ନାହିଁ; ଆଉ ନିର୍ବାଚନ ପରି ଶୋଷା ରାଜନୀତିର ନିଦାଘକୁ ପଚାରେ କିଏ! ସେ ତ ଜ୍ୱାଳା।

ଏହି ସବୁ କାରଣରୁ ନିର୍ବାଚନକୁ ନେଇ ଜନତା ମନରେ ବିତସ୍ପୃହତାର ମାତ୍ରା ଏଥର ଏତେ ପରିମାଣରେ ବୃଦ୍ଧି ପାଇଛି ଯେ, ସରକାର ମଧ୍ୟ ଭାଳେଣିରେ ପଡ଼ିଗଲେଣି - ଲୋକ ଯଦି ଭୋଟ ନ ଦିଅନ୍ତି, ଗଣତନ୍ତ୍ରର ଚେର ଦେଶରେ ମାଡ଼ିବ କେମିତି? ତେଣୁ ରୋଜ ଦୂରଦର୍ଶନ ଆଦି ଜନମାଧ୍ୟମରେ ପ୍ରଚାର କରୁଛନ୍ତି, ହେ ଜନତା ତୁମେ ଅନ୍ୟ କିଛି ନ କର ପଛେ, ନିଶ୍ଚିତ ରୂପେ ଭୋଟ ଦିଅ; ଭୋଟ ଆମର ମନ୍ତ୍ର। ଲୋକଂକୁ ବି ଜଣା, ଭୋଟ ନ ଦେଇ କ'ଣ ବେଂକରେ ଜମା କରି ରଖିହେବ? ଆଚାର ତ କରିହେବ ନାହିଁ। ତେଣୁ ଯାହାକୁ ହେଲେ ଦେଇ ଦେବା ଭଲ। ଲୋକଙ୍କର ତହିଁରେ ମଂଗଳ ନ ହେଲାନାହିଁ, ଅନ୍ୟର ତ ମଂଗଳ ହେବ; କ୍ଷତି କ'ଣ?

ପ୍ରଶ୍ନ ଉଠେ, ଯଦି ସରକାର କହୁଛନ୍ତି, 'ଭୋଟ ଦିଅ' ଏବଂ ଲୋକ କହୁଛନ୍ତି, 'ହଁ ଆମେ ଭୋଟ ଦେବୁ, କାରଣ ତାକୁ ରଖି ଆମର କିଛି ଲାଭ ନାହିଁ,' ତେବେ ସମସ୍ୟା କେଉଁଠି? ସମସ୍ୟା ରହିଛି ମଝିରେ। ଟିଭିରେ ଭୋଟ ଦିଅ ବୋଲି କହିବା ସହଜ, କିନ୍ତୁ ଭୋଟ ଦେବା ଏତେ ସହଜ ନୁହେଁ। ବରଂ ତା ପାଇଁ ପ୍ରତିବଂଧକ ଏତେ ବେଶି ଯେ, ଭୋଟଦେବା ଅସଂଭବ କହିଲେ ବି ଚଳିବ।

ଭୋଟ ଦେବା ପାଇଁ ପ୍ରଥମ ପ୍ରତିବଂଧକ ହେଲେ ଖୋଦ ଭୋଟ ଦାନ କେଂଦ୍ରର ଅଧିକାରୀଗଣ। ସେମାନଂକ ଆଦେଶ ଯେ, ଭୋଟ ଦିଅ, କିନ୍ତୁ ଯେତେବେଳେ ପାରି ସେତେବେଳେ ନୁହେଁ। ଏକ ନିର୍ଦ୍ଦିଷ୍ଟ ଦିନର ଗୋଟାଏ ନିର୍ଦ୍ଦିଷ୍ଟ ସମୟରେ ଭୋଟ ନିଆଯିବ। ତେଣିକି ବ୍ୟକ୍ତିର ଧାନମଡ଼ା ଥାଉ ବା ପହ୍ଲାରୁଆ ଥାଉ ବା ଦଶାହକ୍ରୀୟା—ସେଥିରେ ଅଧିକାରୀଂକ କିଛି ଯାଏ ଆସେ ନାହିଁ। ଏହା ନିହାତି ରୂପେ ଅସୁବିଧା କଥା। ବ୍ୟକ୍ତିଗତ ବ୍ୟସ୍ତତା ଯୋଗୁଁ ଜନତା ଭୋଟ ଅଧିକାରୀଂକ ପ୍ରଦତ୍ତ, ଧାର୍ଯ୍ୟ ଦିଆ ସମୟରେ ଉପସ୍ଥିତ ହୋଇ ଭୋଟ ଦେଇ ନ ପାରିଲେ ଗଣତନ୍ତ୍ରବାଦୀ ତାକୁ ଗଣତନ୍ତ୍ର ପ୍ରତି ବିମୁଖତା ବୋଲି ମିଛଟାରେ ପ୍ରଚାର କରେ, ଜନତାକୁ କାଠଗଡ଼ାରେ ଠିଆ କରାଏ।

ଦ୍ୱିତୀୟ ପ୍ରତିବଂଧକ ହେଲେ ଭୋଟ ମାଗୁଥିବା ଦଳ ଓ ପ୍ରାର୍ଥୀଗଣ। ସେମାନଂକ କହିବା କଥା ଯେ, ଭୋଟ ଦିଅ, କିନ୍ତୁ ନିଜ ବିବେକକୁ ପଚାର ନାହିଁ, ଆମକୁ ପଚାର। ଅର୍ଥାତ କେବଳ ଆମକୁ ଭୋଟ ଦିଅ। ଯଦି ଅନ୍ୟ କାହାକୁ ଦିଅ ତେବେ ତୁମେ ଆମର ଶତ୍ରୁ। ନିର୍ବାଚନରେ ଯେତେ ପ୍ରାର୍ଥୀ, ସେତେ ଧମକି! ଭୋଟଟା ହେଲେ ଭାଗ ଭାଗ ହେଇ ପାରନ୍ତା! ସମସ୍ତେ ଗଂଧେ ପୁଷ୍ପେ ଭାଗ ପାଇ ଖୁସ ରହନ୍ତେ!

Digitized by srujanika@gmail.com

ତେଣୁ ସବୁଯାକ ଭୋଟ ନିଜେ ନେବା ପାଇଁ ସେମାନେ, ଘିଅ ଦୀପ ଜାଳି ଶପଥ କରାଇବେ, କିରିଆ ପାରିବେ। ସୁନ୍ଦରଗଡ଼, କଳାହାଣ୍ଡି ଭଳି ଆଦିବାସୀ ଓ ଗ୍ରାମୀଣ କ୍ଷେତ୍ରରେ କିରିଆ ଭାଂଗି ନିଜ ବିବେକର ବିଚାର ଶୁଣିବା କି ସହଜ କଥା ?

କିନ୍ତୁ ଯେଉଁମାତ୍ରାରେ ଆମେ ଆଧୁନିକ ହୋଇ ଚାଲିଛେ, ତହିଁରେ ଜନତାର କିରିଆ ପ୍ରତି ବିଶ୍ୱାସ ରହିଥାଉ ପଛେ, ନେତାଙ୍କର ବିଶ୍ୱାସ ଉଣାହେବା ସାଧାରଣ କଥା। ତେଣୁ କିରିଆ ପରେଇ ସେମାନେ ନିଶ୍ଚିତ ରହିପାରନ୍ତି ନାହିଁ। ପୁଣି ପ୍ରତିଦ୍ୱଂଦୀ ବି ତ ସମଉପାୟରେ ଜନତାର ବିବେକର ଏବଂ ଶତ୍ରୁପକ୍ଷର ଗଳା ଚିପୁଥିବେ, ନିଜ ପକ୍ଷ ବଢ଼ୋଉଥିବେ! ଏଭଳି ପରିସ୍ଥିତିର ସମାଧାନ ପାଇଁ ଏହି କିଛି ବର୍ଷ ହେଲା ମଣ୍ଡଳକମିଶନ ନାଁରେ ଏକ ଔଷଧ ମିଳୁଛି ଯାହାକି ଭିନ୍ନ ଭିନ୍ନ ନାଁରେ ୟୁପି, ବିହାର ଆଦି ଅନ୍ୟାନ୍ୟ ପ୍ରଦେଶରେ ବହୁ ଆଗରୁ ଉପଲବ୍ଧ। ଏହି ଔଷଧର ଗୁଣ ହେଲା, ଜନତାକୁ ଜାତି ଆଧାରରେ ସବୁକାମ—ଭୋଟ ଓ ଝଗଡ଼ା ସମେତ—କରିବାକୁ ଏହା ମନ୍ତ୍ର ଦିଏ। ଜାତି ଓ ସ୍ଥାନ ବିଶେଷରେ ଧର୍ମର ଆଧାର ଆସିଲା ପରେ, ବିବେକର ଆହ୍ୱାନ ବା ପଚାରେ କିଏ ? ବ୍ରାହ୍ମଣ ଜନତା ବ୍ରାହ୍ମଣ ପ୍ରାର୍ଥୀକୁ ଭୋଟଦେବ, କରଣ ଜନତା କରଣ ପ୍ରାର୍ଥୀକୁ ଓ କୁଳତା ବା ଚଷା, ଖଣ୍ଡାଏତ ଜନତା କୁଳତା ପ୍ରାର୍ଥୀକୁ ଭୋଟ ଦେବ। ଏବଂ ଭୂଲବଶତଃ ଯଦି ପ୍ରାର୍ଥୀ ଦଳିତ, ହରିଜନ, ତାକୁ ତିନେହେଁ ଭୋଟ ନ ଦେବାକୁ ଶପଥ ନେବେ।

ଭୋଟ ଦେବାର ଅନ୍ୟ ଏକ ପ୍ରତିବଂଧକ ହେଲା ଲାଠି। ଜାତି, ଧର୍ମର ପରୱାନା ଯେମିତି କିରିଆ, ଶପଥ ତୁଳନାରେ ଅଧିକ ଫଳପ୍ରସୂ, ବିବେକର ବାଣୀକୁ ତଳିତଲାନ୍ତ କରିବାରେ ବେଶି ଉପଯୋଗୀ, ଲାଠିରେ ପରୱାନା ମଧ୍ୟ ସେମିତି ଅନ୍ୟ ସମସ୍ତଂକଠାରୁ ବେଶି ଉପଯୋଗୀ। ଏହା ଲାଠି ଭଳି ସିଧା ଓ ପ୍ରତ୍ୟକ୍ଷ ଏବଂ ୟୁପି, ବିହାର ଆଦି ଅଂଚଳରେ ବହୁଳ ପ୍ରଚଳିତ। ଏବେ କାଇଁ ଓଡ଼ିଶାରେ ବି ବ୍ୟବହାର ହେଉଥିବାର ଶୁଣାଯାଏ। ଏହା ପାରିବା ଲୋକ ବାହୁରେ ବଳ ଓ ମୁହଁରେ ଗାଳି ବର୍ଷିବା ଯକାଶେ ଶକ୍ତି ଦିଏ; କୁହାଏ, ଜନତା ଏତେ କାମ ଧଂଦା ଛାଡ଼ି ତୁମର ଭୋଟ ଦେବା ପାଇଁ ସମୟ କାହିଁ? ତୁମେ ଘରେ ରୁହ, ଆମେ ତୁମପାଇଁ ଭୋଟ ଦେବୁ। ଅର୍ଥାତ ଲାଠି ଅଂଧକୁ ବାଟଚାଲିବା ପାଇଁ ଯେମିତି ସାହାଯ୍ୟ କରେ, ନିର୍ବାଚନରେ ପ୍ରାର୍ଥୀକୁ ଜିଣିବାରେ ଏବଂ ଜନତାଂକ ସମ୍ମିଳିତ ଭୋଟ ନେବାରେ ସେମିତି ସହାୟ ହୁଏ। ଯେଉଁ ପ୍ରାର୍ଥୀ ସପକ୍ଷରେ ଅଧିକ ଲାଠିଧାରୀ, ଜିଣିବାର ଆଶା ତାଂକ ଦଳର ବେଶି ଉଜ୍ଜଳ। ଏ କ୍ଷେତ୍ରରେ ଗଣତନ୍ତ୍ର ବି ବେଶ ମଜବୁତ ହେବାର ଆଶା ଥାଏ କାରଣ ଅନେକ ସମୟରେ ମଲା ହଜିଲା ଲୋକର ଭୋଟ ମଧ୍ୟ ବାକ୍ସରେ ପଡ଼େ। ଲାଠିଧାରୀଂକ ଭୋଟ ଦେବାରେ ବେଳେ ବେଳେ ଝଗଡ଼ା ହୁଏ, ସଂବାଦପତ୍ରରେ ଫଟୋ ବାହାରେ, ମାତ୍ର ଲାଠିଧାରୀଂଙ୍କ ପ୍ରକୃତ ପ୍ରକୋପ ଅନୁପାତରେ ତାର ପରିମାଣ ଅତି ନଗଣ୍ୟ, କାରଣ ଝଗଡ଼ା ସେଇଠି ହୁଏ, ଯେଉଁଠି

Digitized by srujanika@gmail.com

ଉଭୟଗୋଷ୍ଠୀର ଲାଠିଧାରୀ ଭାବନ୍ତି, ତାଂକ ସଂଖ୍ୟା ଓ ଶକ୍ତି ପ୍ରତିପକ୍ଷ ତୁଳନାରେ ଅଧିକ। ଯେଉଁଠି ପ୍ରତିପକ୍ଷ ଆତ୍ମ-ବିଶ୍ୱାସ ଶୂନ୍ୟ, ସେଠି ଝଗଡ଼ାର ବା ଆବଶ୍ୟକତା କ'ଣ ?

ଏସବୁକୁ ବାଦଦେଲେ, ଏକ ନୂଆଁ କିସମର ପ୍ରତିବଂଧକ ଆଂଧ୍ର ଓ ବିହାରରେ-ନକ୍ସଲବାଦୀଂଙ୍କ ଜରିଆରେ। ସେମାନେ କହୁଛନ୍ତି, ଏବେ କାହାକୁ ଭୋଟ ଦିଅ ନାହିଁ। ଦୁଇ ଚାରି ବର୍ଷ ପରେ ଆମେ ଭୋଟରେ ଲଢ଼ିବୁ, ସେତେବେଳେ ଭୋଟ ଦେବ। ଅବଶ୍ୟ ନିର୍ବାଚନରେ ଏତେ ବହୁଳତା ଯେ, ଭବିଷ୍ୟତ ପାଇଁ ଭୋଟ ପ୍ରତି ଜନତାର ଆଗ୍ରହ ସଂରକ୍ଷିତ ରଖିବା ନିମିତ୍ତ ଏହା ଏକ ଭଲ ଓ ସରଳ ଉପାୟ! କିନ୍ତୁ, ପ୍ରଶ୍ନ ଉଠେ, ଆଗ୍ରହ କ'ଣ ବ୍ୟାଂକ ବ୍ୟାଲାନ୍ସ ଯେ ତାକୁ ଏବେ ଉପଯୋଗ ନ କଲେ ସେ ଭବିଷ୍ୟତ ପାଇ ସଂରକ୍ଷିତ ରହିବ? ଦ୍ୱିତୀୟତଃ ଯଦିବା ଆଗ୍ରହ ରହେ, ତାହା ଭୋଟ ଆକାରରେ-ଆବଶ୍ୟକ ସମୟରେ ନକ୍ସଲବାଦୀଂଙ୍କ ଖଲେଇରେ ପଡ଼ିବ ବୋଲି କି ମାନେ ଅଛି? ନିର୍ବାଚନ ଏକ ଜଟିଳ ଖେଳ – କ୍ରିକେଟ୍ ପରି ମଜାଦାର, ବିତ୍ତପ୍ରସୂ ଓ ବୀର ପ୍ରସବିନୀ। ଏ' ଖେଳରେ ଖାଲି ନାୟକ, ମହାନାୟକ ଜନ୍ମ ହୁଅନ୍ତି। ଖଳ ନାୟକ ନଥାନ୍ତି। ସେଥିରେ ନକ୍ସଲବାଦୀଂଙ୍କ ଏହି ଉପାୟ, ନକ୍ସଲବାଦୀଂକ ପରି, ସରଳ ଓ ଗ୍ରାମୀଣ ସ୍ତରର। ତେଣୁ କାଟୁ କରିବ ନାହିଁ-ଏକଥା ସମସ୍ତେ କହିବେ। ଅନ୍ୟଥା ଅତୀତରେ ନିର୍ବାଚନ ବୟାନ କରି ଅଧୁନା ନିର୍ବାଚନ ଲଢୁଥିବା ସବୁ ନକ୍ସଲବାଦୀଗଣ ଏମ.ପି., ଏମ.ଏଲ୍.ଏ ହୋଇ ବୁଲୁଥାନ୍ତେ।

ଠିକ ଏକା ଧରଣର ପ୍ରତିବଂଧକ କାଶ୍ମୀର ତଥା ପୂର୍ବୋତ୍ତର ଭାରତରେ ଉଗ୍ରବାଦୀଂଙ୍କ ପକ୍ଷରୁ। ସରକାର ସେମାନଂକୁ ଯେତେ ବିଦେଶୀ ଭଡ଼ାଟିଆ ଗୁଣ୍ଡା କୁହନ୍ତୁ ପଛେ, ସେମାନଂକ ଧମକକୁ ଖାତିର ନ କରି ଜନତା ଯେ ଭୋଟ ଦେଇ ପାରିବ-ସେ ଆଶା କରିବା ନିରର୍ଥକ। ନାଗାଲ୍ୟାଣ୍ଡରେ ତାଂକ ଭୟରେ ତ ଦଳ ନିର୍ବାଚନରେ ପ୍ରାର୍ଥୀ ଦେଲେନି, ଭୋଟ ଦେବାର ବା ଆବଶ୍ୟକତା ପଡ଼ିବ କେତେକେ ?

ମୋଟ କଥା ହେଲା, ଏତେସବୁ ପ୍ରତିବଂଧକକୁ ପାର ହୋଇ ବିବେକକୁ ପଚାରି ଭୋଟଦେବା କିଛି ସହଜ କଥା ନୁହେଁ। ଏମ.ପି., ଏମଏଲଏ ହେବା ଅପେକ୍ଷା ମଧ ଏହା ବେଶି କାଠିକର। ଆମ ଦେଶ ସାରେ ଜାହାଁ ସେ ଉଚ୍ଚା, ମହାନ, ଏକ ଶକ୍ତିଶାଳୀ ଗଣତନ୍ତ୍ର, ଭୋଟ ଆମର ମନ୍ତ୍ର-ଏ ସବୁରେ ଆମର ଦ୍ୱିମତ ହେବାର କିଛି ନାହିଁ, କିନ୍ତୁ ବିବେକକୁ ପଚାରି ଭୋଟଦେବା ପାଇଁ ଜନତାକୁ କହିବା କଥା ନୁହେଁ। ଏଥିରେ ଅଯଥା ବିଚାରା ବିବେକର ସମ୍ମାନ ଯିବ-ସରକାର ଓ ନିର୍ବାଚନ କମିଶନ କହୁଛନ୍ତି, ତାକୁ ପଚାର; ଭୋଟଦାତାର ବି ଇଚ୍ଛା, ତାକୁ ପଚାରିଲା ପରେ ଯାଇ, ଯାହା କିଛି କରିବା କଥା, ସେ କରିବ; ବିବେକର ଆଗ୍ରହ ଅଛି-ଅନ୍ୟବେଳେ ନ ହେଲେ ନାହିଁ, ଭୋଟ ଦେଲାବେଳେ ତ ଅନ୍ତତଃ ତାକୁ ପଚରା ଯିବାକଥା। କିନ୍ତୁ ସ୍ଥିତି ଏମିତି ଯେ, ତାକୁ କେହି ପଚାରିବେ ନାହିଁ। ଆପଣ କହନ୍ତୁ ଭଲା ! ବିଚାରା ବିବେକର ଏଥିରେ ସମ୍ମାନ ହାନି ହେବ ନାହିଁ ? (୧୯୯୭)

◆◆

Digitized by srujanika@gmail.com